# ଭାଗବତ କଥା

ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀ





# ଭାଗବତ କଥା

# ଭାଗବତ କଥା

## ସପ୍ତବିଂଶ ଖଣ୍ଡ


ଲେଖକ :

ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀ

ସମ୍ପାଦନା

ଡକ୍ଟର କୃଷ୍ଣପ୍ରସାଦ ମିଶ୍ର

ଅନୁବାଦକ :

ଡ଼ଃ ଭଗବାନ ପଣ୍ଡା



ପ୍ରକାଶକ :



ଧର୍ମଗ୍ରନ୍ଥ ଷ୍ଟୋର

# ଭାଗବତ କଥା

ସପ୍ତବିଂଶ ଖଣ୍ଡ

ପ୍ରକାଶିକା :

ଶ୍ରୀମତୀ ଅନ୍ନପୂର୍ଣ୍ଣା ମିଶ୍ର

କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର

କଟକ-୭୫୩୦୦୨

ପ୍ରଥମ ସଂସ୍କରଣ

ମକର ସଂକ୍ରାନ୍ତି

୧୯୮୮

ପ୍ରଚ୍ଛଦ :

ଶ୍ରୀ ଅମିତ୍ ମୁଖାର୍ଜୀ

ମୁଦ୍ରଣ :

କଲ୍ୟାଣୀ ପ୍ରିଣ୍ଟର୍ସ

ପିଠାପୁର, କଟକ-୭୫୩୦୦୧

ମୂଲ୍ୟ :

ସାଦା—ଟ ୧୫ଙ୍କା

ବନ୍ଧାଇ—ଟ ୧୮ଙ୍କା

# BHAGABAT KATHA

(Twenty seventh Part)

**Sri Prabhudatta Brahmachari**

Publisher :

**Srimati Annapurna Mishra**

Cuttack Student's Store

Balu Bazar, Cuttack-753002

First Edition—1988

Price :

**Popular Rs. 15.00**

**Deluxe Rs. 18.00**



ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀ

## ବିଷୟ ସୂଚୀ ପୃଷ୍ଠା


| ବିଷୟ | ପୃଷ୍ଠା |
|---|---|
| ୧ । ମୃତ୍ୟୁଭୟ | ୧ |
| ୨ । ମହାରାଜ ହରିଶ୍ଚନ୍ଦ୍ରଙ୍କ ଚରିତ | ୧୦ |
| ୩ । ବାହୁକ ପୁତ୍ର ମହାରାଜ ସଗର | ୨୭ |
| ୪ । ମହାରାଜ ସଗରଙ୍କ ଅଶ୍ୱମେଧ ଯଜ୍ଞ | ୩୨ |
| ୫ । ସଗର ସୁତମାନଙ୍କର ମୃତ୍ୟୁ | ୩୮ |
| ୬ । ଅଂଶୁମାନଙ୍କ ପୁତ୍ର ଦିଲୀପ | ୪୩ |
| ୭ । ଗଙ୍ଗାବତରଣ | ୪୯ |
| ୮ । ଜାହ୍ନବୀ ଭାଗୀରଥୀ | ୫୫ |
| ୯ । ସଗର ପୁତ୍ରମାନଙ୍କର ମୁକ୍ତିଲାଭ | ୬୦ |
| ୧୦ । ନଳଦମୟନ୍ତୀ ଚରିତ | ୬୭ |
| ୧୧ । ମହାରାଜ ସୌଦାସ ଚରିତ | ୯୩ |
| ୧୨ । ସୌଦାସ ସୁତ ଅଶ୍ମକ | ୯୯ |
| ୧୩ । ରାକ୍ଷସଭାବାପନ୍ନ କଲ୍ମାଷପାଦ | ୧୦୩ |
| ୧୪ । ମୂଳକ ପରବର୍ତ୍ତୀ ସୂର୍ଯ୍ୟବଂଶୀ ରାଜା | ୧୧୨ |
| ୧୫ । ରଘୁବଂଶ କଥା | ୧୧୭ |
| ୧୬ । ଶ୍ରୀରାମଚନ୍ଦ୍ରଙ୍କ ଜନ୍ମ | ୧୩୦ |
| ୧୭ । ଶ୍ରୀରାମଙ୍କ ନାମକରଣ | ୧୩୭ |
| ୧୮ । କାରୁଣିକ ରାମ | ୧୪୨ |
| ୧୯ । ବିଶ୍ୱାମିତ୍ରଙ୍କ ଯଜ୍ଞରକ୍ଷା | ୧୪୭ |




# ମୃତ୍ୟୁଭୟ

ମର୍ତ୍ତ୍ୟୋମୃତ୍ୟୁବ୍ୟାଳଭୀତଃ ପଳାୟନ୍
ଲୋକାନ୍ ସର୍ବାନ୍ନିର୍ଭୟଂ ନାଧ୍ୟଗଚ୍ଛତ୍ ।
ତ୍ୱତ୍ପାଦାବ୍ଜଂ ପ୍ରାପ୍ୟ ଯଦୃଚ୍ଛୟାଦ୍ୟ
ସ୍ୱସ୍ଥଃ ଶେତେ ମୃତ୍ୟୁରସ୍ମାଦପୈତି ॥

( ଭାଗ—୧୦-୩-୨୭ )

## ଛପ୍ପୟ

ମରନ ଧରମ ଯୁହ ଜୀବ ଜଗତ ମହଁ ଇତ ଉତ ଭଟକତ ।
ପାଇ ବିଷୟ ସୁଖ ଛନିକ ଭୂଲି ତିନହୀଁ ମହଁ ଅଟକତ ॥
ସମୁଝତ ବିଷୟନି ସତ୍ୟ ନ କଛୁ ତିନ ମହଁ ସୁଖ ପାଵୈ ।
ୟୋଁ ହୀ ବୀତବତ ସମୟ ମୃତ୍ୟୁ ଇକ ଦିନ ଚଢ଼ି ଆଵୈ ॥
ମୃତ୍ୟୁ ଜନମ କେ ସଙ୍ଗ ଭଈ, ଜୋ ଜନମେଗୋ ସୋ ମରେଗୋ ।
ହରି ସୁମିରନ ଜୋ କରେଗୋ, ମୃତ୍ୟୁ ମୂଢ଼ ପଗ ଧରେଗୋ ।

'ଜାତସ୍ୟ ହି ଧ୍ରୁବୋ ମୃତ୍ୟୁଃ' ଅର୍ଥାତ୍ ଯେ ଜନ୍ମହୋଇଛି ସେ ନିଶ୍ଚୟ ମରିବ, ଏ ସିଦ୍ଧାନ୍ତ ଅଟଳ, ଅପରିହାର୍ଯ୍ୟ । ଏହି ସିଦ୍ଧାନ୍ତକୁ କେହି ଅନ୍ୟଥା କରିପାରିବେ ନାହିଁ, ବଦଳେଇ ପାରିବେ ନାହିଁ କି ମିଥ୍ୟା ବୋଲି ପ୍ରମାଣିତ କରିପାରିବେ ନାହିଁ । ଆଜି ହେଉ ବା ଶହେବର୍ଷ ପରେ ହେଉ ଜନ୍ମଗ୍ରହଣ କରିଥିବା ବ୍ୟକ୍ତିକୁ ନିଶ୍ଚୟ ମରିବାକୁ ପଡ଼ିବ ; ଅଦ୍ୟାବାବ୍ଦଶତାନ୍ତେ ବା ମୃତ୍ୟୁର୍ବୈ ପ୍ରାଣିନାଂ ଧ୍ରୁବ —ଏହି ସତ୍ୟକୁ ସମସ୍ତେ ସ୍ୱୀକାର କରିଛନ୍ତି ।

ମୃତ୍ୟୁ ପରି ଏକ ନିଶ୍ଚିତ ସତ୍ୟକୁ ପ୍ରାଣୀ, ସବୁଠାରୁ ଅଧିକ ଉପେକ୍ଷା କରେ । ମୋ' ଘରପାଖରେ ଶ୍ମଶାନ । ଦାହ ସଂସ୍କାର ପାଇଁ ଦଶ କୋଡ଼ିଏ କୋଶ ଦୂରରୁ

ଶବଗୁଡ଼ିକୁ ଏଠାକୁ ଆଣାଯାଇ ଆସନ୍ତି । ଏପରି କୌଣସି ଗୋଟିଏ ଦିନ ନାହିଁ ଯେଉଁଦିନ ଦୁଇ, ଚାରି, ଦଶ ବା କୋଡ଼ିଏଟି ଶବ ଏଠାକୁ ଆସିନାହାନ୍ତି । ଅନେକ ଗରିବ ଲୋକ, ଯାହାଙ୍କ ପାଖରେ ଦାହ କରିବାପାଇଁ ପଇସା ନାହିଁ ସେମାନେ ଶବକୁ ଗଙ୍ଗାଧାରରେ ଫିଙ୍ଗି ପକାଇ ଦେଇ ଯାଆନ୍ତି । ଶ୍ମଶାନ ଘାଟରେ ଥିବା କଇଁଚମାନେ ଉପରକୁ ଆସି ଅଳ୍ପସମୟ ମଧ୍ୟରେ ଶବକୁ ଖାଇ ଶେଷ କରିଦିଅନ୍ତି । ବେଳେବେଳେ କୁକୁରଗୁଡ଼ାକ ଶବକୁ ଟାଣି ଟାଣି ନେଇଯାନ୍ତି ଏବଂ ଗୋଟିଏ ପାଖରୁ କୁକୁର ଓ ଅନ୍ୟ ପାଖରୁ କଇଁଚ ଶବର ମାଂସ ଖାଆନ୍ତି । ଏହା ଏକ ବିଚିତ୍ର ଦୃଶ୍ୟ । ପ୍ରତିଦିନ ତ୍ରିବେଣୀରେ ସ୍ନାନ ସାରି ଫେରିବାବେଳେ ବା ସ୍ନାନ କରିବାକୁ ଯିବାବେଳେ ମୁଁ ଏହି ଦୃଶ୍ୟ ଦେଖିଥାଏ ।

ପୁରୁଷର ଶବ ହେଉ ବା ସ୍ତ୍ରୀର ଶବ ହେଉ ତାହା ଉଲଗ୍ନ ଅବସ୍ଥାରେ ହିଁ ପଡ଼ିଥାଏ । ଶାଗୁଣା, କୁକୁର, କଇଁଚ ଯେତେବେଳେ ଚାରିଆଡ଼ୁ ଘେରିଯାଇ ଶବକୁ ଟାଣି ଓଟାରି ଖାଉଥାନ୍ତି ସେତେବେଳେ ହଠାତ୍ ମୁହଁରୁ ବାହାରି-ପଡ଼େ ମୋର ବି ଦିନେ ଏହି ଅବସ୍ଥା ହେବ । କିଛିସମୟ ପାଇଁ ଏହି ଭାବନା ମନକୁ ଆଚ୍ଛନ୍ନ କରିରଖେ । କିନ୍ତୁ ଆଶ୍ରମରେ ପହଞ୍ଚି ପୂଜା, ପାଠ, ଚିଠିପତ୍ର, ବହିର ପ୍ରୁଫ୍, କାଗଜ ସଂଗ୍ରହ ଓ ଗ୍ରନ୍ଥ କାର୍ଯ୍ୟରେ ଲାଗିଗଲେ ସେସବୁ ଭୁଲି ହୋଇଯାଏ । ଦିନେନା ଦିନେ ଯେ ମରିବାକୁ ପଡ଼ିବ ସେକଥା କେତେବେଳେ ହେଲେ ମନେପଡ଼େ ନାହିଁ । ପ୍ରତିଦିନ ଅନେକ ଲୋକଙ୍କ ଶବ ଦେଖୁଥିଲେ ମଧ୍ୟ ମନରେ ବିଶେଷ କିଛି ପ୍ରତିକ୍ରିୟା ସୃଷ୍ଟି ହୁଏନାହିଁ । କିନ୍ତୁ କୌଣସି ପରିଚିତ ବନ୍ଧୁ, ସ୍ୱଜନ, ମିତ୍ରଙ୍କ ମୃତ୍ୟୁ ସମ୍ବାଦ ଶୁଣିଲେ ମୁଁ ଚମକି ପଡ଼େ । ସାଙ୍ଗେ ସାଙ୍ଗେ ମୁହଁରୁ ବାହାରିପଡ଼େ—ସେ ମରିଗଲେ, ବଡ଼ ଆଶ୍ଚର୍ଯ୍ୟ କଥା । ସେ ତ ଭଲ ଥିଲେ । ଗତକାଲି ତାଙ୍କ ସହିତ ମୋର ଦେଖା ହୋଇଥିଲା । କିନ୍ତୁ ଥରେ ଭାବନ୍ତୁ, ଯାହା ଅବଶ୍ୟମ୍ଭାବୀ ସେଥିରେ ଆଶ୍ଚର୍ଯ୍ୟହେବାର କଣ ଅଛି ? ଆଶ୍ଚର୍ଯ୍ୟ ହେବାର କଥା ହେଉଛି, ନଅଟି ଛିଦ୍ରଯୁକ୍ତ ଦେହରୂପକ ପାତ୍ରରେ ପ୍ରାଣରୂପକ ଜଳ ରଖାଯାଇଛି । କଳସୀରେ ଗୋଟିଏ କଣା ଥିଲେ ସେଥିରେ ଟୋପାଏ ପାଣି ରହିପାରେ ନାହିଁ । ଦେହରୂପକ କଳସୀରେ ତ ନଅଟା କଣା ଅଛି । ସେଥିରେ ଯେଉଁ କେତେଦିନ ଏ ପ୍ରାଣ ରହୁଛି, ତାହାହିଁ ଆଶ୍ଚର୍ଯ୍ୟର ବିଷୟ ।

ମୃତ୍ୟୁ ପାଇଁ ବେଶୀ କିଛି ସମୟ ଲାଗେ ନାହିଁ । ଆମେ ନିଃଶ୍ୱାସ ଛାଡ଼ୁଛୁ, ପ୍ରଶ୍ୱାସ ଗ୍ରହଣ କରୁଛୁ । ଯେତେବେଳେ ନିଃଶ୍ୱାସ ଛାଡ଼ିଲୁ ଆଉ ପ୍ରଶ୍ୱାସ ଗ୍ରହଣ କଲୁ ନାହିଁ ସେତେବେଳେ ମୃତ୍ୟୁ ହୋଇଗଲା । ମୃତ୍ୟୁ ବିଷୟରେ ପୂର୍ବରୁ କିଛି ସୂଚନା ମିଳେ ନାହିଁ । ଜଗତରେ ଏପରି କୌଣସି ସ୍ଥାନ ନାହିଁ ଯେଉଁଠି ମୃତ୍ୟୁ ନାହିଁ । କାୟା ସହିତ ଛାୟା ପରି ଜୀବନ ସହିତ ମୃତ୍ୟୁ ଲାଗି ରହିଥାଏ । କେତେବେଳେ

ତାହା ଆସିଯିବ ତାହା କେହି ନିଶ୍ଚୟ କରି କହି ପାରିବ ନାହିଁ । ସେଥିପାଇଁ ସାଧୁମାନେ ବାରମ୍ବାର ଚେତାଇ ଦିଅନ୍ତି ଯେ ମାଧବ ଓ ମୃତ୍ୟୁକୁ କେହି କେବେ ଭୁଲିଯିବା ଉଚିତ ନୁହେଁ । ଯେ ମୃତ୍ୟୁକୁ ସ୍ମରଣ ରଖିଥାଏ ତାର ମୃତ୍ୟୁ ପାଇଁ ଭୟ ବା ଦୁଃଖ ଜାତ ହୁଏ ନାହିଁ । ନୋହିଲେ ଶୁଣାଯାଏ, ମଲାବେଳେ ହଜାର ହଜାର ବିଛା କାମୁଡ଼ିବା ପରି ଯନ୍ତ୍ରଣା ହୁଏ । ଜ୍ଞାନି ଓ ଅଜ୍ଞାନ ମଧ୍ୟରେ ଏକ ବଡ଼ ପାର୍ଥକ୍ୟ ଅଛି । ଅଜ୍ଞାନ ବ୍ୟକ୍ତି ମୃତ୍ୟୁଠାରୁ ଦୂରେଇ ରହିବାପାଇଁ ସବୁବେଳେ ଚେଷ୍ଟା କରେ । ସୁଖରେ ଅମର ହୋଇ ରହିବା ତା'ର ଆନ୍ତରିକ ଇଚ୍ଛା । କିନ୍ତୁ ଜ୍ଞାନୀ ଲୋକେ ଭାବନ୍ତି ତାଙ୍କର ସୁଖମରଣ ହେଉ । ଅଜ୍ଞାନ ଲୋକ ବଞ୍ଚିବା ପାଇଁ ବ୍ୟାକୁଳ ହେଉଥିବାବେଳେ ଜ୍ଞାନୀ ଲୋକ ମୃତ୍ୟୁକୁ ସ୍ୱାଗତ କରିବା ଅପେକ୍ଷାରେ ରହେ । ଜ୍ଞାନୀ ଲୋକ ଭାବେ, ମରିବାବେଳେ ମାୟାଜଗତର କଥା ମନରେ ନ ଆସି ଭଗବାନଙ୍କ କଥା ସ୍ମୃତିକୁ ଆସୁ ।

ଏକଦା ଜଣେ ଭକ୍ତ ଭଗବାନଙ୍କୁ ପ୍ରାର୍ଥନା କରି ନମ୍ରତାର ସହିତ କହିଲେ— ପ୍ରଭୋ ! ମଲାବେଳେ ମୋର ମନ ରୂପକ ହଂସ ଆପଣଙ୍କ ପାଦପଦ୍ମରେ ଲାଗିରହୁ ।

ଭଗବାନ କହିଲେ—"ଏତେ ବ୍ୟାକୁଳ କାହିଁକି ହେଉଛ । ସମସ୍ତ ପ୍ରକାର ଜପ, ତପ, ଯଜ୍ଞ, ଦାନଧର୍ମ, ପୁଣ୍ୟକାର୍ଯ୍ୟ ମୃତ୍ୟୁର ସମୟ ପାଇଁ ଉଦ୍ଦିଷ୍ଟ । ମଲାବେଳେ ଯେପରି ମତି ଥିବ ସେହିପରି ଗତି ମିଳିବ । ଯେତେବେଳେ ମରିବ ସେତେବେଳେ ମୋର ନାମ ସ୍ମରଣ କରିବ । ସେଥିପାଇଁ ଏବେଠୁ ଅସ୍ଥିର ହେବା ଉଚିତ ନୁହେଁ ।"

ଭକ୍ତ କହିଲେ—"ପ୍ରଭୋ ! ସମସ୍ତ ଧର୍ମକାର୍ଯ୍ୟ ମୃତ୍ୟୁକାଳ ଉଦ୍ଦେଶ୍ୟରେ କରାଯାଏ, ଏହା ସତ୍ୟ । କାରଣ, ମୃତ୍ୟୁ ସମୟରେ ପ୍ରକୃତ କଥା ମନରେ ପଡ଼ିବା ପାଇଁ ଏସବୁ କରାଯାଇଥାଏ । କିନ୍ତୁ ମରିବାର ନିଶ୍ଚିତ ସମୟ ଜାଣିବା ତ ସମ୍ଭବ ନୁହେଁ । କେତେବେଳେ ଯେ ପ୍ରାଣବାୟୁ ବାହାରିବ ତାହା କିଏ କହି ପାରିବ ? ଆପଣ କହୁଛନ୍ତି ମଲାବେଳେ ଆପଣଙ୍କ ନାମ ସ୍ମରଣ କରିବ । କିନ୍ତୁ ଯେତେବେଳେ ସର୍ବସ୍ୱ ଗ୍ଲାନିଯାଏ ସେତେବେଳେ କାହାର ମୁଣ୍ଡ ଠିକ୍ ରହେ ନାହିଁ । ମଲାବେଳେ କଣ୍ଠ କଫରେ ପୂର୍ଣ୍ଣ ହୋଇଯାଏ । ଘଣ୍ଟି ଘଡ଼ ଘଡ଼ ହୁଏ । ସନ୍ନିପାତ ଆସିଯାଏ । ବାତ, ପିତ୍ତ ଓ କଫ କୁପିତ ହୋଇ ସ୍ୱରକୁ ଅବରୁଦ୍ଧ କରିଦିଅନ୍ତି । ଏ ପ୍ରକାର ଗୋଳମାଳିଆ ଅବସ୍ଥାବେଳେ ଆପଣଙ୍କୁ ସ୍ମରଣ କରିବା ଆଦୌ ସମ୍ଭବ ନୁହେଁ । ତେଣୁ ବର୍ତ୍ତମାନଠାରୁ ମୋର ମନ ଆପଣଙ୍କ ଚରଣକମଳରେ ଲାଗିରହୁ ।"

ସାରକଥା ହେଉଛି, ଭଗବଦ୍‌ଭକ୍ତ ଆରମ୍ଭରୁ ଭଗବାନଙ୍କୁ ନିଜ ହୃଦୟରେ ସ୍ଥାପନ କରିବାକୁ ଇଚ୍ଛା କରେ ଯାହାଙ୍କୁ ଦେଖି ମୃତ୍ୟୁ ନିଜେ ଦୂରେଇ ଯାଏ । ସେଥିପାଇଁ

ସାଧକ ମୃତ୍ୟୁକୁ ସ୍ମରଣ କରିବା ବାଞ୍ଛନୀୟ । ଦିନେ ମୋତେ ମରିବାକୁ ହେବ । ଏହା ମନେ ରଖିବା ଉଚିତ । 'ଜଣେ ରାଜା ଥିଲେ । ଦୁଇଜଣ ରାଜକର୍ମଚାରୀ ରାଜାଙ୍କ ଦୁଇ ପାଖରେ ସବୁବେଳେ ଉପସ୍ଥିତ ରହି କହୁଥିଲେ—ତୁମକୁ ଦିନେ ମରିବାକୁ ପଡ଼ିବ ।' ଏହା ମୁଁ ଲୋକ ମୁଖରୁ ଶୁଣିଛି । କିନ୍ତୁ ସତ କହିବାକୁ ଗଲେ, ଜଣେ ନିଜର ମୃତ୍ୟୁକଥା ସ୍ମରଣ ରଖିଲେ ନାନା ପ୍ରକାର ପାପକାର୍ଯ୍ୟରୁ ନିବୃତ୍ତ ରହିପାରିବ । ମଣିଷ ମୃତ୍ୟୁକୁ ଭୁଲି ଯାଉଥିବାରୁ ହିଁ ସବୁପ୍ରକାର ପାପକର୍ମ କରୁଛି ।

ଆମର ଏ ବିଷୟରେ ବିଶ୍ୱାସ ଥାଉ ବା ନ ଥାଉ କାହାର ମୃତ୍ୟୁ ଖବର ଶୁଣିବା ମାତ୍ରେ ଆମେ ହଠାତ୍ ସେକଥା ବିଶ୍ୱାସ କରୁ ନାହିଁ । ମୃତ୍ୟୁ ବିଷୟରେ ଅନେକ ଯୁକ୍ତିତର୍କ କରୁ, କିନ୍ତୁ ଶେଷରେ କହୁ, ମରିବାର ନିଶ୍ଚିତ ସମୟ ଓ କାରଣ କିଏ କହିପାରିବ ? ଯେ କୌଣସି ସମୟରେ ପ୍ରାଣ ଯାଇପାରେ । ଜଣେ ରୁଗ୍ଣ ଲୋକ ମରିଗଲେ ଆମେ କହୁ, ବିଚରା ଅନେକ ଦିନ ହେଲା ବହୁତ କଷ୍ଟ ପାଉଥିଲା, ମରିଗଲା ତରିଗଲା । କିନ୍ତୁ ହଠାତ୍ କେହି ଆତ୍ମୀୟ ସ୍ୱଜନ ମରିଗଲେ ଆମେ ବିସ୍ମିତ ନ ହୋଇ ରହିପାରୁ ନାହିଁ । ଅବିଶ୍ୱାସ ହୁଏ ନାହିଁ କାରଣ ମୃତ୍ୟୁ ନିଶ୍ଚିତ, କିନ୍ତୁ ବିଶ୍ୱାସ ହୁଏ ନାହିଁ କାରଣ ମୃତ୍ୟୁର କୌଣସି ପ୍ରକାର ପୂର୍ବ ସୂଚନା ନ ଥିଲା । ଯଦି ମିଛରେ କାହାର ମୃତ୍ୟୁ ଖବର ପ୍ରଚାରିତ ହୋଇଯାଏ, ସେଥିରେ ପ୍ରଥମେ ଯେପରି ଦୁଃଖ ହୁଏ ଶେଷରେ ସେହିପରି ଆନନ୍ଦ ମିଳେ ।

ସେଦିନ ଥିଲା ଭାଦ୍ରବ କୃଷ୍ଣ ପ୍ରତିପଦା । ଶ୍ରାବଣୀ ଉତ୍ସବପରେ ସେଦିନ ସବୁଦିନ ପରି କଥା ଶୁଣୁଥିବାବେଳେ ପଣ୍ଡିତ ଗୋବିନ୍ଦ ବଲ୍ଲଭ ପନ୍ତ ଏକ ଟେଲିଗ୍ରାମ ଧରି ପହଞ୍ଚିଲେ । ଟେଲିଗ୍ରାମ ବୃନ୍ଦାବନ ଧାମରୁ ଆସିଥିଲା । ପୂଜ୍ୟପାଦ ଶ୍ରୀହରି ବାବାଜୀ ତାର କରିଥିଲେ । ସେଥିରେ ଲେଖା ଥିଲା—'ମୁଁ ଆପଣଙ୍କ ବିଷୟରେ ଏକ ଅଶୁଭ ସମ୍ବାଦ ଶୁଣିଲି । ଆପଣଙ୍କ ସ୍ୱାସ୍ଥ୍ୟ ବିଷୟରେ ଶୀଘ୍ର ତାର କରନ୍ତୁ ।' ଏହା ଶୁଣି ମୁଁ ଆଶ୍ଚର୍ଯ୍ୟ ହୋଇଗଲି । କିଏ ମୋ' ବିଷୟରେ କଣ କହିଲା ? ବହୁତ ଭାବିଲି । ଶେଷରେ କଥାଟା ବୁଝି ପାରିଲି । ଏହାର ଦୁଇ ଚାରିଦିନ ପୂର୍ବରୁ 'ଭାରତ' ନାମକ ଦୈନିକ ଖବର କାଗଜରେ ପ୍ରସିଦ୍ଧ ସାଧୁ କାଶୀସ୍ଥ ବ୍ରହ୍ମଚାରୀଙ୍କ ଦେହାନ୍ତ ହୋଇଥିବାର ସମ୍ବାଦ ପ୍ରକାଶ ପାଇଥିଲା । ମୁଁ ଅନୁମାନ କଲି, କେହି ତ ପୂରା ନାମ ଜାଣନ୍ତି ନାହିଁ । ତେଣୁ କେହି କହି ଦେଇଥିବ—ବ୍ରହ୍ମଚାରୀଙ୍କ ଦେହାନ୍ତ ହୋଇଗଲା । ସେ ଖବର ଶୁଣି ଆଉ କେହି ଶ୍ରୀହରି ବାବାଜୀଙ୍କୁ କହିଥିବ । ସେ ତ କେବେ କାଗଜ ପଢ଼ନ୍ତି ନାହିଁ । ସେଥିପାଇଁ ପ୍ରକୃତ କଥା ଜାଣିବା ଉଦ୍ଦେଶ୍ୟରେ ସେ ତାର କରିଛନ୍ତି । ମୁଁ ସାଙ୍ଗେ ସାଙ୍ଗେ ତାର ଯୋଗେ ଜଣାଇ ଦେଲି—ମୁଁ ଆପଣଙ୍କ କୃପାରୁ କୁଶଳରେ ଅଛି ।

ଦ୍ୱିତୀୟ ଦିନ ସେହିପରି ଆଗ୍ରୀଂ ଚକ୍ରପାଣି, ଆନନ୍ଦ ବ୍ରହ୍ମଚାରୀ, ସ୍ୱାମୀ କୃଷ୍ଣାନନ୍ଦ, ପଣ୍ଡିତ ନିତ୍ୟାନନ୍ଦ ଭଟ୍ଟ ପ୍ରଭୃତିଙ୍କଠାରୁ ଏକପ୍ରକାର ଟେଲିଗ୍ରାମ ପାଇଲି । ମୋର ମୃତ୍ୟୁରେ ଅନ୍ୟ କାହାର ଦୁଃଖ ହେବାର କଥା ନୁହେଁ, ଏ ବିଶ୍ୱାସ ଅଛି । କେବଳ ପ୍ରେମବଶତଃ ଦୁଃଖ ହୁଏ । ଲୋକେ ତ ପ୍ରତିଦିନ ମରୁଛନ୍ତି । ଯାହା ସହିତ ସମ୍ପର୍କ ନାହିଁ ତାର ମୃତ୍ୟୁରେ ଦୁଃଖ ହୁଏ ନାହିଁ । ଯେ ପରୋପକାରୀ ବା ଯାହା ସହିତ ସମ୍ପର୍କ ଥାଏ କେବଳ ତାହାର ମୃତ୍ୟୁରେ ଦୁଃଖ ହୁଏ । ମୁଁ କାହାରିକୁ ପ୍ରେମ କରିନାହିଁ । ମୋର ରୁକ୍ଷ ସ୍ୱଭାବ ହେତୁ ସମସ୍ତେ ମୋତେ ଛାଡ଼ି ଯାଇଛନ୍ତି, ମୋତେ ଘୃଣା ବି କରିଛନ୍ତି । ମୁଁ ଯେତେବେଳେ କାହାରିକୁ ଭଲପାଏ ନାହିଁ ସେତେବେଳେ ମୋତେ ବା କିଏ କାହିଁକି ଭଲପାଇବ ? ଆଉ ରହିଲା ପରୋପକାର କଥା । ମୁଁ ଯାହା କରୁଛି ସେସବୁ ମୋର ଅଭିଳାଷ ପୂରଣ ପାଇଁ କରୁଛି । ତା'ଦ୍ୱାରା ଯଦି କାହାର କିଛି ଉପକାର ହୋଇଗଲା ତ ହେଲା, ନୋହିଲେ ନାହିଁ । ତେଣୁ ମୋର ମୃତ୍ୟୁରେ କିଛି ଗୋଟାଏ ବଡ଼ଧରଣର ହଲ୍ ଚଲ୍ ହୋଇଯିବ, ସେପରି ଆଶା ନାହିଁ । ତଥାପି ଯାହା ସହିତ ପ୍ରେମ ସମ୍ପର୍କ ଅଛି, ଯେଉଁମାନେ ସାଧୁ ସ୍ୱଭାବର ଲୋକ ସେମାନେ ଦୁଃସମ୍ବାଦ ଶୁଣି ଚିନ୍ତିତ ହେବା ସ୍ୱାଭାବିକ । ମୁଁ ଶୁକ୍ର ପାଞ୍ଚଦିନ ପର୍ଯ୍ୟନ୍ତ ପ୍ରକୃତ ଖବର ବିଷୟରେ କିଛି ଜାଣିପାରିଲି ନାହିଁ । ପରେ 'ଭାରତ'ର ସମ୍ପାଦକ ରାମଦାସ ଶାସ୍ତ୍ରୀଙ୍କ ପତ୍ର ଆସିଲା । ସେଥିରୁ ସବୁକଥା ବୁଝା ପଡ଼ିଲା । ସେ ଚିଠିରେ ଲେଖାଥିଲା—

ପ୍ରଭୁ ବଡ଼ ଦୁଷ୍ଟ । ତାଙ୍କ ଲୀଳା ତାଙ୍କରି ଦୟାରୁ ଲୋକ ଦେଖିପାରେ । ପ୍ରଭୁଙ୍କ ପାଖରେ କିଛି କାମ ନ ଥିଲେ ସେ ମିଛିମିଛିକା ଖେଳ ଖେଳନ୍ତି । ସେଥିରେ ଏକ ରସ ଥାଏ, ଆନନ୍ଦ ଥାଏ । କିଛି ନ ହେଲେ ଭକ୍ତଙ୍କ ନାମରେ ଏପରି ଖେଳ ରଚନା କରାଯାଇଥାଏ । ଗତକାଲି ସନ୍ଧ୍ୟା ସୁଦ୍ଧା ତିନି ଦିନ ହେଲା ମନ ବଡ଼ ବ୍ୟସ୍ତ, ବିବ୍ରତ ଥିଲା । ରାତିରେ ଶ୍ରୀ ଆନନ୍ଦଙ୍କଠାରୁ ଟେଲିଗ୍ରାମ ପାଇବା ପରେ ମନ ଶାନ୍ତ ହେଲା । ଆଜି ସକାଳେ ଆଉ ଏକ ଟେଲିଗ୍ରାମ ପାଇବା ପରେ ସବୁକଥା ସ୍ପଷ୍ଟ ହୋଇଗଲା । ନୋହିଲେ, ସେ ପର୍ଯ୍ୟନ୍ତ ଅଜ୍ଞାନତାବଶତଃ ପ୍ରଭୁଙ୍କ ଉପରେ, ଭାଗବତ ଭକ୍ତଙ୍କ ଉପରେ ବା ଦୁଷ୍ଟ ଲୋକଙ୍କ ଉପରେ ବଡ଼ ରାଗ ଆସୁଥିଲା । କାରଣ, ଦୁଃସମ୍ବାଦ ଶୁଣିବା ପାଇଁ ପ୍ରଭୁ କଣ କେବଳ ଆମକୁ ଜନ୍ମ ଦେଇଛନ୍ତି, ତାଙ୍କୁ ଆଉ କେହି ମିଳିଲେ ନାହିଁ ?

ରାମଜୀ ମହାରାଜ ବୃନ୍ଦାବନ ଆସିଥିଲେ । କିଏ ଗୋଟାଏ ଭୂତ ତାଙ୍କୁ ଯାଇ କହିଲା, ମୁଁ ପରା ନିଜେ ଦେଖି ଆସିଲି । ଝୁସିରେ ହାହାକାର ପଡ଼ି ଯାଉଛି,

ବ୍ରହ୍ମଗୃଷ୍ଟ....ହସ୍ତଚରଣ···ଧାନ୍ଦୁ ଇତ୍ୟାଦି । ସେ ଆଉ କାହାକୁ ଏକଥା କହିଲା ଏବଂ କାନକୁ କାନହୋଇ କଥାଟା ପ୍ରଚାର ହୋଇଗଲା । ଶେଷରେ ମନର ଯେଉଁ ଅବସ୍ଥା ହେଲା ତାହା କହିହେବ ନାହିଁ । ସେ ଯାହାହେଉ, ମୁଁ ପ୍ରାର୍ଥନା କରୁଛି ଆପଣ ଯେ ପ୍ରତିଷ୍ଠାନପୁର ଛାଡ଼ିଦିଅନ୍ତୁ । 'ଭଗବତ୍ କଥା' ଅନ୍ୟ ଯେ କୌଣସି ସ୍ଥାନରେ ଲେଖା-ଯାଇ ପାରିବ । ସେଠାରେ ଆପଣଙ୍କ ପ୍ରତି ଅଯଥା ଦ୍ୱେଷଭାବ ସୃଷ୍ଟି ହେଉଛି । ଆଜକାଲି ଯୁଗର ଏ ଅବସ୍ଥା । ସେଠାରେ ରହିଲେ ଆହୁରି ଅଧିକ ଭୟଙ୍କର ଘଟଣା ଘଟିବା ବିଚିତ୍ର ନୁହେଁ । ଯାହି.ହେଉ, ଏ ଦୁଃସମ୍ବାଦରେ ବ୍ରହ୍ମଗୃଷ୍ଟ ଅର୍ମଗତି ଲାଭକଲେ ।

ଉପରୋକ୍ତ ଚିଠିଟି ପଢ଼ି ମୋତେ ଖୁବ୍ ହସମାଡ଼ିଲା । କଥା କଥାକେ ଲୋକେ କେତେବଡ଼ ଘଟଣା ଘଟାଇଦିଅନ୍ତି, ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ଥରେ କୁମ୍ଭମେଳା ସମୟରେ ହଂସତୀର୍ଥରେ ରହୁଥିଲି । ଦିନେ ରାତିରେ ସେ ସ୍ଥାନ ଛାଡ଼ି ଗ୍ଲିଗଲି । ସେ ସମୟରେ ଲୋକେ କେତେପ୍ରକାର କଥା କହିଲେ । କିଏ କହିଲା— ବ୍ରହ୍ମଗୃଷ୍ଟ ପୃଥିବୀକୁ ପ୍ରାର୍ଥନା କଲେ ତୁ ଫାଟିଯା । ପୃଥିବୀ ଫାଟିଗଲା । ସେଥିରୁ ଏକ ଜଳଧାରା ବାହାରି ହଂସତୀର୍ଥର କୁଟୀରକୁ ବୁଡ଼ାଇଦେଲା । ବ୍ରହ୍ମଗୃଷ୍ଟ ଜଳଧାରାରେ ଭାସିଗଲେ । ସେ ଭାସି ଯାଉଥିବାର ଆମେ ନିଜ ଆଖିରେ ଦେଖିଛୁ । ଆଉ କେହି କହିଲା—ବ୍ରହ୍ମଗୃଷ୍ଟ ଡଙ୍ଗାରେ ବସି ତ୍ରିବେଣୀ ସ୍ନାନ ପାଇଁ ଯାଇଥିଲେ । ମଝିରେ ଏକ ଜଳଭଉଁରୀ ଉଠିଲା ଆଉ ସେଇ ଭଉଁରୀରେ ଡଙ୍ଗା ସହିତ ବ୍ରହ୍ମଗୃଷ୍ଟ ବୁଡ଼ିଗଲେ । ପୁଣି କିଏ କହିଲା— ଅମୁକ ସ୍ଥାନରୁ ଲଷେଟଙ୍କା ଆସିଥିଲା । ବ୍ରହ୍ମଗୃଷ୍ଟ ସେତକ ଧରି ଚମ୍ପଟ୍ । ଏହିପରିଗୁଡ଼ିଏ କଥା ଆଖିରେ ଦେଖିଲାପରି କୁହାଯାଇଥାଏ । କିନ୍ତୁ ଏଥିରେ ସାରକଥା କିଛି ନାହିଁ । କିନ୍ତୁ କଥା ହେଉଛି, କୁଟୀରର ଲୋକେ ମୁଁ ସେଠାରେ ରହେ ବୋଲି ଗ୍ହୁଁ ନଥିଲେ । ସେମାନଙ୍କ ଇଚ୍ଛା ବିରୁଦ୍ଧରେ ରହିଲେ ଅଯଥା ଶତ୍ରୁତା ବଢ଼ିବ ବୋଲି ଭାବି ମୁଁ ସେ ସ୍ଥାନ ଛାଡ଼ିଥିଲି । ଆଉକେବେ ସେଠାକୁ ଯାଇନାହିଁ ।

ଲୋକେ ସେହି ଘଟଣାକୁ ବିଚିତ୍ରଭାବେ ପ୍ରଗ୍ୱର କରିଦେଲେ । ଜଣେ ନିଜ ଆଖିରେ ଦେଖିଆସିଛି ବୋଲି କହିଲେ ତା' କଥାକୁ ଅବିଶ୍ୱାସ କିଏ କରିବ ? କିନ୍ତୁ କଥାଟା ଯେ ପ୍ରଗ୍ୱର କଲା ସେ ବଡ଼ ନିର୍ବୁଦ୍ଧିଆ କାମକଲା । ସେ ଯଦି କହିଥାନ୍ତା ପାଣିରେ ବୁଡ଼ି ମରିଗଲେ, ସାପ କାମୁଡ଼ିବାରୁ ବା ହୃଦ୍‌ଯନ୍ତ୍ର ବନ୍ଦ ହୋଇଯିବାରୁ ମରିଗଲେ ତେବେ କେହି ଅବିଶ୍ୱାସ କରିଥାନ୍ତେ ନାହିଁ । କିନ୍ତୁ ସଂକୀର୍ତ୍ତନ ଭବନରେ କିଣ ଅଛି ଯେ ଚୋର ପଶିବେ । ଏଠାକୁ ପନ୍ଦର ଦିନ ପାଇଁ ଯେଉଁ କଣ୍ଟ୍ରୋଲ ଜିନିଷ ଆସୁଛି ତାହା ଦଶଦିନ ବା ବାରଦିନରେ ସରିଯାଉଛି । ଅବଶିଷ୍ଟ ଦିନ ଗ୍ୱରିଦିନ ବଡ଼ କଷ୍ଟରେ କାଟୁଛି ।

'ଭାଗବତ କଥା'ରୁ ମିଳୁଥିବା ଲାଭକଥା ଶୁଣନ୍ତୁ । ବର୍ଷରେ ସେଥିପାଇଁ ପାଞ୍ଚ ଛଅ ହଜାର ଟଙ୍କା କ୍ଷତି ହେଉଛି । ତାକୁ କ୍ଷତି କହିଲେ ଠିକ୍ ହେବନାହିଁ । କାରଣ, ଯେ ବାବଦରେ ଦକ୍ଷିଣା ସ୍ୱରୂପ ଯାହା ମିଳୁଛି ସେତକ ଲୋକେ ଖାଇଯାଉ-ଛନ୍ତି । ଖାଦ୍ୟଦ୍ରବ୍ୟ ଯାହା ଆସୁଛି ସେତକ ନଅଣ୍ଟ ହେଉଛି । ପ୍ରତିଦିନ ତାକକୁ ଗୃହି ବସିବାକୁ ପଡ଼ୁଛି, ଯଦି କିଛି ଆସିଯିବ ତେବେ ତାଲି ଗୃଉଳ କଣାହେବ । ବର୍ଷ-ଶେଷକୁ ଯାହା କ୍ଷତି ହେଉଛି ତାକୁ ଭଗବାନ୍ କୌଣସିମତେ ପୂରଣ କରଦେଉଛନ୍ତି । ପ୍ରଥମ ବର୍ଷ ଦିଲ୍ଲୀର ସୂର୍ଯ୍ୟନାରାୟଣ ଲାଲ ନିଜ ବନ୍ଧୁବାନ୍ଧବଙ୍କଠାରୁ ସଂଗ୍ରହ କରି ପାଞ୍ଚ ସାତ ହଜାର ଟଙ୍କା ଦେଇଥିଲେ । ଦ୍ୱିତୀୟ ବର୍ଷ ଝରିଆର ଖୀରମ ବାବୁ ପାଞ୍ଚ ହଜାର ଦେଇ କାମ ଚଳାଇଥିଲେ । ବର୍ତ୍ତମାନ ଏଣ୍ଟୁଟେଣ୍ଟ ହୋଇ ତୃତୀୟବର୍ଷ ଚାଲିଛି ।

ବାକି ମୋ' କଥା, ଶୁଣନ୍ତୁ । ସମସ୍ତେ ମୋ' କଥା ଜାଣନ୍ତି । ମୋର କେତେକ ଦସ୍ତଖତ ଲୋକ ଅଛନ୍ତି, ଯେଉଁମାନଙ୍କ ପାଖରୁ ପ୍ରତିଦିନ ଦୁଇଗୃରି ପଇସା-କରି ଭିକ ମାଗିନଏ । ପ୍ରଥମେ ଲୋକେ ଆଗ୍ରହ ଓ ଉତ୍ସାହର ସହିତ ଦେଉଥିଲେ । କିନ୍ତୁ 'ଭାଗବତ କଥା' ଆରମ୍ଭ ହେବା ଦିନଠାରୁ ଲୋକଙ୍କ ଶ୍ରଦ୍ଧା କମିଗଲା । ସମସ୍ତେ ଭାବିଲେ—ଏବେ ତ ବ୍ରହ୍ମଗୃରୀ ବେପାର ଆରମ୍ଭ କଲେଣି । ଆମେ ଯେପରି ସେ ବି ସେହିପରି ହେଲେଣି, ଆଉ ଭିକ୍ଷା ଦେବାର ପ୍ରୟୋଜନ କିଛି ନାହିଁ । ସେଥିପାଇଁ ଅନେକ ଭିକ୍ଷାଦାନ ବନ୍ଦ କରଦେଲେଣି । ତଥାପି କୌଣସିମତେ ଚାଲିଯାଉଛି । ମୋ' ବେପାରରେ କ୍ଷତି ହେଉଛି ତ ହେଉଛି ଆଉ ଲାଭ ହେଉଛି ତ ହେଉଛି । କ୍ଷତି ହେବାର କାରଣ ହେଲା ଯାହା ଆୟ ତା'ଠାରୁ ବ୍ୟୟ ଅଧିକ ହେଉଛି । ଲୋକଙ୍କ ଆବଶ୍ୟକତା କୌଣସିମତେ ପୂରଣ ହୋଇପାରୁ ଥିବାରୁ ତାହାକୁ ଲାଭ କୁହାଯାଇପାରେ । ନଦୀରେ ନୌକା ବୁଡ଼ିଗଲେ ନାଉରିଆର କଉପିନଟି ଓଦାହୁଏ । ମୋର ଲାଭ ଠିକ୍ ସେହିପରି । ଏ ଅବସ୍ଥାରେ ଗୃେର ଆସି ଆମର କ'ଣ କରିବ ? ଏସବୁ କଥା ଜାଣି ମଧ୍ୟ ସମସ୍ତଙ୍କର ସନ୍ଦେହ ହେଉଛି । ପ୍ରାରବ୍ଧ କଥା କିଏ କହିପାରିବ ? କି ଅବସ୍ଥାରେ କିପରି କାହାର ମରଣ ହେବ କିଏ ଜାଣେ ?

ବୃନ୍ଦାବନର ବାବାଜୀଙ୍କ ଚିଠି ଉପରେ ମୁଁ ମନେ ମନେ ଖୁବ୍ ଭାବିଲି । କେତେକ ମୋତେ ପ୍ରତିଷ୍ଠାନପୁର ଗୃଡ଼ିଯିବା ପାଇଁ ପରାମର୍ଶ ଦେଇଛନ୍ତି । ମୋର ଏଠାରେ ଅଛି କଣ ? ତଥାପି ଭାଗବତ କଥା ଲେଖିବାର ବାସନା ମୋତେ ଏଠାରେ ରହିବା ପାଇଁ ବାଧ୍ୟକଲା । ଅଷ୍ଟାଦଶ ପୁରାଣ ଶୁଣିବା କାମ ଗୃଲିଥାଏ । ଦଶ ଏଗାରଟି ପୁରାଣ ଶେଷ ହୋଇ ସାରିଥାଏ । ପୁରାଣ ଶୁଣିବା ଅନ୍ୟ ସ୍ଥାନରେ ହୋଇପାରେ । ଭାଗବତ କଥା ଲେଖା ଗୃଲିଥାଏ । କିନ୍ତୁ ଅନ୍ୟ ସ୍ଥାନକୁ ଯାଇ ମନ

ସ୍ଥିର କଲି ଏସବୁ କାମ କରିବା ପାଇଁ କିଛି ସମୟ ଯେ ଲାଗିବ ସେଥିରେ ସନ୍ଦେହ ନାହିଁ । ଖୁବ୍ ସମ୍ଭବତଃ କାମ ଯେଉଁଠି ଥିଲା ସେଇଠି ଅଧାହୋଇ ରହିଯିବ । କାରଣ ଏହିଭଳି ଅବସ୍ଥାରେ କେତେକ ବହି ଏଯାଏ ଅପୂର୍ଣ୍ଣ ହୋଇ ପଡ଼ିରହିଛି । ବହିଗୁଡ଼ିକ ସବୁ ମୁଁ ଛପାଇଦେବି ସେପରି ଆଶା ନାହିଁ କି ବିଶ୍ୱାସ ନାହିଁ । ଛପା ହେଉ ନ ହେଉ ୧୦୮ ଖଣ୍ଡରେ ତ ଲେଖିବା କାମ ସାରିଦେଇ ପାରିବି ।

ପାଠକମାନଙ୍କର ସମ୍ଭବତଃ ମନେ ନଥିବ । ଭାଗବତ କଥାର ପ୍ରତ୍ୟେକ କଥା ଆରମ୍ଭ ଓ ଶେଷରେ ଯେଉଁ ଛପ୍‌ପୟ ଅଛି ସେଗୁଡ଼ିକର ପରସ୍ପର ସଂପର୍କ ଅଛି । ଖଣ୍ଡିଏ ବହିରେ ଯଦି ସଙ୍କଳିତ ଛପ୍‌ପୟ ଗୁଡ଼ିକ ଆପଣ ପଢ଼ିବେ ତେବେ ପୁରାପୁରି ଭାଗବତ କଥା ଜାଣିପାରିବେ । ସେଗୁଡ଼ିକୁ ଏକତ୍ରିତ କରି 'ଶ୍ରୀଭାଗବତ ଚରିତ' ନାମରେ ଖଣ୍ଡିଏ ବହି ଛପା ହୋଇଛି । ତା'ଛଡ଼ା ପ୍ରସଙ୍ଗ ସଙ୍ଗତି ପାଇଁ ମଝିରେ ମଝିରେ ଦୋହା, ସୋରଠା, ଛନ୍ଦ ତଥା ପଦ ମଧ୍ୟ ଯୋଡ଼ା ଯାଇଅଛି । ଏହା ସାତ ଭାଗରେ ବିଭକ୍ତ । ସପ୍ତାହ, ପାକ୍ଷିକ ଓ ମାସିକ ଭାଗବତ ପାଠ ପାଇଁ ଏହା ଖୁବ୍ ଉପାଦେୟ ହେବ । ଯାକୁ ଲୁଚିବା ଇଚ୍ଛା ଥିଲା ତାହା ପୂରଣ ହୋଇଛି ।

ଏହି ଭାଗବତ ପଢ଼ିବାରେ ଅନ୍ୟ କାହାର ଲାଭ ହେଉ ବା ନ ହେଉ ମୋର ଖୁବ୍ ସୁବିଧା ହୋଇଛି । ନିଜ କବିତା ଅନ୍ୟକୁ ଶୁଣାଇବାରେ ଭଲ ଲାଗି ନ ପାରେ । କିନ୍ତୁ ନିଜକୁ ଖୁବ୍ ଭଲ ଲାଗେ । ସେଥିପ୍ରତି ସ୍ନେହ ଥାଏ ଆଉ ସେଗୁଡ଼ିକ ଅତି ଆପଣାର ବୋଲି ମନେ ହୁଏ । ଏ ପ୍ରକାର ମୋହ ଠିକ୍ ନ ହେଲେ ବି ଭଗବାନ୍ ଓ ଭାଗବତର ଚରିତ୍ର ଗୁଡ଼ିକ ପ୍ରତି ଆସକ୍ତ ଜାତ ହେବା ଉତ୍ତମ କଥା । ଅଯଥା ଶଙ୍କୁତା ହେତୁ ହଂସତୀର୍ଥର କୁଡ଼ିଆକୁ ଛାଡ଼ିଥିଲି ବୋଲି ମୋର ମନେ ପଡ଼ୁଛି । କିନ୍ତୁ ଏଠାରେ ତ ସେହିପରି କିଛି ଅବସ୍ଥା ସୃଷ୍ଟି ହୋଇନାହିଁ । ଏ ସ୍ଥାନ ପ୍ରତି ମୋର ଅନୁରାଗ ବଢ଼ୁଛି । ଯେଉଁ ଛୋଟ ଛୋଟ ବୃକ୍ଷ, ଲତା ଲଗାଇ ଥିଲି ସେ ସବୁ ବଡ଼ ହେଲେଣି । ସେଥିରେ ଫୁଲ ଫଳ ଧରିଲାଣି । ସେଥିପାଇଁ ମୋର ଆସକ୍ତ ଜାତ ହୋଇଛି । ମଣିଷମାନଙ୍କ ପ୍ରତି ମଧ୍ୟ ମମତା ଆସିଯାଇଛି । ସେହି ରାଗ ଓ ଦ୍ୱେଷକୁ ଛାଡ଼ିବା ପାଇଁ ମୁଁ ଘର ଛାଡ଼ିଥିଲି । ଭଗବାନଙ୍କ ପ୍ରତି ଅନୁରାଗ ନ ଆସି ବାହ୍ୟ ବସ୍ତୁ ପ୍ରତି ମୋର ଆସକ୍ତ ଜାତ ହୋଇଛି । ଭାଗବତ ଚରିତକୁ ମୂର୍ତ୍ତିମାନ୍ ଦେଖିବାର ବାସନା ମୋତେ ବାରମ୍ବାର କହୁଛି—'ସବୁ କିଛି ଭଗବାନଙ୍କର । ସବୁରେ ଭଗବାନଙ୍କୁ ଦେଖ । ଫୁଲ, ଫଳ ସବୁ ଭଗବାନଙ୍କର ସେବା ପାଇଁ ଉଦ୍ଦିଷ୍ଟ ।' ଏହା ସତ୍ୟ ହେଲେ ମଧ୍ୟ ସେ ଭାବନା ଆସୁ ନାହିଁ । କେବଳ ମନକୁ ଭୁଲାଇବା ପାଇଁ ସବୁଠି ଭଗବାନଙ୍କ ଅସ୍ତିତ୍ୱ ଅଛି ବୋଲି ଭାବି ନେଉଛି ।

ଆଜିକାଲି ଯୁଗ ବଡ଼ ଭୟଙ୍କର ହୋଇଉଠିଛି । ଆଜି ଯାହା ହୋଇ ଥିବ ତାହା ହେଲାବୋଲି ଜାଣିବାକୁ ହେବ । ଆମେ ମୁହଁରେ ଧର୍ମକଥା କହୁ, କିନ୍ତୁ ଧର୍ମରେ ଆମର ବିଶ୍ୱାସ ନାହିଁ । ଆମେ ନିଜକୁ କହୁ ବ୍ରହ୍ମଚାରୀ, କିନ୍ତୁ ଶାସ୍ତ୍ର ଗୁଡ଼ିକରେ ସନ୍ନ୍ୟାସୀ, ବ୍ରହ୍ମଚାରୀଙ୍କ ପାଇଁ ଯେଉଁ ନିୟମ ପାଳନ କରିବାକୁ କୁହାଯାଇଛି ତାର ଏକ ଶତାଂଶ ମଧ୍ୟ ଆମେ ପାଳନ କରୁ ନାହୁଁ । ଯୁବତୀକୁ ସ୍ପର୍ଶ କରିବା ଦୂରରେ ଥାଉ ଦେଖିବା ଉଚିତ ନୁହେଁ ବୋଲି ଶାସ୍ତ୍ର କହୁଥିଲେ ମଧ୍ୟ ଆମେ ତାହା ପାଳୁ ନାହୁଁ । ଯୁଆଡ଼େ ଚାହିଁଲେ ଖାଲି ଦୁରାଚାର, କଦାଚାର, ଦମ୍ଭ, କପଟ, ଅଧର୍ମ ସବୁ ଦୃଷ୍ଟିରେ ପଡ଼ୁଛି । ସେଥିପାଇଁ କାହାକୁ ଦୋଷୀ କରିବାପାଇଁ ଇଚ୍ଛା ହେଲେ ମଧ୍ୟ କାହାକୁ ଦାୟୀ କରିବା ? ଜଣେ ଅଧେ ତ ନୁହେଁ, ଖଜୁରି ଗଛ ମୂଳରୁ ପାହାଚ ପାହାଚ । ଭିଡ଼ରେ ଚାଲିଥିବା ବେଳେ ଆମେ ପଛରେ ଥିବା ଲୋକକୁ କାହିଁକି ଧକ୍କା ଦେଉଛ ବୋଲି କହୁଁ । କିନ୍ତୁ ଆମ ଆଗରେ ଥିବା ଲୋକକୁ ଆମେ ଯେ ଧକ୍କା ଦେଉଛୁ ସେ କଥା ଭୁଲିଯାଉ । ସେହିପରି ଆମେ ନିଜେ ଧର୍ମ ଆଚରଣ କରୁନାହୁଁ । କିନ୍ତୁ କଥା କଥାକେ ଅନ୍ୟକୁ ଧର୍ମ ଉପଦେଶ ଦେଉଛୁ । ତେଣୁ କୁହାଯାଇଛି—ଅହଂନ୍ତୁ ଯୁଗଧର୍ମୋହ୍ୟ ବର୍ତ୍ତିତେ କସ୍ୟ ଦୂଷଣମ୍ ।

ଶେଷରେ ପାଠକମାନଙ୍କୁ ମୁଁ ପ୍ରାର୍ଥନା କରୁଛି, ସବୁ ଘଟଣା ଜୀବର କଲ୍ୟାଣପାଇଁ ଉଦ୍ଦିଷ୍ଟ । ଭଗବାନଙ୍କ ଇଚ୍ଛାରେ ସବୁ ଘଟୁଛି । ସେଥିରେ ଉପଦେଶ ପୂର୍ଣ୍ଣ ହୋଇ ରହିଛି । ସାବଧାନ ହେବାପାଇଁ ସୂଚନା ଦିଆଯାଇଛି । ତେଣୁ ପାଠକ ଏହି ଆଶୀର୍ବାଦ ଦିଅନ୍ତୁ ଯେ, ମୃତ୍ୟୁକୁ ମୋର ଭୟ ନ ହେଉ । ବାହ୍ୟବସ୍ତୁ ପ୍ରତି ମୋର ଅନୁରାଗ ବା ଦ୍ୱେଷ ଜାତ ନ ହେଉ । ଅନୁରାଗ ଯଦି ହେବ ତେବେ ତାହା ଶ୍ରୀ ଶ୍ୟାମସୁନ୍ଦରଙ୍କ ଚରଣାରବିନ୍ଦରେ ହେଉ ଏବଂ ତାଙ୍କର ଚରିତ ପ୍ରତି ଉତ୍ତରୋତ୍ତର ଆସକ୍ତି ବୃଦ୍ଧି ଲାଭ କରୁ । ଶୁଭଂଭୂୟାତ୍ ॥

## ଛପ୍ପୟ

"ହେ ବୃନ୍ଦାବନଚନ୍ଦ୍ର ! ଦୁର୍ବଳ ମେରେ ଚିତ ଆଓ ।
ରାଗ ଦ୍ୱେଷ ମମ ଦ୍ରବ୍ୟ ତାହି ହେ ଚୋର ! ଚୁରାଓ ॥
ଅଚ୍ୟୁତ ! ହୈ ଯହ ଆସ ସ୍ୱାସ ଜବ ତନତୈଁ ନିକସେ ।
ତବ ଚରଣନ ଚିତ ରହେ ନାମ ତବ ମୁଖତେ ନିକସେ ॥
ମୃତ୍ୟୁ ସମୟ ହେ ମନ ହରନ ! ମନମହଁ ତୁମ ହୀ ତୁମ ରହୋ ।
ମେରୀ ହୈ ତୁ ମତ ଡରୈ, ଏକ ବାର ହଁସିକେ କହୋ ॥

# ମହାରାଜ ହରିଶ୍ଚନ୍ଦ୍ରଙ୍କ ଚରିତ

ସତ୍ୟସାରାଂ ଧୃତିଂ ଦୃଷ୍ଟ୍ୱା ସଭାର୍ଯ୍ୟସ୍ୟ ଚ ଭୂପତେଃ ।
ବିଶ୍ୱାମିତ୍ରୋ ଭୃଶଂ ପ୍ରୀତୋ ଦଦାବବିହତାଂ ଗତିମ୍ ॥

(ଶ୍ରୀ ଭାଗ ୯ସ୍କ-୭ଅ-୨୪, ୨୫ଶ୍ଳୋ)

## ଛପ୍ପୟ

ମୁନି ବୋଲନ୍ତେ ମାଗ କହ୍ୟେ ସାଙ୍ଗତା ଘନ ଅବ ଦୀଜୈ ।
ନୃପ ବୋଲେ-ମୁନି ! ଏକ ମାସ ଧୀରଜ ଅରୁ କୀଜୈ ॥
ଐସେ କହି କାଶୀ ଗୟେ କପର୍ଦୀ କୀ ରଜଧାନୀ ।
ଅବଧି ପୂର୍ଣ୍ଣ ଲଖି ପହୁଁଚ ଗୟେ କୌଶିକ ଅଭିମାନୀ ॥
ଦ୍ରବ୍ୟ ଯାଚନା କରି ମୁନି, ନୃପ, ରାନୀ ବକ୍ରୟ କରୀ ।
ସୋହିତ ହିତ ବେଚେ ସ୍ୱୟଂ ଦକେ ଦକ୍ଷିଣା ଦ୍ୱିଜ ଭରୀ ॥

ବିପଦରେ ଧୈର୍ଯ୍ୟର ପରୀକ୍ଷା ହୁଏ, କ୍ରୋଧ ଓ ଅପମାନ କାଳରେ ସହିଷ୍ଣୁତା ଓ ଅଭାବ ସମୟରେ ତ୍ୟାଗର ପରୀକ୍ଷା ହୁଏ । ସାଂସାରିକ ଧନ ସମ୍ପଦ ଆସେ ଓ ଯାଏ । ଏସବୁ ସମ୍ପଦଠାରୁ ଯେ ଧର୍ମକୁ ଅଧିକ ମହତ୍ତ୍ୱ ଦିଏ, ଧର୍ମ ପାଇଁ ଯେ ସବୁକିଛି ତ୍ୟାଗ କରିପାରେ, ସେହି ବ୍ୟକ୍ତି ଏ ସଂସାରରେ ଅକ୍ଷୟ ଯଶର ଅଧିକାରୀ ହୁଏ । କେବଳ ଏହି କ୍ଷଣସ୍ଥାୟୀ ଦେହର ପାଳନ ପୋଷଣ ପାଇଁ ଯେଉଁମାନେ ନାନା ପ୍ରକାର ଅନ୍ୟାୟ ଆଚରଣ କରନ୍ତି ସେମାନଙ୍କ ଜୀବନର କୌଣସି ମୂଲ୍ୟ ନାହିଁ, ପଶୁ, ପକ୍ଷୀ, କୀଟ, ପତଙ୍ଗ ପରି ସେମାନେ ଜନ୍ମ ହୁଅନ୍ତି ଓ ମରନ୍ତି । ସେପରି ଜୀବନର ସାର୍ଥକତା ନାହିଁ । ଧର୍ମର ସୁରକ୍ଷା ପାଇଁ ଯେଉଁ ଦୁଃଖ ସହିବାକୁ ପଡ଼େ ତାହା ଦୁଃଖ ହେଲେବି ସେଥିରୁ ପ୍ରକୃତ ସୁଖ ମିଳେ । ସେ ଯନ୍ତ୍ରଣାରେ ମଧୁରତା ଅଛି ଏବଂ ସର୍ବବିଧ ଅଭାବ ମଧ୍ୟରେ ବି ଆତ୍ମସନ୍ତୋଷ ଅଛି ।

ମହର୍ଷି ସୂତ କହିଲେ—"ମୁନିଗଣ ! ମହାରାଜା ହରିଶ୍ଚନ୍ଦ୍ର ସର୍ବସ୍ୱ ତ୍ୟାଗକରି କାଶୀ ବୁଲିଯିବା ପରେ କଣ ହେଲାବୋଲି ଆପଣମାନେ ଜାଣିବାକୁ ଇଚ୍ଛା କରୁଛନ୍ତି । ସେ କଥା କହୁଛି, ଶୁଣନ୍ତୁ । ମହାରାଜା ହରିଶ୍ଚନ୍ଦ୍ର ପତ୍ନୀ ଶୈବ୍ୟା ଓ ପୁତ୍ର ରୋହିତାଶ୍ୱଙ୍କୁ

ସାଙ୍ଗରେ ନେଇ ନାନା ଦୁଃଖ କଷ୍ଟ ସହି ମାସେ ପରେ ଅଯୋଧ୍ୟାରୁ ଯାଇ ବାରାଣସୀରେ ପହଞ୍ଚିଲେ । ଅଯୋଧ୍ୟାରୁ ଆସିବା ପରେ ଯେ ଏକମାସ କଟିଗଲାଣି ସେକଥା ସେ ଭୁଲିଯାଇଥିଲେ । ମାସକ ପରେ ବିଶ୍ୱାମିତ୍ରଙ୍କୁ ଦାନର ଦକ୍ଷିଣା ଦେବାପାଇଁ ସେ ପ୍ରତିଶ୍ରୁତି ଦେଇ ଆସିଥିଲେ । ମହାରାଜ ହରିଶ୍ଚନ୍ଦ୍ର କାଶୀ ପୁରର ପ୍ରବେଶ ଦ୍ୱାରରେ ପହଞ୍ଚି ଦେଖିଲେ ମହାମୁନି ବିଶ୍ୱାମିତ୍ର ଠିଆ ହୋଇଛନ୍ତି । ରାଜାଙ୍କୁ ଦେଖିବା ମାତ୍ରେ ବିଶ୍ୱାମିତ୍ର ପଚାରିଲେ—'ରାଜନ୍ ! ଆଜି ମାସେ ପୂର୍ଣ୍ଣ ହେଲା । ଆପଣ ପ୍ରତିଜ୍ଞା ଅନୁସାରେ ଦକ୍ଷିଣା ଦିଅନ୍ତୁ ।"

ମହାରାଜ କହିଲେ—"ବ୍ରାହ୍ମଣ ! ଆଜି ଦିନଟି ଶେଷ ହେବା ପାଇଁ ଆହୁରି କିଛି ସମୟ ଅଛି । ସନ୍ଧ୍ୟାପୂର୍ବରୁ ଆପଣଙ୍କୁ ଦକ୍ଷିଣା ଦେଇଦେବାପାଇଁ ମୁଁ ଯତ୍ନ କରୁଛି । ଏହା ଶୁଣି ମୁନି ଚାଲିଗଲେ । ମୁନିଙ୍କୁ ଦକ୍ଷିଣା କିପରି ଦେବେ ସେଇକଥା ମହାରାଜ ଭାବିବାକୁ ଲାଗିଲେ । ରାଜାଙ୍କୁ ଚିନ୍ତିତ ହୋଇ ପଡ଼ିବାର ଦେଖି ପତ୍ନୀ ଶୈବ୍ୟା ପଚାରିଲେ—"ମହାରାଜ ! ଆପଣ କଣ ଚିନ୍ତା କରୁଛନ୍ତି ।"

ମହାରାଜ କହିଲେ—"ପ୍ରିୟେ ! ମୁଁ ଧର୍ମ ପାଶରେ ଆବଦ୍ଧ । ମୋତେ କେହି ବାନ୍ଧି ନାହିଁ । ସତ୍ୟଦ୍ୱାରା ମୁଁ ସ୍ୱତଃ ଆବଦ୍ଧ ହୋଇଛି । ଏବେ ସତ୍ୟରକ୍ଷା କିପରି କରିବି ତାହାହିଁ ଭାବୁଛି ।"

ମହାରାଣୀ କହିଲେ—"ପ୍ରଭୋ ! ପ୍ରାଣ ବିନିମୟରେ ବି ସତ୍ୟରକ୍ଷା କରିବା ଆବଶ୍ୟକ । ବ୍ରାହ୍ମଣଙ୍କୁ ପ୍ରତିଶ୍ରୁତି ଦେଇ ତାହା ପାଳନ କରିବା ବାଞ୍ଛନୀୟ । ସାମର୍ଥ୍ୟ ଥିବାଯାଏ ପ୍ରତିଜ୍ଞା ରକ୍ଷା କରିବା ଉଚିତ ।"

ମହାରାଜ କହିଲେ—"ପ୍ରିୟେ ! ତାହାହିଁ ମୁଁ ଭାବୁଛି, କିପରି ସତ୍ୟରକ୍ଷା କରିବି ।"

ମହାରାଣୀ କହିଲେ—"ପ୍ରାଣନାଥ ! ମୁଁ ଆପଣଙ୍କର ଦାସୀ, ଆଦେଶ ପାଳନ କାରିଣୀ । ମୁଁ ଆପଣଙ୍କର ଅଧୀନା । ଆପଣ ମୋତେ ବିକିଦେଇ ମୁନିଙ୍କୁ ଦକ୍ଷିଣା ଦିଅନ୍ତୁ ।"

ଏହା ଶୁଣିବା ମାତ୍ରେ ମହାରାଜା ମୂର୍ଚ୍ଛିତ ହୋଇ ତଳେ ପଡ଼ିଗଲେ । କିଛି ସମୟ ପରେ ମହାରାଜ ଆର୍ତ୍ତସ୍ୱରରେ କହିଲେ—"ପ୍ରିୟେ ! ତୁମେ ଆଉ ସେପରି କଥା କୁହ ନାହିଁ । ଅଶ୍ୱମେଧ ଯଜ୍ଞରେ ତୁମର ଯେଉଁ କେଶରାଶିକୁ ବୈଦିକ ମନ୍ତ୍ର ପୂତ ଦିବ୍ୟୌଷଧି ଯୁକ୍ତ ଜଳଦ୍ୱାରା ମୁଁ ଧୋଇ ଦେଇଥିଲି ମୋ' ଆଖିଆଗରେ ତାହାକୁ ଅନ୍ୟ ଜଣେ ସ୍ପର୍ଶ କରିବ, ତାହା ମୁଁ ସହିବ କିପରି ?

ମହାରାଣୀ କହିଲେ—"ଧର୍ମଜ୍ଞ ! ଧର୍ମ ଆଗରେ ଧନ, ଧାନ୍ୟ, ଆତ୍ମୀୟ ସ୍ୱଜନ, ବନ୍ଧୁ ବାନ୍ଧବ, ସ୍ତ୍ରୀ, ପୁତ୍ର ଏସବୁର ଜୀବନର ମଧ୍ୟ କୌଣସି ମହତ୍ତ୍ୱ ନାହିଁ । ମୋର ପୁଅଟିଏ ହୋଇଛି । ଧର୍ମତଃ ଆପଣ ପିତୃଋଣ ପରିଶୋଧ କରିଛନ୍ତି । ତେଣୁ କିଛି ଅର୍ଥ ବିନିମୟରେ ଆପଣ ମୋତେ ଦାସୀ ରୂପେ ବିକି କରିଦିଅନ୍ତୁ । ଧର୍ମରକ୍ଷା ପାଇଁ ସବୁକିଛି କରାଯାଇପାରେ ।"

ମହାରାଣୀ ଶୈବ୍ୟାଙ୍କ କଥା ଶୁଣି ମହାରାଜ କାନ୍ଦି ପକାଇଲେ । ମହାରାଜ କାନ୍ଦି କାନ୍ଦି କହିଲେ—"ଯାହାର ଦାସୀମାନେ ସୁବର୍ଣ୍ଣ କୁଣ୍ଡଳ ପିନ୍ଧି ଆଦେଶ ଦିଅନ୍ତି, ଯେ ନିଜ ହାତରେ କିଛି କରନ୍ତି ନାହିଁ ସେହି ମହାରାଣୀ ଶୈବ୍ୟା ଦାସୀ ହୋଇ ସାଧାରଣଙ୍କ ସେବା କିପରି କରିପାରିବ ? ହାୟ, ଯେ କେବେହେଲେ ଦୁଃଖ କଣ ଜାଣେ ନାହିଁ ସେହି ରାଜରାଣୀ ଦାସୀ ହୋଇ କିପରି ସବୁ ଦୁଃଖ ସହିବ ?" ଏହା କହୁ କହୁ ମହାରାଜ ମୂର୍ଚ୍ଛିତ ହୋଇ ତଳେ ଲୋଟିପଡ଼ିଲେ । ମହାରାଣୀ ନିଜ ବସ୍ତ୍ରାଞ୍ଚଳରେ ତାଙ୍କୁ ବିଞ୍ଚିବାକୁ ଲାଗିଲେ । କିନ୍ତୁ ମହାରାଜଙ୍କର ଚେତନା ଫେରିଲା ନାହିଁ । ଏହିସମୟରେ ମହାମୁନି ବିଶ୍ୱାମିତ୍ର ଉପସ୍ଥିତ ହୋଇ ରାଜାଙ୍କୁ ମୂର୍ଚ୍ଛିତ ହୋଇ ପଡ଼ିଥିବାର ଦେଖି ଶୀତଳ ଜଳ ତାଙ୍କ ମୁହଁରେ ଛାଟିଲେ । ରାଜା ସଚେତହେବା-ପରେ ବିଶ୍ୱାମିତ୍ର କହିଲେ—"ଦେଖନ୍ତୁ ମହାରାଜ ! ଆପଣ ସତ୍ୟବାଦୀ, ଧର୍ମାତ୍ମା । ମୋତେ ଦକ୍ଷିଣା ଦେବାପାଇଁ ଆପଣ ପ୍ରତିଜ୍ଞା କରିଛନ୍ତି । ଆଜି ସୂର୍ଯ୍ୟାସ୍ତ ହେବା ପୂର୍ବରୁ ଆପଣଙ୍କୁ ମୋର ଦକ୍ଷିଣା ଦେଇଦେବାକୁ ପଡ଼ିବ । ଆଜି ଦକ୍ଷିଣା ଦେଇ ନ ପାରିଲେ ଆପଣଙ୍କୁ ମୁଁ ଅଭିଶାପ ଦେବି ।" ଏହା ଏହା କହି ବିଶ୍ୱାମିତ୍ର ସେଠାରୁ ଚାଲିଗଲେ ।

ଏବେ ରାଜାଙ୍କ ଦୁଃଖର ସୀମା ରହିଲାନାହିଁ । ତାଙ୍କୁ ଚାରିଆଡ଼ ଅନ୍ଧାର ଦେଖାଗଲା । ମହାରାଣୀ କହିଲେ—"ପ୍ରଭୋ ! ଆଉ ବିଳମ୍ବ ନ କରି ମୋର ପ୍ରାର୍ଥନା ଗ୍ରହଣ କରନ୍ତୁ । ଏଥିରେ ଲଜ୍ଜା କରିବାର କିଛି ନାହିଁ ।" ରାଜା ନିରୂପାୟ ହୋଇ କାଶୀର ଏକ ଛକଜାଗାରେ ଆସି ପହଞ୍ଚିଲେ ଏବଂ ଆଖିରୁ ଲୁହ ଗଡ଼ାଇ ଗଦ୍‌ଗଦ କଣ୍ଠରେ କହିଲେ—"ହେ ନାଗରିକ ଗଣ ! ଯଦି ଆପଣମାନଙ୍କ ମଧ୍ୟରୁ କାହାର ଘରେ ବାସନ ମାଜିବା, ଘର ସଫା କରିବାପାଇଁ ଦାସୀ ଦରକାର ତେବେ ମୋତେ ଉପଯୁକ୍ତ ମୂଲ୍ୟ ଦେଇ ମୋର ଏହି ପତ୍ନୀକୁ ନିଅନ୍ତୁ । ଆଜି ଏହି ସୁକୁମାରୀ ପୁତ୍ରବତୀ ସତୀକୁ ମୁଁ ବିକିବା ପାଇଁ ଆଣିଛି ।"

ରାଜାଙ୍କର ଦୈନ୍ୟ ବଚନ ଶୁଣି ଅନେକ ପୁରୁଷ ସେଠାରେ ଆସି ଠୁଳ ହେଲେ । କେହି ଜଣେ ପଚାରିଲେ—"ଭାଇ, ତୁମେ କିଏ ? କୁଳୀନବଂଶୀୟ

ଲୋକପରି ଦେଖାଯାଉଛ । ତୁମ ପତ୍ନୀ ମଧ୍ୟ ସୁନ୍ଦରୀ, ଉଚ୍ଚକୁଳ ସମ୍ପନ୍ନା । ତୁମେ ପତ୍ନୀକୁ କାହିଁକି ବିକିବାକୁ ଆଣିଛ ?''

ରାଜା କାନ୍ଦି କାନ୍ଦି କହିଲେ—''ତୁମେମାନେ ମୋର ପରିଚୟ ଚାହୁଁଛ । ତେବେ ଏତିକି ଜାଣ ମୁଁ ଜଣେ କ୍ରୂର ପୁରୁଷ । ମୁଁ ମଣିଷ ପରି ଦେଖାଯାଉଥିଲେ ମଧ୍ୟ ମୁଁ ଜଣେ କ୍ରୂରକର୍ମା ପଶୁ । ତା' ହୋଇ ନଥିଲେ ନିଜର ପ୍ରାଣପ୍ରିୟା ପତ୍ନୀକୁ କେହି ସଜ୍ଜନ ପୁରୁଷ କେବେ କଣ ବିକନ୍ତି ?''

ମହାରାଜ ଏହିପରି କହୁଥିବାବେଳେ ଜଣେ ପାଗଳା ବ୍ରାହ୍ମଣ ସେଠାରେ ଆସି ପହଞ୍ଚିଲା । ତାର ଚିପଣ୍ଡ ଉଲଗ୍ନ, ଉଷ୍କୁଖୁସ୍କୁ ଓ ଦଣ୍ଡକୁ ଦେଖି ସମସ୍ତେ ଆଡ଼େଇ-ଗଲେ । ସେ ପଚାରିଲେ—''କଥା କଣ ?''

ଲୋକମାନଙ୍କ ମଧ୍ୟରୁ ଜଣେ କହିଲେ—''ଏଇ ଭଦ୍ରଲୋକ ନିଜର ସୁନ୍ଦରୀ ସୁକୁମାରୀ ପତ୍ନୀକୁ ଦାସୀରୂପେ ବିକିବାପାଇଁ ଚାହୁଁଛନ୍ତି ।''

ବ୍ରାହ୍ମଣ ପଚାରିଲେ—''ଭାଇ, ଏ ଦାସୀକୁ କେତେ ଦାମ୍‌ରେ ବିକିବ ? ଏହା ଶୁଣିବାମାତ୍ରେ ରାଜା ଧୈର୍ଯ୍ୟର ସହିତ ନିଜର ମନୋଭାବକୁ ସଂଯତ ରଖି କହିଲେ—ଆପଣ ଯାହା ଦେବେ ।''

ବ୍ରାହ୍ମଣ କହିଲେ—''ମୋର ପତ୍ନୀ ଅତି ସୁକୁମାରୀ । ସେ ଘରର କାମ-ଦାମକୁ ଆଦୌ ପାରୁନାହିଁ । ମୁଁ ଅନେକ ଦିନ ହେଲା ଦାସୀଟିଏ ଖୋଜୁଥିଲି । କିନ୍ତୁ ମୋର ଇଚ୍ଛା ଅନୁରୂପ ଦାସୀଟେ ପାଇ ନ ଥିଲି । ହଉ, ଠିକ୍ ଅଛି । ସେ ମୋ' ଘରେ କାମ କରିବ । ଏହାକୁ ନେଇ ମୁଁ ଯେତିକି ଦେଉଛି ନିଅ ।''

ଏହା କହି ବ୍ରାହ୍ମଣ କିଛି ସ୍ୱର୍ଣ୍ଣମୁଦ୍ରା ରାଜାଙ୍କୁ ଦେଇ ରାଣୀଙ୍କ ହାତ ଧରି ବାହାରିଲେ । ସେ ସମୟର ଦୃଶ୍ୟ ଥିଲା ଅତି କାରୁଣ୍ୟ । ବାଳକ ରୋହିତ ଯେତେ-ବେଳେ ଦେଖିଲେ ଜଣେ ନିଷ୍ଠୁର ପୁରୁଷ ମା'ର ହାତ ଧରି ଟାଣି ଟାଣି ନେଉଛି ସେତେବେଳେ ସେ ମା'ର ଲୁଗାକାନିକୁ ଜୋରକରି ଟାଣି ଧରିଲେ ଓ କାନ୍ଦିବାକୁ ଲାଗିଲେ । ରୋହିତର ସେହା ଗ୍ରସ୍ତ କାନ୍ଦିବାର ଦେଖି ରାଣୀଙ୍କ ଧୈର୍ଯ୍ୟ ଭାଙ୍ଗି ପଡ଼ିଲା । ସେ କାନ୍ଦି କାନ୍ଦି କହିଲେ—''ପୁଅ, ତୁ ଆଉ ମୋତେ ଛୁଁ ନା । ମୁଁ ଏବେ ଜଣେ ଦାସୀ । ତୁ ରାଜବଂଶୋଦ୍ଭବ । ଆଜି ତୁ ମନଭରି ମା'କୁ ତୋର ଦେଖିନେ । ତୋ ମା' ଏବେ ଦାସୀହୋଇ ସାରିଛି ।''

ବ୍ରାହ୍ମଣ ଯେତେବେଳେ ଦେଖିଲେ କରୁଣ ଦୃଶ୍ୟ ଅଧିକ କରୁଣ ହୋଇ-ଉଠୁଛି ସେତେବେଳେ ରାଗିଯାଇ ରାଣୀଙ୍କୁ କହିଲେ—''ତୁ ମୋ' ସହିତ ଆସିବୁ ନା

ମାୟାମମତା ଦେଖେଇ ହେବୁ ?” ଏହା କହି ସେ ରାଣୀଙ୍କୁ ଏକ ଧକ୍କା ମାଇଲେ । ତଥାପି ରୋହିତ ମା'ର କାନ୍ଥ ଛାଡ଼ିଲା ନାହିଁ । ରୋହିତକୁ ମା'ର ଲୁଗାକାନି ଧରି ପଛେ ପଛେ ଆସିବାର ଦେଖି ବ୍ରାହ୍ମଣ ଜବରଦସ୍ତ ପିଲାଟିକୁ ଅଲଗା କରିବା ପାଇଁ ଚେଷ୍ଟାକଲେ । କିନ୍ତୁ ରୋହିତ ଆହୁରି ଉଚ୍ଚ ସ୍ୱରରେ କାନ୍ଦିବାକୁ ଲାଗିଲା । ରାଣୀ କରୁଣ ସ୍ୱରରେ କାନ୍ଦି କାନ୍ଦି ବ୍ରାହ୍ମଣଙ୍କୁ ସମ୍ବୋଧନ କରି କହିଲେ—“ବାପା ! ଦୟାକରି ଏ ପିଲାଟିକୁ ମଧ୍ୟ କିଣିନିଅନ୍ତୁ । ମୋତେ ଛାଡ଼ି ସେ ରହିପାରିବ ନାହିଁ କି ତାକୁ ସାଙ୍ଗରେ ନ ନେଇ ମୁଁ ଶାନ୍ତିରେ ନିଃଶ୍ୱାସ ନେଇପାରିବି ନାହିଁ । ଯଦି ପିଲାଟିକୁ ନେବେ ତେବେ ଦୁହେଁ ମିଶି ଆପଣଙ୍କ ଘରକାମ କରିବୁ ।”

ବ୍ରାହ୍ମଣଙ୍କୁ କଥାଟା ପସନ୍ଦ ଲାଗିଲା । ସେ କେତୋଟି ସୁନାମୋହର ରାଜାଙ୍କ ହାତକୁ ବଢ଼ାଇ ଦେଇ କହିଲେ—“ହଉ, ନିଅ ଏତିକ । ପିଲାଟିକୁ ମୁଁ ନେଇ-ଯାଉଛି ।” ଏହା କହି ବ୍ରାହ୍ମଣ ମା ଓ ପୁଅଙ୍କୁ ନେଇ ଚାଲିଗଲେ । ଯିବାବେଳେ ରାଣୀ ଆଖିରୁ ଅଦୃଶ୍ୟ ହେବା ପର୍ଯ୍ୟନ୍ତ ବାରମ୍ବାର ପଛକୁ ଫେରି ଚାହୁଁଥାନ୍ତି । ରାଜା ହରିଶ୍ଚନ୍ଦ୍ର ଅପଲକ ନୟନରେ ଚାହିଁ ରହିଥାନ୍ତି । ତାଙ୍କ ଦୁଇ ଆଖିରୁ ଲୁହଧାର ବହି ଯାଉଥାଏ । ଅନ୍ୟାୟ ଆଚରଣ ପାଇଁ ପତ୍ନୀ ଓ ପୁତ୍ରଙ୍କୁ ଦୁଃଖ ଭୋଗ କରିବାକୁ ପଡ଼ିଲା ବୋଲି ଭାବି ସେ ନିଜକୁ ଧିକ୍କାର କରୁଥାନ୍ତି ।

ରାଣୀଙ୍କ ଦୃଷ୍ଟି ରାଜାଙ୍କ ଉପରେ ଲାଗି ରହିଥାଏ । ରୋହିତ ମା'ର ଲୁଗା-କାନିକୁ ଜୋରକରି ଧରିଥାଏ । ବ୍ରାହ୍ମଣ ସେ ଦୁହିଁଙ୍କୁ ଶୀଘ୍ର ଯିବାପାଇଁ ବାଧ୍ୟ କରୁଥାଏ । କିନ୍ତୁ ରାଣୀଙ୍କ ପାଦଦୁଇଟି ବାରମ୍ବାର ଛନ୍ଦି ପଡ଼ୁଥାଏ । କିଛିସମୟ ମଧ୍ୟରେ ରାଜା ଓ ରାଣୀ ପରସ୍ପରର ଦୃଷ୍ଟିରୁ ଅନ୍ତର୍ହିତ ହୋଇଗଲେ । ବ୍ରାହ୍ମଣ ରାଣୀଙ୍କୁ ନେଇ ଘରେ ପହଞ୍ଚିଲେ ଆଉ ସାନ୍ତ୍ୱନା ଦେବା ଛଳରେ କହିଲେ—“ଝିଅ ! ତୁ ଏ ଘରକୁ ନିଜର ଘର ବୋଲି ଭାବି ସୁଖରେ ରହ ।” ରାଣୀ ବ୍ରାହ୍ମଣଙ୍କ ଘରେ ରହି ଦିନ କାଟିବାକୁ ଲାଗିଲେ ।

ପୁତ୍ର ଓ ପତ୍ନୀଙ୍କୁ ବିକ୍ରୀ କରିବା ପରେ ମହାରାଜ ହରିଶ୍ଚନ୍ଦ୍ର ବ୍ୟାକୁଳ ହୋଇ ପଡ଼ିଥିବାବେଳେ ବିଶ୍ୱାମିତ୍ର ଆସି ପହଞ୍ଚିଲେ ଓ କହିଲେ—“ରାଜନ୍ ! ଏବେ ସୂର୍ଯ୍ୟାସ୍ତ ହେବାପାଇଁ ଆଉ ଅଳ୍ପ ସମୟ ରହିଲା । ମୋର ଦକ୍ଷିଣା ବିଷୟରେ କିଛି ବ୍ୟବସ୍ଥା ହେଲା ତ ?”

ରାଜା କହିଲେ—“ବ୍ରହ୍ମନ୍ ! ପତ୍ନୀ ଓ ପୁତ୍ରଙ୍କୁ ବିକ୍ରୀକରି କିଛି ସ୍ୱର୍ଣ୍ଣମୁଦ୍ରା ସଂଗ୍ରହ କରିଛି । ଆପଣ ସେତିକି ନେଇ ସନ୍ତୁଷ୍ଟ ହୁଅନ୍ତୁ । ଏହା କହି ରାଜା ବଲ୍କଳ

ବସ୍ତ୍ରରେ ବନ୍ଧାଥିବା ମୁଦ୍ରା ମୁନିଙ୍କ ହାତକୁ ବଢ଼ାଇଦେଲେ । ମୁନି ସ୍ୱର୍ଣ୍ଣମୁଦ୍ରା ଗଣିବାକୁ ଲାଗିଲେ । ଗଣିସାରିବା ପରେ ମୁନି ପଚାରିଲେ—"ମହାରାଜ ! ଏତେବଡ଼ ଦାନ ଦେଇସାରି ଏଇ ସାମାନ୍ୟ ଦକ୍ଷିଣା ଦେବା ଉଚିତ ହେଉଛି କି ?"

ଅତୀବ ନମ୍ର ସ୍ୱରରେ ମହାରାଜ କହିଲେ—"ମୁଁ ନିରୁପାୟ ବ୍ରହ୍ମନ୍ ! ମୋ' ପାଖରେ ଏତିକି ବ୍ୟତୀତ ଆଉ କିଛି ନାହିଁ ।"

ମୁନି କହିଲେ—"ମହାରାଜ ! ଏତିକି ମାତ୍ର ଦକ୍ଷିଣା ନେଇ ମୁଁ ସନ୍ତୁଷ୍ଟ ହୋଇପାରୁ ନାହିଁ ।

ଏହାଶୁଣି ମହାରାଜ ହରିଶ୍ଚନ୍ଦ୍ର କହିଲେ—"ଭଗବନ୍ ! ମୋର ସ୍ତ୍ରୀ ଓ ମୋର ସ୍ନେହର ପୁତ୍ର ବିକ୍ରୀ ହୋଇସାରିଛନ୍ତି । ଆଉ ବାକି ଅଛି କେବଳ ମୋର ଦେହ । ଆପଣ ଏଇ ଦେହକୁ ବିକି ଯାହା ମିଳିବ ସେତିକରେ ସନ୍ତୁଷ୍ଟ ହୁଅନ୍ତୁ ।"

ମୁନି କହିଲେ—"ଯାହାହେଉ ପଛକେ ଦକ୍ଷିଣା ସ୍ୱରୂପ ମୋତେ ଯଥେଷ୍ଟ ମୁଦ୍ରା ମିଳିବା ଆବଶ୍ୟକ । ମୁଁ ଯାଉଛି, ଠିକ୍ ସୂର୍ଯ୍ୟାସ୍ତ ହେବାବେଳକୁ ଆସି ପହଞ୍ଚିବି । ଏଥର ମୁଁ ଶେଷଥର ପାଇଁ ଆସିବି । ସେତେବେଳେ ଯଥେଷ୍ଟ ଦକ୍ଷିଣା ଦେଇଦେଲ ତ ଭଲ, ନୋହିଲେ ମୁଁ ତୁମକୁ ଅଭିଶାପ ଦେଇ ଭସ୍ମ କରିବି ।"

ମୁନିଙ୍କ କଠୋର ବାକ୍ୟ ଶୁଣି ରାଜା ମୂର୍ଚ୍ଛିତ ହୋଇପଡ଼ିଲେ । ଧର୍ମକୁ ସ୍ମରଣ କରି ସେ ନିଜକୁ ସମ୍ଭାଳିନେଲେ । ଏହି ସମୟରେ ଧର୍ମଚଣ୍ଡାଳ ସେଠାରେ ଆସି ପହଞ୍ଚିଲା । ମହାମୁନି ଦୁର୍ବାସାଙ୍କ ଅଭିଶାପରେ ଧର୍ମକୁ ତିନୋଟି ସ୍ଥାନରେ ଜନ୍ମ ନେବାକୁ ପଡ଼ିଥିଲା । ଥରେ ଯୁଧିଷ୍ଠିର ରୂପରେ, ଦ୍ୱିତୀୟବାର ଦାସୀପୁତ୍ର ବିଦୁର ରୂପରେ ଏବଂ ତୃତୀୟଥର କାଶୀର ପ୍ରବୀର ଚଣ୍ଡାଳ ରୂପରେ ଧର୍ମରାଜ ଜନ୍ମ ହୋଇଥିଲେ ।

ମହାରାଜ ହରିଶ୍ଚନ୍ଦ୍ର ନିଜକୁ ବିକ୍ରୀ କରିବା ପାଇଁ ଡାକ ଛାଡ଼ୁଥିବାବେଳେ ପ୍ରବୀର ଚଣ୍ଡାଳ ପହଞ୍ଚିଗଲା । ତାର ଦେହ କୋଚଟ କଳା, ଠିଆ ଠିଆ ଟାଉଁସା ତମ୍ବାଳିଆ ବାଳ, ଭୟଙ୍କର ମୁହଁ ଓ ମୁଣ୍ଡଟା ଖୁବ୍ ଗ୍ରେଟ ଆକାରର ଥିଲା । ଚେପ୍ଟା ନାକ, ହଳଦିଆ ଗୋଲ ଗୋଲ ଆଖି, ଓସାରିଆ ଗାଲ, ଲମ୍ବା ପେଟ, ଗ୍ରେଟ ପାଦ, ମଇଁଷି ପରି ମୋଟା ଚମଡ଼ାରେ ସେ ଖୁବ୍ ଭୟଙ୍କର ଦେଖା ଯାଉଥିଲା । ତା' ଝୁଲାରେ ଗୁଡ଼ାଏ ମଲା ଚଢ଼େଇ ଥିଲେ । ମଲା ମଣିଷର ଲୁଗା ଓ ଶବକୁ ଦିଆଯାଇଥିବା ଫୁଲମାଳ ସେ ପିନ୍ଧିଥିଲା । ନୃମୁଣ୍ଡମାଳା ପିନ୍ଧି ଓ ହାତରେ ଏକ ନରକପାଳ ଧରି ଦଳେ କୁକୁରଙ୍କ ସହିତ ନିର୍ଭୟରେ ସେ ଆସୁଥିଲା । ତା' ଦେହରୁ ଭୀଷଣ ଦୁର୍ଗନ୍ଧ ବାହାରୁଥିଲା । ତାହାର ଆକୃତି, ପ୍ରକୃତି ସବୁକିଛି ଭୟଙ୍କର ଓ କ୍ରୂର ମନେ

ହେଉଥିଲା । ଅସି ପହଞ୍ଚିବାମାତ୍ରେ ସେ କହିଲା—"ମୋର ଏକ ଦାସ ଦରକାର, ତୁ ଯଦି ମୋର ଦାସ ହେବୁ ତେବେ ଯାହା ଚାହିଁବୁ ମୁଁ ତାହା ଦେବି । ମୋର ଟଙ୍କା ଅଭାବ ନାହିଁ । ମହାଶ୍ମଶାନର ମୁଁ ପ୍ରଧାନ ଚଣ୍ଡାଳ । ବଡ଼ ବଡ଼ ରାଜା ମହାରାଜାମାନେ ସେଠାକୁ ସତ୍କାର ପାଇଁ ଆସନ୍ତି । ତାଙ୍କର ସମସ୍ତ ବସ୍ତ୍ର, ଭୂଷଣ ମୁଁ ନେଇଥାଏ । ତେଣୁ ତୁ ଯାହା ମାଗିବୁ ମୁଁ ଦେବି ।"

ରାଜା ପଚାରିଲେ--"ତୁମେ କିଏ ? ତୁମେ ମୋ' ଦ୍ୱାରା କି କି କାମ କରାଇବ ?"

ଚଣ୍ଡାଳ ଉତ୍ତର ଦେଲା—"ମୁଁ ପରା କହିଲି ମୋ' ନାମ ପ୍ରବୀର ଚଣ୍ଡାଳ । ତୋତେ ଶ୍ମଶାନରେ ରହିବାକୁ ପଡ଼ିବ । ଯେତେ ମୃତ ପୁରୁଷ ଆସିବେ ତୁ ସେମାନଙ୍କର ବସ୍ତ୍ର ନେବୁ ।"

ରାଜା କହିଲେ—"ଭାଇ, ମୃତବ୍ୟକ୍ତିର ସମ୍ପଦରେ ଜୀବିକା ନିର୍ବାହ କରିବା ଅତି ନିନ୍ଦନୀୟ କାମ । ଶବ ହାତରୁ ଦାନ ନେଉଥିବା ବ୍ରାହ୍ମଣ ମଧ୍ୟ ପତିତ ଓ ଅସ୍ପୃଶ୍ୟ ହୋଇଥାଏ । ପୁଣି ଦୁଇଗୋଡର ପାଉଁଶରୁ ଯେଉଁ ଚଣ୍ଡାଳ ଧନ ସଂଗ୍ରହ କରେ, ଶବ ଉପରେ ଥିବା ଲୁଗାକୁ କାଢ଼ିନିଏ ତା'ଠାରୁ ବଳି ନୀଚ ଆଉ କିଏ ଅଛି ?"

ଚଣ୍ଡାଳ କହିଲା—"ଭାଇ, ତୁମର ଯାହା ଇଚ୍ଛା । ଟଙ୍କା ଦେବାରେ ମୋର ଆପତ୍ତି ନାହିଁ । ତୁ ଯାହା ଚାହିଁବୁ ମୁଁ ତ ଦେବା ପାଇଁ ପ୍ରସ୍ତୁତ ଅଛି । ଠିକ୍ ଏହି ସମୟରେ ଲାଲ୍ ଲାଲ୍ ଆଖି କରି ମହାମୁନି ବିଶ୍ୱାମିତ୍ର ଆସି ପହଞ୍ଚିଗଲେ । ସେ ପହଞ୍ଚିବା ମାତ୍ରେ ପଚାରିଲେ—"ଏଠାରେ କି କଥାବାର୍ତ୍ତା ଚାଲିଛି ?"

ରାଜା କହିଲେ—"ବ୍ରହ୍ମନ୍ ! ଆପଣଙ୍କ ଦକ୍ଷିଣା ପୂରାହୋଇ ନ ଥିବାରୁ ମୁଁ ନିଜକୁ ବିକିବା ପାଇଁ ଇଚ୍ଛା କରୁଛି । ଏ ଚଣ୍ଡାଳ କହୁଛି—ତୁ ମୋର ଦାସ ହୋଇଯା ।"

ମୁନି କହିଲେ—"ତୁମେ ତ ନିଜକୁ ବିକିବା ପାଇଁ ଚାହୁଁଛ । ସେ ଯେତେବେଳେ ଆବଶ୍ୟକ ପରିମାଣ ମୁଦ୍ରା ଦେବାପାଇଁ ଚାହୁଁଛି ସେତେବେଳେ ତୁମେ ଆପତ୍ତି କରୁଛ କାହିଁକି ?"

ରାଜା କହିଲେ—"ଭଗବନ୍ ! ଶବର ଲୁଗା ବିକି ଜୀବିକା ଅର୍ଜନ କରିବା ଅତି ନିନ୍ଦନୀୟ କର୍ମ । ଚଣ୍ଡାଳ କାମ ଆହୁରି ନିନ୍ଦନୀୟ । ଆପଣ ମୋତେ ଚଣ୍ଡାଳକୁ ନ ବିକି ଅନ୍ୟ କାହାରି ପାଖରେ ବିକ୍ରୀ କରନ୍ତୁ । ନୋହିଲେ ବାକି ପ୍ରାପ୍ୟ ପାଇଁ

ଆପଣ ମୋତେ ନିଜର ଦାସରୂପେ ଗ୍ରହଣ କରନ୍ତୁ । ମୁଁ ସାରା ଜୀବନ ଆପଣଙ୍କର ସେବା କରିବି ।"

ମୁନି କହିଲେ—"ମୋ' ପାଖରେ ଅନେକ ସେବକ ଅଛନ୍ତି । ମୋର ଆଉ ସେବକ ଦରକାର ନାହିଁ । ମୋର ଯଥେଷ୍ଟ ମୁଦ୍ରା ଆବଶ୍ୟକ ।"

ଚଣ୍ଡାଳ କହିଲା—"ମୁଁ ସେଇ କଥା କହୁଛି । ଯେତେ ମୁଦ୍ରା ଚାହିଁବେ ମୁଁ ସେତେ ମୁଦ୍ରା ଅକାତରରେ ଦେବି ।"

ମୁନି କହିଲେ—"ତେବେ ଆଉ କଣ ଭାବିବା ଆବଶ୍ୟକ । ଯାଅ, ମୁଁ ତୁମକୁ ଏଇ ଚଣ୍ଡାଳକୁ ବିକିଦେଲି । ବର୍ତ୍ତମାନ ଲକ୍ଷେ ସ୍ୱର୍ଣ୍ଣମୁଦ୍ରା ତୁମେ ମୋତେ ଦିଅ ।"

ଚଣ୍ଡାଳ ମୁନିଙ୍କ କଥା ଅନୁସାରେ ଲକ୍ଷେ ମୁଦ୍ରା ଦେଇ ଦେଲା । ରାଜା ଧର୍ମ ବନ୍ଧନରେ ପଡ଼ି ନିରୁପାୟ ହୋଇ ଚାହିଁଥାନ୍ତି । ପଦଟିଏ ବି ସେ କହି ପାରିଲେ ନାହିଁ । ଚଣ୍ଡାଳ ରାଜାଙ୍କୁ ବାନ୍ଧି ନିଜ ଘର ଆଡ଼କୁ ଗଲା । ରାଜା ଗୋଟାଏ ପଶୁ ପରି ମୁହଁ ତଳକୁ କରି ଚଣ୍ଡାଳ ପଛେ ପଛେ ଗଲେ । ସମସ୍ତ ପ୍ରକାର ଅତ୍ୟାଚାର ସହି ମଧ୍ୟ ରାଜା ସତ୍ୟ ଧର୍ମକୁ ଛାଡ଼ି ପାରିଲେ ନାହିଁ ।

କାଳର ଗତି କୁଟିଳ । କାଲି ଯେ ପୃଥିବୀର ରାଜା ଥିଲେ, ଯାହାର ଆଗରେ ଓ ପଛରେ ହଜାର ହଜାର ସେବକ ଓ ସୈନିକ ଚାଲୁଥିଲେ ଆଜି ସେ ଚଣ୍ଡାଳର ଘରକୋଣରେ ବସି କାନ୍ଦୁଛନ୍ତି । କେହି ଥରେ ହେଲେ ତାଙ୍କ ଆଡ଼କୁ ଚାହୁଁ ନାହାନ୍ତି । ରାଜ୍ୟ ଚାଲିଗଲା ସେଥିପାଇଁ ଦୁଃଖ ନାହିଁ, ଧନ ସମ୍ପଦ ନଷ୍ଟ ହୋଇଗଲା ସେଥିପାଇଁ ବି ଦୁଃଖ ନାହିଁ ଏପରିକି ଚଣ୍ଡାଳର ଦାସ ହୋଇ ମଧ୍ୟ ମହାରାଜ ହରିଶ୍ଚନ୍ଦ୍ର କୌଣସି ପ୍ରକାର କଷ୍ଟ ଅନୁଭବ କରୁ ନ ଥିଲେ । କିନ୍ତୁ ପ୍ରାଣପ୍ରିୟା ପତ୍ନୀ ଓ କୁସୁମ ସୁକୁମାର ରୋହିତର ଚିନ୍ତାରେ ସେ ବ୍ୟାକୁଳ ହୋଇ ପଡ଼ୁଥିଲେ । ହାୟ, ସେମାନେ କି ଦୁର୍ଦ୍ଦଶା ଭୋଗ କରୁଥିବେ । ସର୍ବଦା ସୁଖରେ ପାଳିତା ଶୈବ୍ୟା କିପରି ସେବିକା କାର୍ଯ୍ୟ ନିର୍ବାହ କରୁଥିବ ? ପୁତ୍ର ରୋହିତ କିପରି ଜୀବନ କଟାଉଥିବ ? ସେମାନେ ଏପର୍ଯ୍ୟନ୍ତ ଜୀବନରେ ଅଛନ୍ତି କି ନାହିଁ ? ମୋ' ଭାଗ୍ୟର ଏ ବିଚିତ୍ର ପରିଣତି କାହିଁକି ଘଟିଲା ? ରାଜ୍ୟଚ୍ୟୁତ ହେଲି, ପ୍ରଜାମାନଙ୍କଠାରୁ ଦୂରରେ ରହିଲି, ପତ୍ନୀ ଓ ପୁତ୍ରଙ୍କୁ ନିଜେ ବିକିଲି ଓ ନିଜେ ଭ୍ରଷ୍ଟ ହୋଇ ଚଣ୍ଡାଳବୃତ୍ତି ଅବଲମ୍ବନ କଲି । ଆଜି ମୋତେ ପଚାରିବା ପାଇଁ ଆଉ କେହି ନାହିଁ । ମହାରାଜ ଏହିପରି ଚିନ୍ତାରେ ସମସ୍ତ କଟାଇବାକୁ ଲାଗିଲେ ।

ଚଣ୍ଡାଳ ଦେଖିଲା ଲୋକଟା ଏକ ଉଚ୍ଚବଂଶୀୟ । ମୋ’ ଘରେ ରହିବା ପାଇଁ ତାକୁ ସଙ୍କୋଚ ଲାଗୁଛି । ଲୋକଟା ସତ୍ୟବାଦୀ ଓ ଧର୍ମାତ୍ମା ବୋଲି ମନେ ହେଉଛି । ତେଣୁ ସେ, ମହାରାଜ ହରିଶ୍ଚନ୍ଦ୍ରଙ୍କୁ ମଣିକର୍ଣ୍ଣିକା ଘାଟର ଶ୍ମଶାନରେ ନିଯୁକ୍ତ ଦେଲା । ସେଠାରେ ଭଙ୍ଗା ଦଦରା ଏକ ଅପରିଷ୍କାର ଘର ଥିଲା । ଚଣ୍ଡାଳ ରାଜାଙ୍କୁ ସାଙ୍ଗରେ ନେଇଯାଇ କହିଲା—ଆଜିଠାରୁ ତୁ ଏଇ ଘରେ ରହିବୁ । ଶବଦାହ କରିବା ପାଇଁ ଯେଉଁମାନେ ଆସିବେ ସେମାନଙ୍କୁ ନିଆଁ ଦେବୁ । ଶବ ଉପରେ ଥିବା ଲୁଗାଟି ରଖିବୁ ଓ ସେମାନଙ୍କଠାରୁ ଘାଟଶୁଳ୍କ ନେବୁ । ମହାରାଜ ତ ଦାସ ହୋଇ ସାରିଥିଲେ । ତେଣୁ ଚଣ୍ଡାଳର ଆଦେଶକୁ ଗ୍ରହଣ କରିନେଲେ । ସେହି ଦିନଠାରୁ ମହାରାଜ ସେହି ମହାଶ୍ମଶାନରେ ରହିଲେ । ସେଠାରେ ସବୁବେଳେ ଚିତା ହୁ ହୁ ହୋଇ ଜଳୁଥାଏ । ଜଳି ଯାଉଥିବା ଶବର ଦୁର୍ଗନ୍ଧରେ ସ୍ଥାନଟି ପୂରି ରହିଥାଏ । ଚାରିଆଡ଼େ ହାଡ଼ଗଦା, ଶହ ଶହ ଖପୁରି ପଡ଼ିଥାଏ । ମାଂସ ଲୋଭୀ ବଡ଼ ବଡ଼ କଚ୍ଛପ ମାଂସ ଖାଇବା ପାଇଁ ଗଙ୍ଗାକୂଳରେ ପାଟି ମେଲି କରି ପଡ଼ି ରହିଥାନ୍ତି ।

ଶ୍ମଶାନରେ ଅନେକ ଶବ ପଡ଼ିଥାଏ । ସେଥିରୁ ଏପରି ଉତ୍କଟ ଗନ୍ଧ ବାହାରୁଥାଏ ଯେ ତାକୁ ଶିଆଳ, କୁକୁର, ଗୃଧ୍ର ବି ଖାଆନ୍ତି ନାହିଁ । ମହାରାଜ ସେପରି ଶବକୁ ନେଇ ଜଳରେ ଫିଙ୍ଗନ୍ତି ନୋହିଲେ କୂଳରେପକାଇ ଦିଅନ୍ତି । କୁଆ ଓ ଗୃଧ୍ର ନିଜର ପକ୍ଷ ଝାଡ଼ି ଭୟଙ୍କର ଶବ୍ଦ କରନ୍ତି ଏବଂ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଦୌଡ଼ା ଦୌଡ଼ି କରୁଥାନ୍ତି । ଭୂତ, ପ୍ରେତ, ପିଶାଚ, ବେତାଳ ଓ ଡାକିନୀ ଆଦି ସୂକ୍ଷ୍ମ ଶରୀରରେ ଅବସ୍ଥାନ କରୁଥିବା ପ୍ରାଣୀ ବୃକ୍ଷରେ ଥାଇ ହସନ୍ତି, ଖେଳନ୍ତି ଓ ଭୟଙ୍କର ଶବ୍ଦ କରନ୍ତି । ସବୁବେଳେ ଶ୍ମଶାନକୁ ଲୋକେ ଆସୁଥାନ୍ତି ଓ ଯାଉଥାନ୍ତି । କାହାର ପୁଅ ମରିଗଲା ତ ତା’ର ଆତ୍ମୀୟମାନେ ‘ହାୟ ପୁଅ କୁଆଡ଼େ ଗଲୁ’ ବୋଲି ଚିତ୍କାର କଲାବେଳେ ଆଉ କେହି ନିଜର ପିତା, ମାତା ବା ସ୍ତ୍ରୀର ମୃତ୍ୟୁରେ ଧକେଇ ହୋଇ କାନ୍ଦୁଥାଏ । ଚାରିଆଡ଼ୁ କେବଳ କରୁଣ କ୍ରନ୍ଦନ ଧ୍ୱନି ଶୁଣାଯାଉ ଥାଏ । ତେଣୁ ସେଠାରେ ନିଦ ମାଡ଼ିବାର ପ୍ରଶ୍ନ ନାହିଁ । ବେଳେ ବେଳେ ମାଂସଭୋଜୀ ପଶୁ, ପକ୍ଷୀ ମହାରାଜଙ୍କୁ ଶୋଇଥିବାର ଦେଖି ଶବ ବୋଲି ଭାବି ଆଘାତ କରନ୍ତି । ଯେ କୌଣସି ସମୟରେ ଶବ ଆସିଲେ ମଧ୍ୟ ମହାରାଜ ଶୀଘ୍ର ପାଖକୁ ଯାଇ ନିଆଁ ଦିଅନ୍ତି, ପଇସା ନିଅନ୍ତି ଓ ଶବ ଉପରର ଲୁଗା ଖଣ୍ଡିକ ସାଇତି ରଖନ୍ତି । ନିଜର ପ୍ରଭୁ ଚଣ୍ଡାଳର କାର୍ଯ୍ୟ ସାବଧାନତାର ସହିତ ସମ୍ପାଦନ କରିବାରେ ରାଜାଙ୍କ ଧ୍ୟାନ ଥାଏ ଏବଂ ସେହି କର୍ତ୍ତବ୍ୟ ସମ୍ପାଦନକୁ ସେ ମର୍ଯ୍ୟାଦାପୂର୍ଣ୍ଣ କାର୍ଯ୍ୟରୂପେ ଗ୍ରହଣ କରି ନେଇଥାନ୍ତି । କର୍ତ୍ତବ୍ୟ ପାଳନରେ ଛଳ, କପଟ ଓ ପ୍ରବଞ୍ଚନା ଯେପରି ନ ହେବ ସେଥିପାଇଁ ମହାରାଜ ସର୍ବଦା ସାବଧାନ ଥାଆନ୍ତି ।

ସେହି ଭୟଙ୍କର ମହା ଶ୍ମଶାନରେ ଏହିପରି ଅବସ୍ଥାରେ କୌଣସି ମତେ ରାଜାଙ୍କର ବର୍ଷେକାଳ କଟିଗଲା । ସାରା ବର୍ଷଟି କିପରି କଟିଲା ତାହା ରାଜାଙ୍କ ବ୍ୟତୀତ ଅନ୍ୟ କେହି ଅନୁଭବ କରି ପାରିବ ନାହିଁ । ତାଙ୍କର ଗୋଟିଏ ମୁହୂର୍ତ୍ତ ଗୋଟିଏ ଗୋଟିଏ ଯୁଗ ପରି କଟୁଥିଲା । ସେ ଖିଆପିଆ କରୁ ନଥିଲେ । ତାଙ୍କ ଦେହ ଶୁଖି ଶୁଖି କଣ୍ଟାପରି ହୋଇ ଯାଇଥିଲା । କୌଣସି ପରିଚିତ ବ୍ୟକ୍ତି ତାଙ୍କୁ ଦେଖି ସେ ଯେ ଅଯୋଧ୍ୟାର ରାଜା ହରିଶ୍ଚନ୍ଦ୍ର ତାହା ଜାଣିପାରୁ ନଥିଲେ । ରାଜା ହରିଶ୍ଚନ୍ଦ୍ର ଅହୋରାତ୍ର ପତ୍ନୀ ଓ ପୁତ୍ର ଚିନ୍ତାରେ ବ୍ୟାକୁଳ ହେଉଥିଲେ ।

ମହାରାଣୀ ଶୈବ୍ୟା ଭକ୍ତିର ସହିତ ବ୍ରାହ୍ମଣର ସେବା କରୁଥିଲେ । ସାରାଦିନ ସେ କାମରେ ଲାଗିରହୁଥିଲେ । ବ୍ରାହ୍ମଣ ଓ ବ୍ରାହ୍ମଣୀ ଶୈବ୍ୟାଙ୍କ କାମରେ ସନ୍ତୁଷ୍ଟ ଥିଲେ । ଶୈବ୍ୟାଙ୍କ ଆଚରଣ, ବ୍ୟବହାର ଓ ସ୍ୱଭାବ ଦେଖି ତାଙ୍କୁ ଆତ୍ମୀୟ ପରି ବ୍ୟବହାର କରୁଥିଲେ । କିନ୍ତୁ ମହାରାଣୀ ସବୁବେଳେ ସ୍ୱାମୀଙ୍କ ଚିନ୍ତାରେ ବ୍ୟାକୁଳ ହେଉଥିଲେ ।

ଦିନେ ରାଜକୁମାର ରୋହିତ ବାହାରେ ଖେଳୁଥିବାବେଳେ ଏକ କଳା ନାଗ ଆସି ଦଂଶନ କଲା । ସାଙ୍ଗେ ସାଙ୍ଗେ ରୋହିତର ପ୍ରାଣବାୟୁ ଉଡ଼ିଗଲା । ସାଙ୍ଗ-ପିଲମାନେ ଯାଇ ମହାରାଣୀ ଶୈବ୍ୟାଙ୍କୁ ଏହା ଜଣାଇ ଦେଲେ । ରୋହିତର ମୃତ୍ୟୁ ଖବର ଶୁଣି ଶୈବ୍ୟା ମୂର୍ଚ୍ଛିତା ହୋଇ ପଡ଼ିଗଲେ । ଚେତନା ଫେରିପାଇବା ପରେ ସେ ବାରମ୍ବାର ଦୈବକୁ ଧିକ୍କାର କରିବାକୁ ଲାଗିଲେ । ସେ କହିଲେ—ଆମର ଏପରି ପାପ କେବେ ଘଟିଲା ? ମୋର ସ୍ୱାମୀ ଭୁଲ୍‌ରେ ମଧ୍ୟ ଅଧର୍ମ ଆଚରଣ କରିନାହାନ୍ତି କି କାହାରିକୁ କଷ୍ଟ ଦେଇ ନାହାନ୍ତି । ତଥାପି ଆମକୁ ଏ ଦୁଃଖ ସହିବାକୁ ପଡ଼ୁଛି କାହିଁକି ? ଆମ ଉପରେ ବିପଦ ପରେ ବିପଦ କାହିଁକି ପଡ଼ୁଛି । ସମ୍ଭବତଃ ମୁଁ ବୋଧହୁଏ କୌଣସି ମା'ଠାରୁ ତା' ଛୁଆକୁ ଅଲଗା କରିଛି । ସେଥିପାଇଁ ମୋର ଏକମାତ୍ର ଆଶ୍ରୟ ସ୍ୱରୂପ ମୋ' ପୁଅଠାରୁ ମୋତେ ଅଲଗା ହେବାକୁ ପଡ଼ିଲା । ମୋର ମରିବା ପାଇଁ ମଧ୍ୟ ସ୍ୱାଧୀନତା ନାହିଁ । ଦାସୀ ନିଜ ଇଚ୍ଛାରେ କେବେ ମରିପାରିବ ନାହିଁ । ମହାରାଣୀ ଏହିପରି ରାତି ଅଧ ପର୍ଯ୍ୟନ୍ତ କାନ୍ଦିବାକୁ ଲାଗିଲେ । ଶେଷରେ ସେ ମଣିକର୍ଣ୍ଣିକା ଘାଟରେ ରୋହିତର ଶବକୁ ଉଠାଇଦେବା ପାଇଁ ସ୍ଥିର କଲେ ।

ମହାରାଣୀ ଶୈବ୍ୟା ମୃତ ପୁତ୍ରକୁ ଗୁପ୍ତରେ ଜାକି ରାତି ଅଧରେ ମଣିକର୍ଣ୍ଣିକା ଘାଟରେ ଯାଇ ପହଞ୍ଚିଲେ । ପୁଅର ଶବକୁ ଦାହ କରିବାପାଇଁ ତାଙ୍କ ପାଖରେ କାଠ ନଥିଲା କି ପଇସା ନଥିଲା । ନିଜ ପିନ୍ଧା ଶାଢ଼ୀରୁ ଅଧା ଚିରି ସେ ପୁଅର ଶବକୁ ଘୋଡ଼ାଇ ଥିଲେ । ଶ୍ମଶାନରେ ପହଞ୍ଚିବା ପରେ ସେ ସ୍ଥାନର ଭୟଙ୍କର ଦୃଶ୍ୟ ଦେଖି

ରାଣୀ ଖୁବ୍ ଡରିଗଲେ । ଶ୍ମଶାନରେ ମାଂସଲୋଭୀ ପକ୍ଷୀ ଉଡ଼ୁଥିଲେ । ବିଭିନ୍ନ ସ୍ଥାନରେ ଚିତାଗ୍ନି ଜଳୁଥିଲା । କେତେକ ଚିତା ଲିଭି ଯାଇଥିଲା ଓ ଆଉ କେତେକ ଲିଭି ଆସୁଥିଲା । କେତେକ ସ୍ଥାନରେ ପୁରୁଷମାନେ ନୀରବରେ ବସିଥିଲେ । କେତେ ଲୋକ କାନ୍ଦି କାନ୍ଦି କ୍ଳାନ୍ତ ହୋଇ ଦୀର୍ଘନିଃଶ୍ୱାସ ଛାଡ଼ୁଥିଲେ । ରାଣୀ ପୁଅ ମୁହଁରୁ ଲୁଗା କାଢ଼ି ଦେଖିଲେ ଏବଂ ଚିତ୍କାର କରି କାନ୍ଦି ଉଠିଲେ । ହା ବତ୍ସ ! ଦୁଃଖିନୀ ମା'କୁ ଛାଡ଼ି ତୁ ଏକା ଏକା କୁଆଡ଼େ ଗଲୁ ? ପୁଅ ! ମୋତେ ବି ତୋ' ସଙ୍ଗରେ ନେଇ ଚାଲ ! ମୁଁ ଏ ଦୁଃଖ କିପରି ସହିବି ?

ମହାରାଜ ହରିଶ୍ଚନ୍ଦ୍ର ଏପରି କରୁଣ କ୍ରନ୍ଦନ ଶୁଣି ଶୁଣି ଅଭ୍ୟସ୍ତ ହୋଇ ଯାଇଥିଲେ । ତାଙ୍କ ପକ୍ଷରେ ଏହା ଅତି ସାଧାରଣ ଥିଲା । ସେ ତାଙ୍କ କୁଡ଼ିଆରେ ଏକ ମଇଳା ଚଟେଇରେ ଗଡ଼ପଡ଼ ହେଉଥିଲେ । ମୁର୍ଦ୍ଦାର ପୋଡ଼ା ଗନ୍ଧ ଆଉ ତାଙ୍କୁ ଅସହ୍ୟ ଲାଗୁ ନଥିଲା । ସେ ସେହି ଦୁର୍ଗନ୍ଧ ଓ କରୁଣ ବିକଟ କୋଳାହଳ ମଧ୍ୟରେ ବି ଢୋଳେଇ ପଡ଼ୁଥିଲେ । ରାଣୀଙ୍କ ଚିତ୍କାର ଶୁଣି ସେ ଉଠି ବସିଲେ । ସେ ଭାବିଲେ ନୂଆ ଶବ ବୋଧହୁଏ ଆସିଲା । ତାକୁ ନିଆଁ ଦେଲେ କିଛି ପଇସା ମିଳିବ । ଶବ ଉପରର ନୂଆ ଲୁଗାଟା ମିଳିବ । ଏହା ଭାବି ସେ ଠେଙ୍ଗାଟା ଧରି ସେହି ଆଡ଼କୁ ଗଲେ ।

ମହର୍ଷି ସୂତ କହିଲେ—"ହେ ମୁନିଗଣ ! ପୂର୍ବେ ସମସ୍ତଙ୍କର ବେଶଭୂଷା ଅଲଗା ଅଲଗା ଥିଲା । ବେଶଭୂଷା ଦେଖି ସେ କିଏ ଓ କେଉଁ ଜାତିର ତାହା ଜାଣି ହେଉଥିଲା । ଚଣ୍ଡାଳମାନେ ଏକ ପ୍ରକାର ସ୍ୱତନ୍ତ୍ର ଠେଙ୍ଗା ଧରୁଥିଲେ । ମହାରାଜ ହରିଶ୍ଚନ୍ଦ୍ର ମଧ୍ୟ ତାଙ୍କ ଠେଙ୍ଗାଟି ପ୍ରବୀର ଚଣ୍ଡାଳଠାରୁ ପାଇଥିଲେ । ସେହି ଠେଙ୍ଗାଟି ଧରି ମହାରାଜ ହରିଶ୍ଚନ୍ଦ୍ର ମହାରାଣୀ ଶୈବ୍ୟାଙ୍କ ପାଖରେ ପହଞ୍ଚିଲେ । ଜଳୁଥିବା ଜୁଇର ନିଆଁରେ ସେ ଯେତେବେଳେ ସୁକୁମାର ପିଲାଟିର ମୁହଁକୁ ଦେଖିଲେ ସେତେବେଳେ ହୃଦୟ ତାଙ୍କର ଦୁଃଖରେ ଫାଟି ପଡ଼ିଲା । ହଠାତ୍ ସ୍ନେହର ପୁତ୍ର ରୋହିତର ମୁହଁ ତାଙ୍କ ଆଖି ଆଗରେ ଭାସିଗଲା । ସେ ଭାବିଲେ—କାଳ କେତେ ନିର୍ଦ୍ଦୟ, କେତେ କ୍ରୂର । ପିଲାଟା କେତେ ସୁନ୍ଦର ଓ କେତେ ସୁକୁମାର । କିନ୍ତୁ ନିର୍ଦ୍ଦୟ କାଳ ତାକୁ ବି ଗ୍ରାସ କଲା । ହାୟ ! ଏହାର ଘର ଲୋକେ କେତେ ବ୍ୟାକୁଳ ହେଉ ନ ଥିବେ ? ମୋର ପୁତ୍ର ରୋହିତ ଯଦି କୁଶଳରେ ଥିବ ତେବେ ଠିକ୍ ଏହାରି ପରି ହୋଇଥିବ । ଏହି ପିଲାଟାର ଦେହରେ ମଧ୍ୟ ରାଜୋଚିତ ଚିହ୍ନ ପ୍ରକାଶ ପାଉଛି ।

ମହାରାଜ ଠେଙ୍ଗାଟି ଧରି କାନ୍ଦୁଥିବାବେଳେ ମହାରାଣୀ ତାଙ୍କୁ ଦେଖି ଡରିଗଲେ ଓ ଚିତ୍କାର କରି କାନ୍ଦି ଉଠିଲେ । ମହାରାଣୀ କାନ୍ଦି କାନ୍ଦି କହିଲେ—ହାୟ ପୁଅ ! ତୁ ଏକା ଏକା କୁଆଡ଼େ ଯାଉଛୁ ?

ମହାରାଜଙ୍କ ମନରେ ରାଣୀଙ୍କ ସ୍ୱର ସନ୍ଦେହ ଜାତ କଲା । ସେ ଭାବିଲେ— ମୋର ପ୍ରାଣପ୍ରିୟା ଶୈବ୍ୟାର ସ୍ୱର ପରି ମନେ ହେଉଛି । କିନ୍ତୁ ସେ କିଛି ସ୍ଥିର କରିପାରିଲେ ନାହିଁ ।

ମହାରାଣୀ ମୃତ ପୁତ୍ରର ମୁଖ ଚୁମ୍ବନ କରି ପୁଣି କହିଲେ—ବାବୁ ରୋହିତ ! ତୁ ରାଜକୁମାର, ଚକ୍ରବର୍ତ୍ତୀ ରାଜାଙ୍କ ପୁଅ । ଭାଗ୍ୟ ମୋତେ ଠକି ଦେଲା । ପତିଙ୍କୁ ମୋଠାରୁ ଦୂରେଇ ନେଲା । ଆଜି ମହାରାଣୀ ହୋଇ ମଧ୍ୟ ମୁଁ ଦାସୀର କାର୍ଯ୍ୟ କରୁଛି । ତୁ ମୋ' ସାଙ୍ଗରେ ଥିଲେ ମୋର ଦାସୀ ଜୀବନ ମଧ୍ୟ ସୁଖକର ହୋଇଥାନ୍ତା । ତୋ' ମୁହଁକୁ ଚାହିଁ ମୁଁ କୌଣସି ମତେ ଦାସୀ ଜୀବନ କଟାଇ ପାରିଥାନ୍ତି । କିନ୍ତୁ ପତି ମୋତେ ଛାଡ଼ି ଚାଲିଗଲେ ଆଉ ତୁ ବି ମୋତେ ଛାଡ଼ି ଚାଲିଗଲୁ । ମୁଁ ହତଭାଗିନୀ କେଉଁଠି ରହି ପାରିଲି ନାହିଁ । ରାଜର୍ଷି ପତି ମୋର କେଉଁଠି ଥିବେ ମୁଁ ଜାଣେ ନାହିଁ । ତୁ ମୋତେ ମଝି ନଈରେ ଭସାଇ ଦେଇ ଚାଲିଗଲୁ । ହାୟ ! ମୋର ହୃଦୟ କି ଧାତୁରେ ଗଢ଼ା ଯେ ଏତେ ଦୁଃଖରେ ମଧ୍ୟ ତାହା ଫାଟିଯାଉ ନାହିଁ କି ମୋର ପ୍ରାଣ ବାହାରି ଯାଉ ନାହିଁ ।

ମହାରାଣୀ ଶୈବ୍ୟାଙ୍କର କରୁଣ ବିଳାପ ଶୁଣି ମହାରାଜ ହରିଶ୍ଚନ୍ଦ୍ରଙ୍କର ସନ୍ଦେହ ଦୂର ହୋଇଗଲା । ସେ ମୂର୍ଚ୍ଛିତ ହୋଇ ଗଛ କାଟିଲା ପରି ତଳେ ପଡ଼ିଗଲେ । ତାଙ୍କ ମୁଣ୍ଡ ଫାଟିଗଲା । ତାହା ସେ ଜାଣି ପାରିଲେ ନାହିଁ । ଚେତନା ଆସିବା ପରେ ସେ 'ହାୟ ପୁଅ ! ତୁ କୁଆଡ଼େ ଗଲୁ' କହି କାନ୍ଦିବାକୁ ଲାଗିଲେ ।

ମହାରାଣୀ ଶୈବ୍ୟା କାନ୍ଦୁଥିଲେ, ଭୟଭୀତା ହୋଇ ପଡ଼ିଥିଲେ । ତାଙ୍କ ପାଖରେ ପୁଅ, ପୁଅ ବୋଲି କହି କିଏ କାନ୍ଦୁଛି ତାହା ସେ ଜାଣିପାରିଲେ ନାହିଁ । ସେ ଭାବିଲେ ମୋ' ପରି କେହି ହତଭାଗ୍ୟର ପୁଅ ପ୍ରାୟ ମରି ଯାଇଛି । ରାଜା ବହୁ ସମୟ ପର୍ଯ୍ୟନ୍ତ ମୂର୍ଚ୍ଛିତ ହୋଇ ପଡ଼ିରହିଲେ । କିଛି ସମୟ ପରେ ଚେତା ଆସିବାରୁ ସେ ଦୌଡ଼ିଯାଇ ଶୈବ୍ୟାଙ୍କ କୋଳରୁ ମୃତ ପୁତ୍ରକୁ ଉଠାଇ ଆଣି ନିଜ ବକ୍ଷରେ ଚାପି ଧରିଲେ ଓ କାନ୍ଦି କାନ୍ଦି କହିଲେ—ବତ୍ସ ରୋହିତ ! ସମସ୍ତେ ମୋତେ ତ୍ୟାଗ କଲେ । ତୁ ବି ମୋତେ ଛାଡ଼ି ପରଲୋକକୁ ଚାଲି ଯାଉଛୁନା କଣ ? ମୋତେ ବି ତୋ ସାଙ୍ଗରେ ନେଇଚାଲ । ତୋ ବିନା ମୁଁ ଏ ଜୀବନ ନେଇ ରହିପାରିବି ନାହିଁ ।

ରାଣୀ ମହାରାଜଙ୍କ କଥା ଶୁଣି ନିଜର ସ୍ୱାମୀ ବୋଲି ଚିହ୍ନିପାରିଲେ । ଆଗରୁ ଦେଖି ମଧ୍ୟ ରାଣୀ ମହାରାଜଙ୍କୁ ଚିହ୍ନିପାରି ନଥିଲେ । କାରଣ, ମହାରାଜଙ୍କ ମସ୍ତକ ଉପରେ ଛତ୍ର ଥିବାର ସେ ଦେଖିଥିଲେ । କୁଞ୍ଚିତ ଘନକୃଷ୍ଣ କେଶରାଶି ତାଙ୍କ ମୁଖ ମଣ୍ଡଳକୁ ମଧ୍ୟେ ମଧ୍ୟେ ଆବୃତ କରୁଥିଲା । କିନ୍ତୁ ଆଜି ତାଙ୍କ ମୁଣ୍ଡରେ ରୁକ୍ଷ ଜଟା

ଚତାର ଧୂଆଁରେ ଧୂଆଁଳିଆ ଦେଖାଯାଉଛୁ । ଦେହ ତାଙ୍କର କଳା ପଡ଼ିଯାଇଛୁ । ଚୂଡ଼ା ଜନା ଖଣ୍ଡିଏ ପିନ୍ଧିଛନ୍ତି । ସାରା ଦେହ ମଳରେ ପୂର୍ଣ୍ଣ । ଦେହ ଶୁଖି କଣ୍ଟା ପାଲଟି ଯାଇଛୁ । ଦେହରୁ ଭୀଷଣ ଦୁର୍ଗନ୍ଧ ବାହାରୁଛୁ । ସେ ମୃତ ପୁତ୍ରର ମୁଖକୁ ବାରମ୍ବାର ଚୁମ୍ବନ କରି ଅଚେତନ ପ୍ରାୟ ହୋଇ ପଡ଼ୁଛନ୍ତି । ତାଙ୍କ ହାତରେ ଥିବା ଠେଙ୍ଗାକୁ ରାଣୀ ବୁଝିପାରିଲେ ଯେ ଦୁର୍ଦ୍ଦୈବ ତାଙ୍କ ସ୍ୱାମୀଙ୍କୁ ଚଣ୍ଡାଳ କରିଦେଇଛୁ । ନିଜ ସ୍ୱାମୀଙ୍କ କଥା ସ୍ମରଣ ଆସିବାମାତ୍ରେ ରାଣୀ ହାୟ ପ୍ରାଣନାଥ କହି ମୂର୍ଚ୍ଛିତା ହୋଇ ପଡ଼ିଲେ । ରାଜା ଆଗେଇ ଆସି ରାଣୀଙ୍କୁ ଧରି ପକାଇଲେ ।

ମହାରାଜଙ୍କ କୋଳରେ ଏକଭାଗରେ ମୃତ ପୁତ୍ର ରୋହିତ ଓ ଅନ୍ୟ ଭାଗରେ ମଉଳି ଯାଇଥିବା କମଳ ପରି ମହାରାଣୀ ଶୈବ୍ୟାମୂର୍ଚ୍ଛିତା ହୋଇ ଦୀର୍ଘନିଃଶ୍ୱାସ ଛାଡ଼ୁଥିଲେ । ମହାରାଜ ଧୈର୍ଯ୍ୟ ଧରି ଗଙ୍ଗାରୁ ଜଳ ଆଣିଲେ । ମହାରାଣୀଙ୍କ ମୁଖରେ ଗଙ୍ଗାଜଳ ଛିଟିଲେ । କିଛିସମୟ ପରେ ରାଣୀଙ୍କ ଚେତନା ଫେରିଆସିଲା । ମହାରାଜଙ୍କୁ ଚାହିଁବାମାତ୍ରେ ସେ ଚିତ୍କାର କରି କାନ୍ଦି ଉଠିଲେ—"ହାୟ ମହାରାଜ ! ଆପଣଙ୍କର ଏ କି ଅବସ୍ଥା ହେଲା ? ଆପଣ ଚଣ୍ଡାଳ ହେଲେ କିପରି ? ହାୟରେ ଦୈବ ? ଆମର ରାଜ୍ୟ, ରାଜତ୍ୱ, ରାଜବୈଭବ ନଷ୍ଟ କରି ତୋତେ କଣ ସନ୍ତୋଷ ମିଳିଲା ନାହିଁ । ଶେଷରେ ମହାରାଜଙ୍କୁ ବି ଚଣ୍ଡାଳ କରିଦେଲୁ । ଯେଉଁ ରାଜର୍ଷିଙ୍କୁ ଦେବତାମାନେ ମଧ୍ୟ ବନ୍ଦନା କରନ୍ତି ତାଙ୍କୁ ଚଣ୍ଡାଳ ହେବାକୁ ପଡ଼ିଲା ।

ମହାରାଜ ! କେଉଁ ପାପ ଫଳରେ ଆପଣଙ୍କର ଏ ଦୁର୍ଦ୍ଦଶା ଘଟିଲା ? ଆପଣ ସବୁବେଳେ ଛତ୍ର, ଚାମର ତଳେ ରହୁଥିଲେ । ଆପଣଙ୍କ ଆଗରେ ଓ ପଛରେ ଶହ ଶହ ସୈନିକ ଚାଲୁଥିଲେ । କିନ୍ତୁ ଶିଆଳ, କୁକୁର, ଶାଗୁଣା, ଭୂତ, ପ୍ରେତ ଓ ପିଶାଚ ପରିପୂର୍ଣ୍ଣ ଶ୍ମଶାନର ଆପଣ ରକ୍ଷକ ହେଲେ କିପରି ? ଆପଣଙ୍କୁ ଆଜି ଚଣ୍ଡାଳ ବେଶରେ ଦେଖି ଛାତି ମୋର ଫାଟିଯାଉ ନାହିଁ କାହିଁକି ?" ଏହା କହି ମହାରାଣୀ ଛାତି ବାଡ଼େଇ ବାଳକୁ ଟାଣି ଓଟାରି ନଖରେ ନିଜ ଦେହକୁ ଚିରିବାକୁ ଲାଗିଲେ ।

ମହାରାଜ ରାଣୀଙ୍କର ବିକ୍ଷିପ୍ତ ଅବସ୍ଥା ଦେଖି ତାଙ୍କୁ ଧରି ପକାଇଲେ । ରାଣୀଙ୍କୁ ତାଙ୍କର ଛୁଇଁବା ଉଚିତ ନୁହେଁ ବୋଲି ରାଜା ଭୁଲିଗଲେ । ସେ ପ୍ରିୟତମା ଶୈବ୍ୟାକୁ ନିଜ ଛାତିରେ ଜାବୁଡ଼ି ଧଇଲେ । ରାଣୀ ପୁତ୍ରଶୋକ ଭୁଲିଗଲେ ଓ ରହି ରହି ଧକେଇ ହୋଇ କାନ୍ଦୁଥିଲେ ।

ସମସ୍ତ ରାତ ଅଧ । ସମସ୍ତେ ଶୋଇଥାନ୍ତି । ଶ୍ମଶାନଭୂମିର ଭୟଙ୍କରତା ଆହୁରି ବଢ଼ିଯାଇଥାଏ । ଶିଆଳ, କୁକୁର ଏଠି ସେଠି ମାଂସ ଖାଇବା ପାଇଁ ଘୂରି

ବୁଲୁଥାନ୍ତି । ଶବଦାହ କରିବାକୁ ଆସିଥିବା ଲୋକମାନେ ଚାଲି ଯାଇଥାନ୍ତି । ଚିତାର ଧୂଆଁରେ ଶ୍ମଶାନଭୂମି ଆଚ୍ଛନ୍ନ ହୋଇ ପଡ଼ିଥାଏ ଶ୍ମଶାନରେ ଥାନ୍ତି ମାତ୍ର ତିନିଜଣ, ରାଜା, ରାଣୀ ଓ ମୃତ ରାଜକୁମାର । ମହାରାଜ ରୋହିତର ଶବକୁ କୋଳରେ ରଖି ରାଣୀଙ୍କର ଚିରା, ମଇଳା ଲୁଗା କାନିରେ ତାଙ୍କ ଆଖିରୁ ଲୁହ ପୋଛିଦେଇ କହିଲେ –"ପ୍ରିୟେ ! ତୁମେ ଅଧୀର ହୁଅ ନାହିଁ । ଆମେ କିଛି ପାପକାମ କରିନାହୁଁ । ଆମେ ଯାହା କିଛି କରିଛୁ ତାହା କେବଳ ଧର୍ମରକ୍ଷା କରିଛୁ । ତେଣୁ ବ୍ୟସ୍ତ ହେବାର କାରଣ କିଛି ନାହିଁ ।

ରାଣୀ ପଚାରିଲେ—"ପ୍ରାଣନାଥ ! ଆପଣ କିପରି ଚଣ୍ଡାଳ ହେଲେ ?"

ରାଣୀଙ୍କୁ ବୁଝାଇବାକୁ ଯାଇ ମହାରାଜ ଗୋଟି ଗୋଟି କରି ସବୁକଥା କହିଲେ । ମହାରାଜ କହୁଥାନ୍ତି, ରାଣୀ ଶୁଣୁଥାନ୍ତି ଓ କାନ୍ଦୁଥାନ୍ତି । ଗଛରେ ବସିଥିବା ଶାଗୁଣାଗୁଡ଼ିକ ମଝିରେ ମଝିରେ ହୁଙ୍କାର ଛାଡ଼ୁଥାନ୍ତି । ମହାରାଜ କହିସାରି ପଚାରିଲେ—"ପ୍ରିୟେ ! କୁମାର ରୋହିତ କିପରି ମୃତ୍ୟୁବରଣ କଲା ?"

ରାଣୀଙ୍କଠାରୁ ସର୍ପଦଂଶନରେ ରୋହିତର ମୃତ୍ୟୁ ଘଟିଛି ବୋଲି ଜାଣି ରାଜା କାନ୍ଦି ପକାଇଲେ । ବହୁସମୟ ଧରି ରାଜା ଓ ରାଣୀ କାନ୍ଦିବାକୁ ଲାଗିଲେ । କାନ୍ଦି କାନ୍ଦି ଉଭୟଙ୍କ ଆଖିରୁ ଯେତେବେଳେ ଲୁହ ଶୁଖିଗଲା ସେତେବେଳେ ହୃଦୟ ଟିକିଏ ହାଲୁକା ଲାଗିଲା । ରାଜା କହିଲେ—"ପ୍ରିୟେ ! ତୁମେ ଏବେ ତୁମର ପ୍ରଭୁ ବ୍ରାହ୍ମଣ ଘରକୁ ଫେରିଯାଅ । ସାବଧାନତାର ସହିତ ତାଙ୍କର ସେବାକାର୍ଯ୍ୟ କରିଯାଅ ।" କେବେହେଲେ ରାଜରାଣୀ ବୋଲି ଅଭିମାନ କରିବ ନାହିଁ । ନିଜ ପ୍ରଭୁର ସେବା କରିବା ସେବକର ଶ୍ରେଷ୍ଠଧର୍ମ । ତୁମେ ଫେରିଯାଅ । ମୁଁ ରୋହିତର ଚିତାରେ ନିଜକୁ ଅଗ୍ନି ଭସ୍ମ କରିଦେବି । ଆଉ ଅଧିକ କିଛି ମୁଁ ସହିପାରିବି ନାହିଁ । ଆଉ ଏ ଜୀବନ ନେଇ ବଞ୍ଚି ରହିବାକୁ ମୋତେ ଭଲ ଲାଗୁନାହିଁ ।

ମହାରାଣୀ କହିଲେ—ପ୍ରାଣନାଥ ! ଆପଣ ପୁରୁଷ ଆଉ ମୁଁ ଜଣେ ନାରୀ । ସ୍ତ୍ରୀ ଲୋକକୁ ପୁତ୍ରବିୟୋଗ ଦୁଃଖ କେତେଦୂର କଷ୍ଟଦିଏ ତାହା ପୁରୁଷ ହୋଇ କେହି ଜାଣିପାରିବ ନାହିଁ । ଆପଣ ପୁଅ ସହିତ ପରଲୋକ ଗଲେ ମୁଁ ଏଠାରେ ରହି କଣ କରିବି ? ମୁଁ ଏବେ ଆଉ ଫେରିଯାଇ ପାରିବି ନାହିଁ । ମୁଁ ବି ଆପଣଙ୍କ ସହିତ ଚିତାଗ୍ନିରେ ଝାସ ଦେବି । ବିବାହ ସମୟରେ ଅଗ୍ନିକୁ ସାକ୍ଷୀରଖି ଯେପରି ମୋ' ହାତ ଧରିଥିଲ ସେହିପରି ମୋ' ହାତଧରି ଚିତାଗ୍ନିରେ ପ୍ରବେଶ କର ।"

ରାଜା କହିଲେ—"ଠିକ୍ କଥା କହିଛ କଲ୍ୟାଣୀ ! ତୁମେ ଯଦି ସ୍ଥିର କରିଛ ତେବେ ଯେପରି ସାଙ୍ଗରେ ଅଯୋଧ୍ୟା ପୁରୀ ଛାଡ଼ି ଆସିଥିଲେ ସେହିପରି ତୁମେ

ସାଙ୍ଗହୋଇ ଚିତାଗ୍ନିରେ ପ୍ରବେଶ କରିବା ।" ଏହା କହି ମହାରାଜ ଏକ ବଡ଼ ଆକାରର ଚିତାଗ୍ନି ନିଜେ ପ୍ରସ୍ତୁତ କଲେ । ସେଥିରେ ପ୍ରଥମେ କୁମାର ରୋହିତର ଶବକୁ ରଖିଦେଲେ । ରାଣୀଙ୍କ ହାତଧରି ଚିତା ପ୍ରଦକ୍ଷିଣ କଲେ ଓ ଗଦ୍‌ଗଦ୍ କଣ୍ଠରେ ପ୍ରାର୍ଥନା କରିବାକୁ ଯାଇ କହିଲେ—"ହେ ଅଶରଣ ଶରଣ ! ପ୍ରଭୋ ! ମୁଁ ଯାହା କରୁଛି ଧର୍ମରକ୍ଷା ପାଇଁ କରୁଛି । ହେ ବିଶ୍ୱମ୍ଭର ! ଆପଣଙ୍କର ନାମ ଅନନ୍ତ । ଆପଣଙ୍କର ଏକ ନାମ ହେଉଛି ଧର୍ମ । ଆପଣଙ୍କର ସ୍ୱରୂପ ହେଉଛି ସତ୍ୟ । ଆପଣ ଆନନ୍ଦ ଘନ ଓ ଚୈତନ୍ୟ ସ୍ୱରୂପ । ଆପଣଙ୍କୁ ହୃଦୟରେ ଧାରଣ କରି ମୁଁ ଏହି ଚିତାଗ୍ନିରେ ପ୍ରବେଶ କରୁଛି । ଏହାକହି ମହାରାଜ ଚିତାରେ ପ୍ରବେଶ କରିବା- ବେଳେ ଭଗବାନ ଚତୁର୍ମୁଖ ବ୍ରହ୍ମା ସେଠାରେ ସ୍ୱୟଂ ପ୍ରକଟିତ ହେଲେ । ତାଙ୍କ ପଛରେ ଥାନ୍ତି ଇନ୍ଦ୍ର, ବରୁଣ, କୁବେର, ଧର୍ମ, ବିଶ୍ୱଦେବା, ମରୁଦ୍‌ଗଣ, ନାଗ, ସିଦ୍ଧ, ଗନ୍ଧର୍ବ, ଅଶ୍ୱିନୀକୁମାର ଓ ଅନ୍ୟାନ୍ୟ ଦେବଗଣ । ଦେବରାଜ ଇନ୍ଦ୍ର କହିଲେ— ରାଜନ ! ଆପଣ ଏପରି ଦୁଃସାହସ କରନ୍ତୁ ନାହିଁ । ଆପଣ ସତ୍ୟ ଓ ଧର୍ମରେ ସ୍ୱର୍ଗଲୋକକୁ ଜୟକରି ପାରିଛନ୍ତି । ବ୍ରହ୍ମାଣ୍ଡର ଅଧୀଶ୍ୱର ପିତାମହ ଭଗବାନ ବ୍ରହ୍ମା ଦେବଗଣଙ୍କ ସହିତ ଦର୍ଶନ ଦେବାପାଇଁ ଏଠାରେ ଉପସ୍ଥିତ । ତାଙ୍କ ପାଖରେ ମହର୍ଷି ବିଶ୍ୱାମିତ୍ର ଠିଆ ହୋଇଛନ୍ତି । ସେ ଲୋଭରେ କି କ୍ରୋଧରେ ତୁମର ସର୍ବସ୍ୱ ହରଣ କରିନାହାନ୍ତି । ଆପଣଙ୍କ ପରି ସତ୍ୟବାଦୀ, ଧର୍ମାତ୍ମା ପୁରୁଷ ସଂସାରରେ ନାହାନ୍ତି । ସଂସାରକୁ ପ୍ରଭାବିତ କରିବା ପାଇଁ ଭଗବାନଙ୍କର ଏହା ଏକ ଲୀଳା । ଆପଣ ସବୁକିଛି ତ୍ୟାଗ କଲେ ମଧ୍ୟ ଧର୍ମକୁ ତ୍ୟାଗକରି ନାହାନ୍ତି । ଆଜିଠାରୁ ଆପଣ ପୁଣ୍ୟଶ୍ଳୋକ ହେଲେ । ସୂର୍ଯ୍ୟ ଚନ୍ଦ୍ର ଆଦିଯାଏ ହେଉଥିବାଯାଏ ଆପଣଙ୍କର ବିମଳ କୀର୍ତ୍ତି ଅକ୍ଷୟ ହୋଇ ରହିବ ।

ମହାରାଜ ଦେବଗଣଙ୍କୁ ସାଷ୍ଟାଙ୍ଗ ପ୍ରଣାମ କଲେ । ଏହି ସମୟରେ ଧର୍ମରାଜ କହିଲେ—"ରାଜନ ! ଆପଣଙ୍କ ପରି ଧର୍ମାତ୍ମା ଏ ପୃଥିବୀରେ ନାହାନ୍ତି । ତେଣୁ ପ୍ରାଣତ୍ୟାଗ କାର୍ଯ୍ୟରୁ ବିରତ ହୁଅନ୍ତୁ । ଏସବୁ ଘଟଣା ମୁଁ ରଚନା କରୁଛି ।"

ଏହି ସମୟରେ ଆକାଶରୁ କୁସୁମ ବୃଷ୍ଟି ହେଲା । କୁମାର ରୋହିତ ଚେତନା ଫେରିପାଇ ଉଠିବସିଲେ । ଦେବରାଜ ଇନ୍ଦ୍ର କହିଲେ—"ରାଜନ ! ଆପଣ ପୁତ୍ର ଓ ପତ୍ନୀଙ୍କୁ ନେଇ ମୋ' ସହିତ ସ୍ୱର୍ଗକୁ ଚାଲନ୍ତୁ । ସେଠାରେ ଇନ୍ଦ୍ରପଦର ଆନନ୍ଦ ଉପଭୋଗ କରିବେ ।"

ରାଜା କହିଲେ—"ଦେବରାଜ ! ମୁଁ ଆପଣଙ୍କଠାରେ କୃତଜ୍ଞ ରହିଲି । ମୁଁ ପରାଧୀନ, ଜଣେ ଦାସ । ଯେ ପର୍ଯ୍ୟନ୍ତ ମୋର ପ୍ରଭୁ ଚଣ୍ଡାଳ ମୋତେ ଆଦେଶ ନ ଦେଇଛି ସେ ପର୍ଯ୍ୟନ୍ତ ମୁଁ କୁଆଡ଼େ ଯାଇପାରିବି ନାହିଁ ।

ରାଜାଙ୍କ କଥା ଶୁଣି ଧର୍ମରାଜ ହସି ହସି କହିଲେ—"ରାଜନ୍ ! ସେ ଚଣ୍ଡାଳ ଅନ୍ୟ କେହି ନୁହେଁ । ମୁଁ ନିଜେ ଚଣ୍ଡାଳ ବେଶ ଧାରଣ କରିଥିଲି । ଆପଣ ମୋତେ ବି ଉଦ୍ଧାର କରିଛନ୍ତି । ଆପଣ ଆନନ୍ଦରେ ସ୍ୱର୍ଗକୁ ଯାଆନ୍ତୁ । ଧର୍ମର ଅଧୀନତା ଅଧୀନତା ନୁହେଁ । ଧର୍ମପାଇଁ ସହୁଥିବା କଷ୍ଟକୁ କଷ୍ଟ କୁହାଯାଏ ନାହିଁ । ଧର୍ମପାଇଁ ଅପମାନକୁ ଅପମାନ ବୋଲି ବିଚାର କରାଯାଏ ନାହିଁ । ଯେ ଧର୍ମ ରକ୍ଷାକରେ ମୁଁ ତାକୁ ସର୍ବଦା ରକ୍ଷା କରିଥାଏ । ଆପଣ ଦିବ୍ୟସୁଖ ଭୋଗ କରନ୍ତୁ ।"

ଏହାପରେ ଇନ୍ଦ୍ର କହିଲେ—"ମହାରାଜ ! ଏଥର ଚାଲନ୍ତୁ । ଆପଣ ଯାହାର ଅଧୀନ ଥିଲେ ସେ ଆପଣଙ୍କୁ ଅନୁମତି ଦେଇଛନ୍ତି ।"

ମହାରାଜ କହିଲେ—"ଦେବରାଜ ! ଆପଣଙ୍କ ଦୟା ଭୁଲି ହେବନାହିଁ । କିନ୍ତୁ ମୁଁ ଏକା ଏକା ସ୍ୱର୍ଗକୁ ଯିବାପାଇଁ ଇଚ୍ଛା କରୁନାହିଁ । ମୁଁ ସ୍ୱାର୍ଥୀ ନୁହେଁ । ମୁଁ ପ୍ରଜାମାନଙ୍କର ସେବକ । ଅଯୋଧ୍ୟାର ପ୍ରଜାବର୍ଗ ମୋତେ ନ ପାଇ ଛଟପଟ ହେଉଛନ୍ତି । ସେମାନଙ୍କୁ ଦୁଃଖରେ ରଖି ମୁଁ ସ୍ୱର୍ଗ ଯିବାକୁ ଚାହୁଁନାହିଁ । ଆପଣ ଯଦି ସମସ୍ତଙ୍କୁ ସ୍ୱର୍ଗକୁ ନେଇଯିବେ ତେବେ ପ୍ରଜାମାନଙ୍କ ସହିତ ମୁଁ ମଧ୍ୟ ସ୍ୱର୍ଗକୁ ଯିବି ।"

ଏହାଶୁଣି ଦେବରାଜ ହସି ହସି କହିଲେ—"ମହାରାଜ ! ଏବେ ବି ଆପଣଙ୍କଠାରେ ପ୍ରଜାଙ୍କ ପ୍ରତି ଅନୁରାଗ ପୂର୍ବପରି ଅତୁଟ ରହିଛି । ସତରେ ଆପଣ ଜଣେ ଅଦ୍ୱିତୀୟ ନରପତି । ଆପଣଙ୍କର ମଙ୍ଗଳ ହେଉ । ଆସନ୍ତୁ ମୋ' ସହିତ ବିମାନରେ ବସନ୍ତୁ । ମୁନି ବିଶ୍ୱାମିତ୍ର ଓ ଆପଣଙ୍କ ପ୍ରଭୁ ଧର୍ମ ମଧ୍ୟ ସାଙ୍ଗରେ ଅଛନ୍ତି । ତେଣୁ ଆଉ କାଳବିଳମ୍ବ ନକରି ଆସନ୍ତୁ, ମୋତେ କୃତାର୍ଥ କରନ୍ତୁ ।"

ମହର୍ଷି ସୂତ କହିଲେ—"ମୁନିଗଣ ! ଦେବେନ୍ଦ୍ର ଏତିକି କହିବା ମାତ୍ରେ ମହାରାଜଙ୍କ ଶରୀର ଦିବ୍ୟ ରୂପ ଧାରଣ କଲା । ବସ୍ତ୍ର, ଭୂଷଣରେ ମଣ୍ଡିତ ହୋଇ ସେ ଦ୍ୱିତୀୟ ଇନ୍ଦ୍ରପରି ପ୍ରତିଭାତ ହେଲେ । ମହାରାଣୀ ଶୈବ୍ୟା ମଧ୍ୟ ପୂର୍ବ ରୂପ ଫେରିପାଇଲେ । ମହାରାଜଙ୍କ ପାଖରେ ଠିଆହୋଇ ସେ ଠିକ୍ ଶଚୀଙ୍କ ପରି ଦେଖା ଗଲେ । ରାଜକୁମାର ରୋହିତ ମା'ର ଅଞ୍ଚଳ ଧରି ହସୁଥାନ୍ତି । ଦେବରାଜ ଇନ୍ଦ୍ର ସେମାନଙ୍କୁ ବିମାନରେ ବସାଇ ତତ୍‌କ୍ଷଣାତ୍ ଅଯୋଧ୍ୟା ପୁରୀରେ ଯାଇ ପହଞ୍ଚିଲେ ।"

ବିଶ୍ୱାମିତ୍ର ପ୍ରସନ୍ନ ହୋଇ ମହାରାଜଙ୍କୁ ପୁଣି ରାଜସିଂହାସନରେ ବସାଇଲେ ଦେବଗଣଙ୍କ ସ୍ୱର୍ଗୀୟ ବାଦ୍ୟମାନ ବାଜିଉଠିଲା । ଅପ୍ସରାଗଣ ନୃତ୍ୟ କଲେ । ବିଶ୍ୱାମିତ୍ର ମହାରାଜଙ୍କୁ ପରମତତ୍ତ୍ୱ ଉପଦେଶ ଦେଲେ । ବହୁକାଳ ଧରି ରାଜତ୍ୱ

କରିବାପରେ ମହାରାଜ ଅଯୋଧ୍ୟାବାସୀଙ୍କ ସହିତ ବୈକୁଣ୍ଠପଦ ଲାଭକଲେ । ଏହାପରେ ରାଜକୁମାର ରୋହିତ ଅଯୋଧ୍ୟାର ସିଂହାସନରେ ଅଭିଷିକ୍ତ ହେଲେ ।

## ଛପ୍ପୟ

ଶ୍ୱପଚ ଦାସ ବନି ମୃତକ ବସ୍ତ୍ର ଧରି ମରଘଟ ମାହିଁ ।
ଲେତ୍ୟୌଂ ନୃପ ତହିଁ ବସହିଁ ଦାର ସୁଖବସରତ ନାହିଁ ॥
ଡସ୍ୟୋ ସର୍ପ ସୁତ ଗୋଦ ଲଖ୍ୟୋ ଶୈବ୍ୟା ତହିଁ ଆଇ ।
ପହିଚନୀ ପୂନ କଥା ଭୂପ ଦୁଃଖ ସହିତ ସୁନାଇ ॥
ମୃତ ସୁତ ସଙ୍ଗ ନୃପ ନାରୀ ଲୈ, ଜରତ୍ୟୌ କୁଁ ଉଦ୍ୟତ ଭୟୋ ।
ତ୍ୟୋଂ ଦେବନ ସହିତ ବିଧି, ଧର୍ମ ଇନ୍ଦ୍ର ଦରସନ ଦୟୋ ॥



## ବାହୁକ ପୁତ୍ର ମହାରାଜ ସଗର

ହରିତୋ ରୋହିତସୁତ ଶ୍ଚମ୍ପସ୍ମାଦ୍ବିନିର୍ମିତା ।
ଚମ୍ପାପୁରୀ ସୁଦେବୋଽତୋ ବିଜୟୋ ଯସ୍ୟ ଚାତ୍ମଜଃ ॥
ଭରୁକସ୍ତତ୍ସୁତସ୍ତସ୍ମାଦ୍ ବୃକସ୍ତସ୍ୟାପି ବାହୁକଃ ।
ସୋଽରିଭିର୍ହୃତଭୂ ରାଜା ସଭାର୍ଯ୍ୟୋ ବନମାବିଶତ୍ ॥

(ଭାଗ ୯ସ୍କ-୮ଅ-୧-୨ଶ୍ଳୋ)

### ଛପ୍ପୟ

ତନ ଧନ ସରବସୁ ତଜ୍ୟୋ ଧର୍ମ ହରିଚନ୍ଦ ନ ଛୋର୍ୟୋ ।
ପରୀ ବିପତି ପେ ବିପତି ନହୀଁ ସତ ତେଁ ମୁଖ ମୋର୍ୟୋ ॥
ଗୟୋ ନୃପତି ବୈକୁଣ୍ଠ ଭୟୋ ରୋହିତ ନୃପ ଶ୍ରୀଯୁତ ।
ରୋହିତ କେ ସୁତ ହରିତ ହରିତ କେ ଚମ୍ପ ଭୟୋ ସୁତ ॥
ଚମ୍ପ ନୃପତି ଚମ୍ପାପୁରୀ ରଚୀଁ ବୀରବର ତିନ ତନୟ ।
ନୃପ ସୁଦେବ ହେଁ ବିଦିତ ଜଗ ଭୟୋ ତାସୁ ସୁତ ନୃପ ବିଜୟ ॥

ଭଗବାନ୍ ଯାହାକୁ ରଖିବେ ସେ ନିଆଁକୁ ଡେଇଁ ପଡ଼ିଲେ, ପାହାଡ଼ରୁ ଖସିପଡ଼ିଲେ, ଅଗାଧ ଜଳ ସ୍ରୋତରେ ଭାସିଗଲେ, ବିଷପାନ କଲେ କି ଅସ୍ତ୍ର ଶସ୍ତ୍ରଦ୍ୱାରା ଆଘାତ ପାଇଲେ ମଧ ତାର ଜୀବନ ଯିବ ନାହିଁ କି କୌଣସି ପ୍ରକାର କ୍ଷତି ହେବ ନାହିଁ । କିନ୍ତୁ ଯାହାର ମୃତ୍ୟୁ ସମୟ ଆସିଯିବ ସେ ଘରେ ବସିଥିବାବେଳେ ଅଥବା ଶେଯରେ ଶୋଇଥିବାବେଳେ ମରିଯିବ । ତାକୁ କେହି ରକ୍ଷା କରିପାରିବେ ନାହିଁ । ସେଥିପାଇଁ କହନ୍ତି—ରଖେ ହରି ମାରେ କେ । ମାରେ ହରି ରଖେ କେ । ଭାଗବତକାର କହିଛନ୍ତି—ଯାହାକୁ ରଖିବେ ଅନନ୍ତ । କି କରିପାରେ ବଳବନ୍ତ ।

ତେଣୁ ଯେ ଜୀବନ ରକ୍ଷା କରିପାରିବ ନାହିଁ ଭଗବାନ୍ ତାକୁ ମାରିବାର ଅଧିକାର ଦେଇନାହାନ୍ତି ।

ଶ୍ରୀ ଶୁକଦେବ କହିଲେ —"ରାଜନ୍ ! ସତ୍ୟବାଦୀ ମହାରାଜ ହରିଶ୍ଚନ୍ଦ୍ରଙ୍କ ପୁତ୍ର ରୋହିତ ଅଯୋଧ୍ୟାର ରାଜା ହେଲେ । ତାଙ୍କର ଯଶସ୍ୱୀ ପୁତ୍ର ଚମ୍ପ ଚମ୍ପାପୁରୀ ପ୍ରତିଷ୍ଠା କରିଥିଲେ । ମହାରାଜ ଚମ୍ପଙ୍କ ପୁତ୍ର ହେଲେ ସୁଦେବ । ତାଙ୍କ ପୁତ୍ର ବିଜୟ ଥିଲେ ଜଣେ ସାହସୀ ବୀର । ମହାରାଜ ବିଜୟଙ୍କ ପୁତ୍ର ଭରୁକ ଓ ତାଙ୍କଠାରୁ ବୃକ ଜନ୍ମ ଗ୍ରହଣ କରିଥିଲେ । ରାଜର୍ଷି ବାହୁକ ଥିଲେ ଧର୍ମାତ୍ମା ବୃକଙ୍କ ପୁତ୍ର ।

ମହାରାଜ ବାହୁକ ବଡ଼ ଧର୍ମପରାୟଣ ଓ ପ୍ରଭୁ ପରାୟଣ ଥିଲେ । ସେ ରାଜକାର୍ଯ୍ୟ ପ୍ରତି ବିଶେଷ ଦୃଷ୍ଟି ନ ଦେଇ ସର୍ବଦା ପୂଜାପାଠ ଓ ଭଗବତ୍ ଚିନ୍ତନରେ ଲାଗି ରହିଥାନ୍ତି । ପଡ଼ୋଶୀ ରାଜାମାନେ ତ ସବୁବେଳେ ଛିଦ୍ର ଅନ୍ୱେଷଣ କରନ୍ତି । ସେମାନେ ବାହୁକଙ୍କୁ ଉଦାସୀନ ଦେଖି ହଠାତ୍ ଏକ ସମୟରେ ରାଜ୍ୟ ଆକ୍ରମଣ କଲେ । ମହାରାଜ ଯୁଦ୍ଧ ପାଇଁ ପ୍ରସ୍ତୁତ ନ ଥିଲେ । ଶତ୍ରୁମାନେ ଯେତେବେଳେ ଚାରିଆଡ଼ୁ ଘେରିଆସିଲେ ସେତେବେଳେ ମହାରାଜ ବାହୁକ ନିଜର ବିଶ୍ୱସ୍ତ ସେବକ ସହିତ ରାଣୀମାନଙ୍କୁ ସାଙ୍ଗରେ ନେଇ ସୁଡ଼ଙ୍ଗ ପଥରେ ରାଜ୍ୟ ବାହାରକୁ ଚାଲିଗଲେ ।

ସୁଡ଼ଙ୍ଗଟି କେତେ ଯୋଜନ ପରେ ଅରଣ୍ୟ ପରିବେଷ୍ଟିତ ଅନ୍ୟ ଏକ ଦୁର୍ଗରେ ପହଞ୍ଚିଥାଏ । ରାତସାରା ଚାଲି ଚାଲି ସମସ୍ତେ ଯାଇ ସେହି ଦୁର୍ଗରେ ପହଞ୍ଚିଲେ । ଦୁର୍ଗ ନିକଟରେ ମହର୍ଷି ଔର୍ବଙ୍କର ଏକ ସୁନ୍ଦର ଆଶ୍ରମ ଥିଲା । ରାଣୀମାନଙ୍କ ସହିତ ମହାରାଜ ଆଶ୍ରମରେ ଆଶ୍ରୟ ନେଲେ । ମୁନି ପତ୍ନୀଗଣ ମହାରାଜ ଓ ରାଣୀମାନଙ୍କୁ ସ୍ୱାଗତ କଲେ ଓ ରହିବାପାଇଁ ସ୍ଥାନ ଦେଲେ ।

ମୁନିଙ୍କୁ ସାକ୍ଷାତ କରି ମହାରାଜ କହିଲେ --ବ୍ରହ୍ମନ୍ ! ଶତ୍ରୁମାନେ ମିଳିତ-ଭାବେ ଆକ୍ରମଣ କରି ମୋତେ ରାଜ୍ୟରୁ ତଡ଼ି ଦେଲେ । ଏବେ ରାଜ୍ୟହୀନ ହୋଇ ମୁଁ ଆପଣଙ୍କ ଶରଣ ପ୍ରାର୍ଥନା କରୁଛି ।

ମୁନି କହିଲେ—"ରାଜନ୍ ! ପୃଥିବୀ କାହାର ଜଣକର ହୋଇ ରହି ନାହିଁ । ତେଣୁ ଆପଣଙ୍କର ହୋଇ ପୃଥିବୀ ରହିବ କିପରି ? ଏ ପୃଥିବୀରେ କେତେ କେତେ ପ୍ରତାପଶାଳୀ ରାଜା ଜନ୍ମ ଗ୍ରହଣ କରିଛନ୍ତି । ମୋର ମୋର ହୋଇ ସମସ୍ତେ ଇହ ଜଗତରୁ ବିଦାୟ ନେଲେଣି । ମହାରାଜ ! ଆପଣଙ୍କ ପରି ସାଧୁ ସ୍ୱଭାବର ରାଜା ପୃଥିବୀକୁ ରକ୍ଷା କରି ପାରିବେ ନାହିଁ । ସମରପ୍ରିୟ, ବୀର, ଦୁଃସାହସୀ ରାଜାମାନେ ହିଁ ପୃଥ୍ୱୀ ପାଳନ-କରି ପାରିବେ । ଆପଣ ଏହି ଅରଣ୍ୟରେ ରହି ଭଗବାନଙ୍କ ଆରାଧନା କରନ୍ତୁ,

ଯୋଗ ସାଧନ କରନ୍ତୁ । ଆପଣଙ୍କ ବଂଶରେ ଜଣେ ଏପରି ପ୍ରତାପଶାଳୀ ରାଜା ହେବେ ଯେ ଆପଣଙ୍କ ରାଜ୍ୟ ସହିତ ପୂର୍ବପୁରୁଷଙ୍କ ଗୌରବର ପୁନରୁଦ୍ଧାର କରିବେ ।”

ମହାରାଜ ବାହୁକ କହିଲେ—“ବ୍ରହ୍ମନ୍ ! ମୁଁ ଏବେ ଆପଣଙ୍କର ଆଶ୍ରୟ-ପ୍ରାର୍ଥୀ । ଆପଣ ଯେପରି ଉପଦେଶ ଦେବେ ମୁଁ ସେହିପରି କାର୍ଯ୍ୟ କରିବି ।

ମଣିଷ ଯେପର୍ଯ୍ୟନ୍ତ ଧନଗର୍ବ, ଐଶ୍ବର୍ଯ୍ୟ ଗର୍ବ ବା ରାଜ୍ୟମଦରେ ମତ୍ତ ଥାଏ ସେ ପର୍ଯ୍ୟନ୍ତ ଅନ୍ୟ କାହାକୁ ସେ ଖାତିର କରେ ନାହିଁ । କିନ୍ତୁ ଗର୍ବ ଯେତେବେଳେ ଖର୍ବ ହୋଇଯାଏ ସେତେବେଳେ ହତାଶ ହୋଇ ସେ ସାଧୁମାନଙ୍କର ଆଶ୍ରୟ ନିଏ । ସାଧୁ-ମାନଙ୍କଠାରେ ସମସ୍ତଙ୍କୁ ଆଶ୍ରୟ ମିଳେ । ଯାହାର କେହି ବନ୍ଧୁ ନାହିଁ ସାଧୁ ତାର ବନ୍ଧୁ ହୁଏ । ନିରାଶ୍ରୟର ଆଶ୍ରୟଦାତା ହେଉଛନ୍ତି ସାଧୁ । ସାଧୁ ସମସ୍ତଙ୍କର ରକ୍ଷକ । ସାଧୁ ହିଁ ସମସ୍ତଙ୍କର ଈଶ୍ବରଙ୍କପରି ପ୍ରକୃତ ମଙ୍ଗଳାକାଂକ୍ଷୀ ଓ କଲ୍ୟାଣକାରୀ ।”

ଶ୍ରୀ ଶୁକଦେବ କହିଲେ—“ରାଜନ୍ ! ଏହା କହି ମହାରାଜ ବାହୁକ ମହର୍ଷି ଔର୍ବଙ୍କ ଆଶ୍ରମରେ ରହି ଭଜନ ପୂଜନରେ ମନୋନିବେଶ କଲେ । ମହାରାଜ ତ ବୁଢ଼ା ହୋଇ ଯାଇଥିଲେ, ପୁଣି ଶତ୍ରୁମାନଙ୍କଦ୍ୱାରା ପରାଜିତ ହୋଇଥିଲେ । ତେଣୁ ଅଳ୍ପଦିନ ମଧ୍ୟରେ ତାଙ୍କର କାଳ ହୋଇଗଲା । ସ୍ୱର୍ଗତ ମହାରାଜ ବାହୁକଙ୍କର ଅନେକ ରାଣୀ ଥିଲେ । ସେମାନଙ୍କ ମଧ୍ୟରେ ଯେ ପଟ୍ଟମହିଷୀ ଥିଲେ ସେ ପତିଙ୍କ ସହିତ ସତୀ ହେବାପାଇଁ ସ୍ଥିର କଲେ । ପାଟରାଣୀ ଯେତେବେଳେ ପତିଙ୍କ ଚିତାଗ୍ନିରେ ପ୍ରବେଶ କରିବାକୁ ଯାଉଥିଲେ ସେତେବେଳେ ଔର୍ବ ଧ୍ୟାନବଳରେ ରାଣୀ ଗର୍ଭବତୀ ଥିବାର ଜାଣି ପାରିଲେ । ସେ ପାଟରାଣୀଙ୍କୁ ସମ୍ବୋଧନ କରି କହିଲେ—ଝିଅ ! ତୁ ଧୈର୍ଯ୍ୟ ଧର । ତୋର ସତୀ ହେବା ଅଧିକାର ନାହିଁ । ତୋ’ ଗର୍ଭରେ ଚକ୍ରବର୍ତ୍ତୀ ପୁତ୍ର ଅଛି । ତୁ ସାବଧାନତାର ସହିତ ଗର୍ଭରକ୍ଷା କର ।

ରାଣୀ ଯେ ଗର୍ଭବତୀ ଥିଲେ ତାହା ତାଙ୍କ ଅଙ୍ଗ ସୌଷ୍ଠବରୁ ଜଣାପଡ଼ୁଥିଲା । ମୁନିଙ୍କ ଆଦେଶରେ ସେ ସତୀହେବାରୁ କ୍ଷାନ୍ତ ହେଲେ ଓ ବଡ଼ କଷ୍ଟରେ ଗର୍ଭସ୍ଥ ଶିଶୁର ସୁରକ୍ଷା ପାଇଁ ଯତ୍ନ କଲେ । ରାଜାଙ୍କର ଅନ୍ତ୍ୟେଷ୍ଟି କ୍ରିୟା ଶେଷ ହେଲା । ରାଣୀମାନେ ଆଶ୍ରମ ନିକଟରେ ରହିବାକୁ ଲାଗିଲେ । ବଡ଼ ରାଣୀଙ୍କ ପ୍ରତି ସାନ ରାଣୀମାନଙ୍କର ଈର୍ଷ୍ୟା ଥିଲା । ରାଜା ବଞ୍ଚିଥିବାବେଳେ ସେମାନେ ତାହାରେ କିଛି ପ୍ରକାଶ କରିପାରୁ ନଥିଲେ ବି ଭିତରେ ଭିତରେ ଜଳୁଥିଲେ । କାରଣ ରାଜା ବଡ଼ରାଣୀଙ୍କୁ ସବୁଠୁ ଅଧିକ ଆଦର ଓ ସ୍ନେହ କରୁଥିଲେ । ରାଜାଙ୍କ ମୃତ୍ୟୁପରେ ଶତ୍ରୁତା ପ୍ରକାଶ ପାଇଲା । ବିଶେଷ କରି ବଡ଼ରାଣୀ ଗର୍ଭବତୀ ଥିବାର ଜାଣି ସେମାନେ ଅଧିକ ଈର୍ଷ୍ୟା ପରାୟଣା

ହୋଇପଡ଼ିଲେ । ବଡ଼ରାଣୀର ପୁଅ ହେଲେ ସେ ରାଜା ହେବ ଓ ବଡ଼ରାଣୀ ରାଜମାତା ହେବେ । ସେତେବେଳେ ଅନ୍ୟମାନଙ୍କୁ ସାନରାଣୀ ରୂପେ ଜୀବନ କଟାଇବାକୁ ପଡ଼ିବ । ତେଣୁ ସମସ୍ତେ ବିଚାର କରି ସ୍ଥିର କଲେ ଯେ ବଡ଼ରାଣୀଙ୍କୁ ବିଷ ଦେଇ ମାରି ଦିଆଯାଉ । ଏହାଥରକେ ସଉତୁଣୀ ଓ ଭାବି ରାଜା ଶେଷ ହୋଇଯିବେ । ଏହିପରି ସ୍ଥିର କରି ଚତୁରତାର ସହିତ ମିଷ୍ଟାନ୍ନ ମଧ୍ୟରେ ବଡ଼ ରାଣୀଙ୍କୁ ବିଷ ଦେଇ ଦିଆଗଲା ।

ମହାରାଣୀ ଅତି ସରଳ ସ୍ୱଭାବର ଥିଲେ । କ୍ରୂର କର୍ମ କରୁଥିବା ସଉତୁଣୀ-ମାନଙ୍କ ଷଡ଼ଯନ୍ତ୍ର ବିଷୟରେ ସେ କିଛି ଜାଣି ନଥିଲେ । ପ୍ରତିଦିନ ପରି ସେ ଯେତେ-ବେଳେ ଔର୍ବଙ୍କୁ ପ୍ରଣାମ କଲେ ସେତେବେଳେ ମୁନି ଆଶୀର୍ବାଦ ଦେଇ କହିଲେ— "ପୁତ୍ରବତୀ ହୁଅ, ଚକ୍ରବର୍ତ୍ତୀର ଜନନୀ ହୁଅ । କିନ୍ତୁ ମୁନି ଧ୍ୟାନବଳରେ ବଡ଼ରାଣୀଙ୍କୁ ବିଷ ଦିଆଯାଇଥିବାର ଜାଣିପାରିଲେ । ପୁଣି ମହର୍ଷି ଔର୍ବ କହିଲେ—ଠିକ୍ ଅଛି । ଯେଉଁ ବସ୍ତୁ ପେଟରେ ଅଛି ତାହା ଜୀର୍ଣ୍ଣ ନ ହୋଇ ସେହିପରି ଥାଉ ।"

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! କିଛିକାଳ ପରେ ସ୍ୱର୍ଗତ ମହାରାଜ ବାହୁକଙ୍କ ପତ୍ନୀ ପୁତ୍ର ଜନ୍ମକଲେ । ପୁତ୍ର ସହିତ ସାନରାଣୀମାନେ ଦେଇଥିବା ବିଷ(ଗର) ମଧ୍ୟ ଗର୍ଭରୁ ବାହାରିଆସିଲା । ପୁତ୍ର ଗର ସହିତ ଜନ୍ମ ହୋଇଥିବାରୁ ମହାମୁନି ଔର୍ବ ଶିଶୁର ନାମ ରଖିଲେ ସଗର । ମୁନି ସାଗରଙ୍କର ଷୋଡ଼ଶ ସ୍ତୋତ୍ର ଜାତକର୍ମ, ନାମକର୍ମ ଆଦି ସଂସ୍କାର କଲେ । ଯଥା ସମୟରେ ସାଗର, ମୁନିଙ୍କଠାରୁ ବିଭିନ୍ନ ଶାସ୍ତ୍ର ଓ ଅସ୍ତ୍ରଶସ୍ତ୍ର ଶିକ୍ଷାଲାଭ କଲେ । ଧନୁର୍ବିଦ୍ୟାରେ ରାଜକୁମାର ସଗର ଥିଲେ ଅଦ୍ୱିତୀୟ । ସୈନ୍ୟ ସଂଗ୍ରହ କରି ସେ ଅପହୃତ ପିତୃରାଜ୍ୟ ପୁନରୁଦ୍ଧାର କଲେ । ଯେଉଁ ଶତ୍ରୁମାନେ ପିତାଙ୍କୁ ରାଜ୍ୟଚ୍ୟୁତ କରିଥିଲେ ସେମାନଙ୍କୁ ଜୀବନରେ ମାରିଦେବାପାଇଁ ସେ ସଂକଳ୍ପ କରିଥିଲେ । ସଗର ପ୍ରବଳ ପ୍ରତାପୀ ଥିବାରୁ ଶତ୍ରୁରାଜାମାନେ ଭୟଭୀତହୋଇ ପ୍ରାଣରକ୍ଷା ପାଇଁ ମୁନି ଔର୍ବଙ୍କ ପାଖକୁ ଗଲେ । ମୁନିଙ୍କ ପାଦତଳେ ପଡ଼ି ସମସ୍ତେ ଏକସ୍ୱରରେ ପ୍ରାଣ ରକ୍ଷା ପାଇଁ ପ୍ରାର୍ଥନା କଲେ ।

ଦୟାଳୁ ମୁନି କହିଲେ—ଆଚ୍ଛା, ତୁମେ ସବୁ ଆଉ ବ୍ୟସ୍ତ ହୁଅନାହିଁ । ମୁଁ ତାକୁ କହିଦେଉଛି । ମୁନି ରାଜକୁମାର ସଗରକୁ ଡାକି କହିଲେ—ଏମାନଙ୍କୁ ଛାଡ଼ିଦିଅ । ସଗର କଣ କରିବେ ଭାବି ପାରିଲେ ନାହିଁ । ଧର୍ମହୀନ, କ୍ରୂରକର୍ମା ଓ କପଟୀ ରାଜାମାନଙ୍କ ପ୍ରତି ତାଙ୍କ ମନରେ ଭୀଷଣ କ୍ରୋଧ ଜାତ ହୋଇଥିଲା । କିନ୍ତୁ ମୁନି ଔର୍ବଙ୍କ ଆଦେଶରେ ସଗର ସେମାନଙ୍କୁ ଛାଡ଼ିଦେଲେ ମଧ୍ୟ ବର୍ଣ୍ଣାଶ୍ରମଧର୍ମରୁ ବାହାର କରିଦେଲେ । କାରଣ ସେମାନଙ୍କ ପରି ବିଶ୍ୱାସଘାତକ ଓ ଦୁଷ୍ଟ ରାଜା ସମାଜରେ

ରହିଲେ ଲୋକମାନଙ୍କର ବିଶେଷ କ୍ଷତି କରିବେ । ପ୍ରତ୍ୟେକ ରାଜାଙ୍କ ପାଇଁ ନିର୍ଦ୍ଦିଷ୍ଟ ଚିହ୍ନର ବ୍ୟବସ୍ଥା କରାଗଲା, ଯାହାକୁ ଦେଖି ଲୋକେ ସେମାନଙ୍କୁ ବିଶ୍ବାସଘାତକ ଓ ଦେଶଦ୍ରୋହୀ ବୋଲି ଜାଣିପାରିବେ ।

ମହାରାଜ ସଗର ଏକ ନୀତି ନିର୍ଦ୍ଧାରଣ କଲେ । ସେଥିରେ ତାଳ, ଜଙ୍ଘ, ଯବନ, ଶକ, ହୈହୟ ଓ ବର୍ବର ଜାତିର ଲୋକଙ୍କୁ ବର୍ଣ୍ଣାଶ୍ରମଧାରାରୁ ବିଚ୍ୟୁତ କରାଗଲା । କାରଣ, ସେମାନେ ସମସ୍ତେ କ୍ଷତ୍ରିୟ ଥିଲେ ମଧ୍ଯ ଧର୍ମବିରୁଦ୍ଧ ଆଚରଣ କରୁଥିଲେ । ମହାରାଜଙ୍କ ଆଦେଶରେ ସେହି ସମାଜଚ୍ୟୁତ କ୍ଷତ୍ରିୟମାନଙ୍କ ପାଇଁ ନାନାବିଧ ଚିହ୍ନ ବା ସାଙ୍କେତିକ ପରିଚୟର ବ୍ୟବସ୍ଥା କରାଗଲା । କେତେକ ନିଶଦାଢ଼ୀ ରଖି ଲଣ୍ଡିତ ମସ୍ତକ ହେଲେ । କେତେକଙ୍କୁ ଶିଖା ଓ ସୂତ୍ରଧାରଣ କରିବାକୁ ନିଷେଧ କରାଗଲା । କେତେକ ମୁକ୍ତକେଶ ହୋଇ ରହିଲେ । କେତେକ ବେକରେ କନା ଖଣ୍ଡିଏ ବାନ୍ଧିଲେ ତ ଆଉ କେତେକ କୌପୀନ ଧାରଣ କଲେ । ଏହିପରି ନାନା ଚିହ୍ନରେ ଚିହ୍ନିତ ସେହି ରାଜାମାନେ ଧର୍ମବିହୀନ ପଞ୍ଚମବର୍ଣ୍ଣର ଲୋକ ରୂପେ ପରିଚିତ ହେଲେ ।"

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ମହାରାଜ ବାହୁକଙ୍କ ପୁତ୍ର ପ୍ରବଳ ପରାକ୍ରମୀ ମହାରାଜ ସଗର ବହୁ ଅଶ୍ବମେଧ ଯଜ୍ଞ କରିଥିଲେ । ତାଙ୍କରି ପୁତ୍ରମାନେ ପୃଥିବୀକୁ ଖୋଳିଥିଲେ । ତେଣୁ ସମୁଦ୍ରର ନାମ ସାଗର ।"

ମହାରାଜ ପରୀକ୍ଷିତ ପଚାରିଲେ—"ବ୍ରହ୍ମନ୍ ! ସଗରଙ୍କ ପୁତ୍ରମାନେ କାହିଁକି ପୃଥିବୀ ଖୋଳିଥିଲେ ଏବଂ ସମୁଦ୍ରର ନାମ ସାଗର କିପରି ହେଲା ସେକଥା କୁହନ୍ତୁ ।"

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ସଗର ପୁତ୍ରମାନଙ୍କର ପବିତ୍ର କାହାଣୀ କହୁଛି, ଆପଣ ମନଦେଇ ଶୁଣନ୍ତୁ ।"

## ଛପ୍ପୟ

ଭଯେ ବିଜୟ କେ ଭରକଭରୁକ କେ ବୃକ ତନ ବାହୁକ ।
ଶତ୍ରୁନ ଛୀନେଂୟା ରାଜ୍ୟ ଗୟେ ବନପୃଥିବୀ ପାଳକ ॥
ବାନମହଁ ନୃପତନୁ ତଜ୍ୟୋ ଗର୍ଭିନୀ ତନଙ୍କ ରାନୀ ।
ସୌତନୀ ଗର ଦୈ ଦୟୋ ସଗର ସୁତ ଜନମ୍ୟୋ ମାନୀ ॥
ଭୟେ ସଗର ଅତ ହୀ ବଲୀ, ଶତ୍ରୁନ କୋ ଶାସନ କର୍‌ୟୋ ।
ଦାନ ପୁଣ୍ୟ ମଖ ଅଧିକ ଲଖି ସୁରପତି ହୂଁ ତନ ତେଁ ଡରୟୋ ॥



# ମହାରାଜ ସଗରଙ୍କ ଅଶ୍ୱମେଧ ଯଜ୍ଞ

ଊର୍ବୋପଦ୍ଦଷ୍ଟଯୋଗେନ ହଶମାମ୍ନାନମୀଶ୍ୱରାମ୍
ତସ୍ୟୋତ୍ସୃଷ୍ଟଂ ପଶୁଂ ଯଜ୍ଞେ ଜହାରାଶ୍ୱଂ ପୁରନ୍ଦରଃ ॥
(ଭାଗ ୯ସ୍କ-୮ଅ-୮ ଶ୍ଳୋ)

## ଛପ୍ପୟ

ଦ୍ୱୈ ରାଣୀ ତନ ହତୀଁ ଏକ କେ ସୁତ ଅସମଞ୍ଜସ ।
ଦୂସର ସାଠ ସହସ୍ର ଜନେ ସୁତ ମାନୀ ନୀରସ ॥
ଅଶ୍ୱମେଧ ନୃପ ସଗର ଧୂମ ତେଁ ଯଜ୍ଞ ରଚ୍ୟୌ ।
ଭୟବଶ ସୁରପତ ଆଇ ଯଜ୍ଞ କୋ ଅଶ୍ୱ ଚୁରାୟୌ ॥
କପିଲାଶ୍ରମ ମହଁ ଇନ୍ଦ୍ର ନେ, ମଖ ହୟ ବାନ୍ଧ୍ୟୌ କପଟ କରି ।
ସାଠି ସହସ ସୁତ ଭୂମି ଖନ, ପହୁଁଚେ ନାନା ରୂପ ଧରି ॥

ଘୁଷୁରି ବର୍ଷରେ ତନ ଥର ଛୁଆ ଜନ୍ମ କରେ ଏବଂ ଥରକେ ଏକାଧିକ ଛୁଆ ଜନ୍ମ ହୁଅନ୍ତି ବୋଲି ଶୁଣାଯାଏ । ଅମେଧ ଖାଇ ଘୁଷୁରି ଜୀବନ ଧାରଣ କରେ । କେହି ତାକୁ ଛୁଅନ୍ତି ନାହିଁ । ସମସ୍ତେ ତାକୁ ଘୃଣା କରନ୍ତି । ଜନ୍ମହେବା ପରେ ସେଗୁଡ଼ିକ ମରନ୍ତି ଅଥବା ସେମାନଙ୍କୁ ମାରିଦିଆଯାଏ । ଅନ୍ୟପକ୍ଷରେ ଶୁଣାଯାଏ ସିଂହୀ ତା ଜୀବନ କାଳରେ ଗୋଟିଏ ମାତ୍ର ସିଂହକୁ ଜନ୍ମ ଦିଏ । ଜନ୍ମ ହେବାପରେ ସିଂହ ଶିଶୁଟି ମତ୍ତଗଜର ମସ୍ତକ ବିଦୀର୍ଣ୍ଣ କରିବାପାଇଁ ସାହସ କରେ । ମନକୁ ମନ ବଣରେ ସେ ରାଜାହୋଇ ରାଜତ୍ୱ କରେ ।

ଆକାଶରେ ଅସଂଖ୍ୟ ତାରା ଦେଖାଯାଆନ୍ତି । ଜୁଳୁ ଜୁଳୁ ହୋଇ ସେଗୁଡ଼ିକ ଜଳୁଥାନ୍ତି । ଅସଂଖ୍ୟ ତାରାର ଆଲୋକରେ ମଧ୍ୟ ଆକାଶର ଅନ୍ଧାର ଦୂର ହୁଏ ନାହିଁ ।

କିନ୍ତୁ ଏକମାତ୍ର ଚନ୍ଦ୍ର ଉଦୟହେବା ସଙ୍ଗେ ସଙ୍ଗେ ଆକାଶକୁ ଆଲୋକିତ କରିଦିଏ । ଚନ୍ଦ୍ର ଆଲୋକରେ ତାରାଗଣଙ୍କ ଜ୍ୟୋତି ମଉଳି ଯାଏ । ସେଥିପାଇଁ ମା' ଗୋଟିଏ ପୁଅକୁ ଜନ୍ମଦେଇ ପଛକେ ସେ ଯଦି ଦାନୀ, ଜ୍ଞାନୀ, ଧାର୍ମିକ, ବୀର ହୁଏ, ତେବେ ମାତା ପିତାଙ୍କ ଜୀବନ ସାର୍ଥକ ହୁଏ । କିନ୍ତୁ ପୁଅ ଯଦି ପଶୁ ପକ୍ଷୀଙ୍କ ପରି କେବଳ ଆହାର, ନିଦ୍ରାରେ ଜୀବନ କଟାଇବ ତେବେ ସେପରି ହଜାରେ ପୁଅଙ୍କୁ ଜନ୍ମ ଦେଇଥିବା ପିତା ମାତା ଓ ଘୁଷୁରି ମଧ୍ୟରେ ପାର୍ଥକ୍ୟ କଣ ?

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ବାହୁକ ପୁତ୍ର ମହାରାଜ ସଗରଙ୍କ ଜନ୍ମ କଥା କହିଛି । ଏବେ ତାଙ୍କ ଜୀବନ କାହାଣୀ କହୁଛି, ଆପଣ ମନଦେଇ ଶୁଣନ୍ତୁ । ମହାରାଜ ସଗର ଅପହୃତ ପିତୃରାଜ୍ୟ ଉଦ୍ଧାର କରି ଚକ୍ରବର୍ତ୍ତୀ ସମ୍ରାଟ୍ ହେଲେ ଏବଂ ବିବାହ କଲେ । କେଶିନୀ ଓ ସୁମତି ନାମରେ ତାଙ୍କର ଦୁଇ ରାଣୀ ଥିଲେ । ଦୁଇ ରାଣୀଙ୍କ ମଧ୍ୟରୁ କାହାରହେଲେ ସନ୍ତାନ ନ ହେବାରୁ ରାଜା ଓ ରାଣୀ ଚିନ୍ତିତ ହୋଇ ପଡ଼ିଲେ । ଏହିପରି ଅନେକ ଦିନ ଅତିବାହିତ ହେଲା । ଦିନେ ମହାରାଜାଙ୍କ ଗୁରୁ ଔର୍ବ ଆସି ପହଞ୍ଚିଲେ । ଦୁଇ ରାଣୀ ମୁନିଙ୍କ ପାଦତଳେ ପ୍ରଣାମ କଲେ ଏବଂ ସନ୍ତାନ ଅଭିଳାଷରେ ମୁନିଙ୍କ ପାଦଧରି ନିବେଦନ କଲେ ।"

ମୁନି ରାଣୀ ଦୁହିଁଙ୍କର ମନୋଭାବ ବୁଝିପାରି କହିଲେ—"ମୁଁ ଦୁଇଟି ବର ଦେବି । ଏକରେ ବଂଶରକ୍ଷାକାରୀ ଗୋଟିଏ ପୁତ୍ର ଓ ଦୁଇରେ ଷାଠିଏ ହଜାର ପୁତ୍ର । ଏହି ଦୁଇଟି ବର ମଧ୍ୟରୁ ତୁମେ ଦୁହେଁ କିଏ କେଉଁ ବର ନେବ କୁହ ।"

ବଡ଼ରାଣୀ କେଶିନୀ କହିଲେ—"ପ୍ରଭୋ ! ମୋତେ ବଂଶରକ୍ଷାକାରୀ ଏକମାତ୍ର ପୁତ୍ର ଦିଅନ୍ତୁ ।"

ଦ୍ୱିତୀୟା ରାଣୀ ସୁମତି କହିଲେ—"ମୋତେ ଷାଠିଏ ସହସ୍ର ପୁତ୍ର ଦିଅନ୍ତୁ ଯାହାଦ୍ୱାରା ମୁଁ ବହୁପୁତ୍ରର ଜନନୀ ରୂପେ ପରିଗଣିତା ହେବି ?"

ମୁନି କହିଲେ—"ତଥାସ୍ତୁ ! ତୁମ ଦୁହିଁଙ୍କର ଅଭିଳାଷ ପୂରଣ ହେଉ ।" ଏହାପରେ ମୁନି ରାଜାଙ୍କ ପୂଜା ଓ ଅଭ୍ୟର୍ଥନା ସ୍ୱୀକାର କରି ନିଜ ଆଶ୍ରମକୁ ଫେରିଗଲେ । ଯଥାସମୟରେ ବଡ଼ ରାଣୀଙ୍କ ଗର୍ଭରୁ ପୁଅଟିଏ ଜନ୍ମ ହେଲା । ପିଲାଟି ଜନ୍ମ ହେବା ପରେ ପରେ ପାଗଳଙ୍କ ପରି ବ୍ୟବହାର କଲା । ଏଣୁ ତେଣୁ କଥା କହିବାକୁ ଲାଗିଲା । ଗୋଟିଏ ବିଷୟରେ ପଚାରିଲେ ସେ ଆଉ ଏକ ବିଷୟରେ ଉତ୍ତର ଦେଲା । ତାର ଏହି ପାଗଳାମି ଦେଖି ଲୋକେ ତାକୁ ଅସମଞ୍ଜସ ନାମରେ ଡାକିଲେ ।

ଦ୍ୱିତୀୟା ରାଣୀ ସୁମତୀଙ୍କ ଗର୍ଭରୁ ମାଂସପିଣ୍ଡ ଏକ ଓ ... ନଥା ଲାଉତୁମ୍ବା ଭୂମିଷ୍ଠ ହେଲା । ମୁନିଙ୍କ ଆଦେଶ ଅନୁଯାୟୀ ଷାଠିଏ ହଜାର ଘିଅ କଳସୀ ଅଣାଗଲା । ଧାଇ ସେହି ତୁମ୍ବାରୁ ଗୋଟିଏ ଗୋଟିଏ ମଞ୍ଜି ବାହାର କରି ପ୍ରତି କଳସୀରେ ରଖିଲା । କିଛିକାଳ ପରେ ସେହି କଳସୀଗୁଡ଼ିକରୁ ପୁତ୍ର ସନ୍ତାନମାନେ ବାହାରିଲେ । ସଗରଙ୍କର ସେହି ଷାଠିଏ ହଜାର ପୁଅ ସୁଗଠିତ । ହୃଷ୍ଟ ପୁଷ୍ଟ ଓ ଦୀର୍ଘଦେହ ବିଶିଷ୍ଟ ହୋଇଥିଲେ । ସେମାନେ ଆକାଶରେ ଉଡ଼ିପାରୁଥିଲେ, ଜଳରେ ଚାଲି ଯାଉଥିଲେ, ପର୍ବତକୁ ଚକାଚୁର ଦେଉଥିଲେ ଏବଂ ବାହୁବଳରେ ସମସ୍ତଙ୍କୁ ଭୟଭୀତ କରି ରଖିଥିଲେ । ନୌକାରେ ହାତୀ ଚଢ଼ିଲେ ତାହା ଯେପରି ଟଳଟଳ ହୁଏ ସେହିପରି ସଗରଙ୍କ ପୁତ୍ରମାନେ ଚାଲିବାବେଳେ ପୃଥିବୀ ଦୋହଲି ଯାଉଥିଲା । ସେମାନଙ୍କ ବ୍ୟବହାରରେ ପ୍ରଜାମାନେ ବଡ଼ ଦୁଃଖରେ କାଳ କାଟୁଥିଲେ । ରାଜାଙ୍କର ସେମାନଙ୍କୁ ଆଟକ କରିବା କିଛି ଉପାୟ ନ ଥିଲା । କାରଣ ସେମାନେ ଏପରି ବଳଶାଳୀ ଥିଲେ ଯେ ସେମାନଙ୍କୁ ଦେଖିବାମାତ୍ରେ ଦେବତାମାନେ ବି ଭୟରେ ଏଣେତେଣେ ପଳାଇ ଯାଉଥିଲେ । ସେମାନଙ୍କ ସହିତ ଯୁଦ୍ଧ କରିବାପାଇଁ କେହି ସାହସ କରୁ ନଥିଲେ ।

ମହାରାଜ ସଗରଙ୍କ ବଡ଼ ପୁଅ ଅସମଞ୍ଜସ ଥିଲା ପାଗଳ । ଯୁବକ ହେବା-ପରେ ମଧ୍ୟ ସେ ବୁଦ୍ଧିହୀନଙ୍କ ପରି ଆଚରଣ କରୁଥିଲା । ବିବାହ କରିଦେଲେ କାଳେ ପୁଅର ମନ ପରିବର୍ତ୍ତନ ହେବବୋଲି ଭାବି ମହାରାଜ ସଗର ଅସମଞ୍ଜସଙ୍କୁ ବିବାହ କରାଇଦେଲେ । କିନ୍ତୁ ଫଳ କିଛି ହେଲା ନାହିଁ । କାରଣ—ଚେଇଁ ଶୋଇଛି ଯେ, ତାକୁ ଉଠାଇବ କିଏ ॥ ଯେ ଆଖି ବୁଜି ଶୋଇବାର ଛଳନା କରୁଛି ତାକୁ କିଏ ଉଠାଇ ପାରିବ ? ପ୍ରକୃତରେ ଅସମଞ୍ଜସ ପାଗଳ ନ ଥିଲେ । ସେ ଥିଲେ ପୂର୍ବଜନ୍ମର ଜଣେ ଯୋଗଭ୍ରଷ୍ଟ ଯୋଗୀ । କୌଣସି କାରଣରୁ ତାଙ୍କୁ ଜନ୍ମ ହେବାକୁ ପଡ଼ିଲା । ସେ ଭାବିଲେ, ଯଦି ମୁଁ ବୁଦ୍ଧିମାନର କାର୍ଯ୍ୟକରିବି ତେବେ ଏମାନେ ମୋତେ ରାଜା କରି ଦେବେ । ରାଜକାର୍ଯ୍ୟରେ ପଶିଲେ ମୋର ଅଧଃ ପତନ ଘଟିବା ଅସମ୍ଭବ ନୁହେଁ । ସେଥିପାଇଁ ସେ ପାଗଳର ଅଭିନୟ କରୁଥିଲେ । କିନ୍ତୁ ଅଂଶୁମାନ୍ ନାମକ ପୁତ୍ର ଜନ୍ମ ହେବାପରେ ତାଙ୍କର ବୈରାଗ୍ୟ ବଢ଼ିଗଲା । ସେ ଭାବିଲେ—ପ୍ରଭୁ କରନ୍ତୁ, ମୁଁ ଏହି ମାୟାବନ୍ଧନରେ ପଡ଼ି ନ ଯାଏ । ପିତାମାତାଙ୍କୁ ନ କହି ଗୃହତ୍ୟାଗ କରିବା ଉଚିତ ନୁହେଁ । ସେମାନଙ୍କୁ କହିଲେ ଯିବାକୁ ଅନୁମତି ମିଳିବ ନାହିଁ । ସେଥିପାଇଁ ନିଜର ପାଗଳାମିକୁ ସେ ଆହୁରି ବଢ଼ାଇଦେଲେ । ସେ ବୁଲି ବୁଲି ସରଯୂ ନଦୀ କୂଳରେ ଖେଳୁଥିବା ଛୋଟ ପିଲାଙ୍କୁ ଟେକି ନଦୀଭିତରକୁ ଫିଙ୍ଗି ଦେଲେ ଏବଂ ପିଲାଗୁଡ଼ାକ ବୁଡ଼ିଯାଉଥିବାର ଦେଖି ତାଳିମାରି ହସିବାକୁ ଲାଗିଲେ । ଏପରି ଅମାନୁଷିକ କାଣ୍ଡ

ଦେଖି ପ୍ରଜାମାନେ ମିଳିତ ହୋଇ ରାଜାଙ୍କ ପାଖରେ ଯାଇ କହିଲେ—ରାଜନ୍ ! ଆପଣ ନିଜ ପୁଅକୁ ବା ଆମକୁ ରକ୍ଷା କରନ୍ତୁ । ଏପରି ଦୁର୍ଦ୍ଦାନ୍ତ ରାଜକୁମାର ଆମେ ଦେଖି ନାହୁଁ । ଯେଉଁ ରାଜକୁମାର ପ୍ରଜାଙ୍କ ପିଲାମାନଙ୍କୁ ନିର୍ମମ ବ୍ୟାଧ ପରି ଜଳରେ ବୁଡ଼ାଇ ମାରି ଦେଉଛି ସେ ରାଜା ହୋଇ ପ୍ରଜାଙ୍କୁ କିପରି ରକ୍ଷା କରିପାରିବ ?

ପ୍ରଜାମାନଙ୍କର ଅଭିଯୋଗ ଶୁଣି ରାଜା ଖୁବ ଦୁଃଖିତ ହେଲେ । ସେ ରାଗି-ଯାଇ ଅସମଞ୍ଜସଙ୍କୁ ଡକାଇ କହିଲେ—"ତୁ ବଡ଼ ଦୁଷ୍ଟ ହୋଇଗଲୁଣି । ମୋର ପ୍ରଜାମାନଙ୍କ ଛୁଆ ପିଲଙ୍କୁ ତୁ ହତ୍ୟା କରୁଛୁ ! ତୁ ଏଇ ମୁହୂର୍ତ୍ତରେ ମୋ' ରାଜ୍ୟରୁ ବାହାରିଯା । ଆଉ କେବେହେଲେ ତୋ'ର ମୁହଁ ମୁଁ ଦେଖିବାପାଇଁ ଚାହୁଁ ନାହିଁ ।"

କୁମାର ଅସମଞ୍ଜସ ତାହାହିଁ ଚାହୁଁଥିଲେ । ତେଣୁ ମନେ ମନେ ଖୁସିହୋଇ ସେ ଅଯୋଧ୍ୟାପୁରୀ ପରିତ୍ୟାଗ କଲେ । ଯିବାବେଳେ ସେ ନିଜ ଯୋଗଶକ୍ତିର ଅପୂର୍ବ ପ୍ରଭାବ ଦେଖାଇ ଦେଇଗଲେ । ଯେଉଁ ପିଲାମାନଙ୍କୁ ସେ ନଦୀଗର୍ଭକୁ ପକାଇ ଦେଇଥିଲେ ସମସ୍ତଙ୍କୁ ଯୋଗ ବଳରେ ଉପରକୁ ନେଇ ଆସିଲେ ଓ ଜୀବନ ଦାନ କଲେ । ପିଲାମାନେ ହସି ହସି ଯେତେବେଳେ ଘରେ ପହଞ୍ଚିଲେ ସେତେବେଳେ ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ । ସେମାନେ ସମସ୍ତେ ମିଳିତହୋଇ ମହାରାଜଙ୍କ ପାଖରେ ପହଞ୍ଚି କହିଲେ - "ମହାରାଜ ! ଆମର ବଡ଼ ଭୁଲ ହୋଇଗଲା । ରାଜକୁମାର ଜଣେ ପ୍ରସିଦ୍ଧ ଯୋଗୀ । ଯେତେ ପିଲଙ୍କୁ ସେ ପାଣିରେ ବୁଡ଼ାଇ ମାରି ଦେଇଥିଲେ ସମସ୍ତେ ଜୀବନ ଲାଭ କରି ନିଜ ନିଜ ଘରକୁ ଫେରି ଆସିଛନ୍ତି ।"

ଏହା ଶୁଣି ରାଜାଙ୍କ ମନରେ ଘୋର ଦୁଃଖ ଜାତ ହେଲା । କିନ୍ତୁ ଏବେ ଦୁଃଖ କଲେ ବା ଅନୁତପ୍ତ ହେଲେ ଲାଭ କଣ ? ଅସମଞ୍ଜସ ଚାଲି ଯାଇଥିଲେ । ମହାରାଜ ସଗର ଅଂଶୁମାନଙ୍କୁ ପୁତ୍ରପରି ପାଳନକଲେ । ସଗର ଅଂଶୁମାନ୍ ମହାରାଜଙ୍କ ଆଦେଶପାଳନ କରୁଥିଲେ ଏବଂ ସଦାସ୍ନେହଭାବରେ ସେବା କରିବାକୁ ଲାଗିଲେ ।

ମହାରାଜ ବଡ଼ଧରଣର ଏକ ଅଶ୍ୱମେଧ ଯଜ୍ଞ ଆରମ୍ଭ କଲେ । ଯଥାବିଧି ପୂଜାପାଠ ପରେ ସର୍ବଲକ୍ଷଣ ସମ୍ପନ୍ନ ଯଜ୍ଞୀୟ ଅଶ୍ୱକୁ ଛାଡ଼ି ଦିଆଗଲା । ଷାଠିଏ ହଜାର ପୁତ୍ରଙ୍କୁ ଡକାଇ ମହାରାଜ ଆଦେଶ ଦେଲେ—"ତୁମ୍ଭେମାନେ ଏ ଯଜ୍ଞୀୟ ଅଶ୍ୱକୁ ଅନୁସରଣ କର । ଯେଉଁ ରାଜା ଅଶ୍ୱକୁ ଅଟକାଇବ ତା' ସହିତ ଯୁଦ୍ଧ କରି ଅଶ୍ୱକୁ ନେଇ ଆସିବ । ସଗରଙ୍କ ପୁତ୍ରମାନେ ବୀରଦର୍ପରେ ଗର୍ଜନ ତର୍ଜନକରି ଅଶ୍ୱର ପଛେ ପଛେ ଅନୁଗମନ କଲେ । ଅଶ୍ୱଟି ଇଚ୍ଛା ଅନୁସାରେ ଅନେକ ସ୍ଥାନ ବୁଲି ବୁଲି

ଆଟେଇଲା । ସଗରଙ୍କ ପୁତ୍ରମାନଙ୍କୁ ଦେଖି କେହି ରାଜା ଅଶ୍ୱକୁ ଧରିବାପାଇଁ ସାହସ କଲେ ନାହିଁ । ତେଣୁ ରାଜପୁତ୍ରମାନଙ୍କୁ ଯୁଦ୍ଧ କରିବାର ଅବସର ମିଳିଲା ନାହିଁ ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଇନ୍ଦ୍ର ତ ବଡ଼ ଈର୍ଷା ପରାୟଣ । ସେ କାହାର ଯଶ କୀର୍ତ୍ତି ବଢ଼ୁଥିବାର ଦେଖି ସହିପାରନ୍ତିନି । ତେଣୁ ମହାରାଜ ସଗରଙ୍କ ଯଜ୍ଞରେ ବିଘ୍ନ ସୃଷ୍ଟି କରିବାପାଇଁ ଇନ୍ଦ୍ର ମନେ ମନେ ସ୍ଥିର କଲେ । ସେ ଗୁପ୍ତ-ବେଶରେ ଆସି ମହାରାଜଙ୍କ ଯଜ୍ଞ ଅଶ୍ୱକୁ ଚୋରାଇ ନେଇଗଲେ । ରାଜକୁମାରମାନେ ଖୋଜି ଖୋଜି ଅଶ୍ୱକୁ ନ ପାଇ ନିରାଶ ହେଲେ । ଘୋଡ଼ାଟା ପୃଥିବୀରେ ଥିଲେ ସିନା ମିଳନ୍ତା । ଇନ୍ଦ୍ର ତ ଘୋଡ଼ାଟିକୁ ନେଇ ପାତାଳ ପୁରରେ ତପସ୍ୟା କରୁଥିବା ଭଗବାନ କପିଳଙ୍କ ଆଶ୍ରମରେ ବାନ୍ଧିଦେଇ ସ୍ୱର୍ଗକୁ ଫେରିଯାଇଥିଲେ ।"

ଯଜ୍ଞ ଅଶ୍ୱ ଚୋରି ହୋଇ ଯାଇଥିବାର ଶୁଣି ମହାରାଜ ସଗର ରାଗିଯାଇ କହିଲେ "ତୁମେ ସବୁ ମୂର୍ଖ, ଦାୟିତ୍ୱହୀନ । ଅଶ୍ୱକୁ ରକ୍ଷାକରିବାପାଇଁ ମୁଁ ତୁମ୍ଭ-ମାନଙ୍କୁ ଦାୟିତ୍ୱ ଦେଇଥିଲି । ତୁମେ ଷାଠିଏ ହଜାର ହୋଇ ମଧ୍ୟ ଗୋଟିଏ ଅଶ୍ୱକୁ ରକ୍ଷାକରି ପାରିଲନାହିଁ । ଯାଅ, ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ବା ଅନ୍ୟ ଯେଉଁଠି ଅଶ୍ୱଥିବ ତାକୁ ଖୋଜିକରି ଆଣ । ଅଶ୍ୱ ବିନା ଯଜ୍ଞରେ ପୂର୍ଣ୍ଣାହୁତି କପରି ଦିଆଯିବ ?"

ପିତାଙ୍କର ଆଦେଶ ଅନୁସାରେ ରାଜକୁମାରମାନେ କ୍ରୋଧାନ୍ୱିତ ହୋଇ ବାହାରି ପଡ଼ିଲେ । ପ୍ରଥମେ ପୃଥିବୀର ସବୁସ୍ଥାନ ଖୋଜିଲେ । କିନ୍ତୁ ପୃଥିବୀରେ ଅଶ୍ୱଟିକୁ କେଉଁଠି ନ ପାଇବାରୁ ସେମାନେ ପୃଥିବୀ ଖୋଳିବା ଆରମ୍ଭ କରିଦେଲେ । ମହାରାଜ ସଗରଙ୍କ ପୂର୍ବରୁ ଭାରତବର୍ଷ ଅନ୍ୟ ଆଠଟିବର୍ଷ ସହିତ ଲାଗି ରହିଥିଲା । ଇଲାବୃତ୍ତ ବର୍ଷ ମଝିରେ ଥିଲା ଓ ଅନ୍ୟ ଆଠଟିଯାକ ବର୍ଷ ତା' ଚାରିପାଖରେ ଘେରି ରହିଥିଲା । ତେଣୁ ଲୋକେ ସେତେବେଳେ ଭାରତରୁ ଇଲାବୃତ୍ତ, ହରିବର୍ଷ ଆଦି ବର୍ଷକୁ ଯାଉଥିଲେ । ସଗରଙ୍କ ପୁତ୍ରମାନେ ଯଜ୍ଞ ଅଶ୍ୱ ଖୋଜିବା ଉଦ୍ଦେଶ୍ୟରେ ଭାରତର ଚାରିପାଖ ଖୋଳି ପକାଇଲେ । ଫଳରେ ଭାରତବର୍ଷ ଅନ୍ୟାନ୍ୟ ବର୍ଷଠାରୁ ଅଲଗା ହୋଇଗଲା । ଖୋଳି ପକାଇବାଦ୍ୱାରା ଭାରତବର୍ଷର ଆଠଟି ଉପଦ୍ୱୀପ ସୃଷ୍ଟି ହେଲା । କନ୍ୟାକୁମାରୀ-ଠାରୁ ହିମାଳୟ ପର୍ଯ୍ୟନ୍ତ ଭୂମିରେ ବର୍ଣ୍ଣାଶ୍ରମ ଆର୍ଯ୍ୟମାନେ ରହିଲେ । ତେଣୁ ଏହାକୁ ଭାରତ କୁହାଗଲା । ସଗର ପୁତ୍ରମାନଙ୍କ ଭୂମି ଖୋଦନ ଫଳରେ ଅନ୍ୟ ଉପଦ୍ୱୀପ ଗୁଡ଼ିକର ସ୍ଥିତି ଏପାଖେ ସେପାଖେ ହୋଇଗଲା । ସେମାନେ ମାଟି ଖୋଳୁ ଖୋଳୁ ପୂର୍ବୋତ୍ତର ଦିଗରେ ଅବସ୍ଥିତ କପିଳ ମୁନିଙ୍କ ଆଶ୍ରମରେ ପହଞ୍ଚି ଦେଖିଲେ ଯଜ୍ଞର ଅଶ୍ୱଟି ସେଇଠି ବନ୍ଧା ହୋଇଛି ।

## ଛପ୍ପୟ

ସପ୍ତଦ୍ୱୀପ କେ ମଧ୍ୟ ଦ୍ୱୀପ ଜମ୍ବୁ ଅତି ପାବନ ।
ତାମେଂ ନହିଁ ନବ ବର୍ଷ ଇଳାବୃତ୍ତ ମଧ୍ୟ ସୁହାବନ ।।
କମଳ କର୍ଣ୍ଣିକା ସରସ ଇଳାବୃତ୍ତ କୁଁ ପହ୍ଚାନୋ ।
ଅନ୍ୟ ଆଠଂ କୋ ବର୍ଷ କମଳଦଳ ସମ ତୁମ୍ ମାନୋ ।।
ପହିଲେ ନୌଉ ଏକ ରହେ, ସଗର ସୁତନ ଖୋଦୀ ମହୀ ।
ତାତେଁ ଭାରତ ଭୂମି ଚହୁଁ, ଦିଶି ତେଁ ହ୍ୱୈ ଗଇ ଜଳ ମଈ ।।



# ସଗର ସୁତମାନଙ୍କର ମୃତ୍ୟୁ

ନ ସାଧୁବାଦୋ ମୁନିକୋପଭର୍ଜିତା
ନୃପେନ୍ଦ୍ର ପୁତ୍ରା ଇତି ସତ୍ତ୍ୱଧାମନି ।।
କଥଂ ତମୋ ରୋଷମୟଂ ବିଭାବ୍ୟତେ
ଜଗତ୍ ପବିତ୍ରାତ୍ମନି ଖେ ରଜୋ ଭୁବଃ ।।

(ଭାଗ—୯ସ୍କ-୮ଅ-୧୩ଶ୍ଳୋ)

## ଛପ୍ପୟ

କପିଳାଶ୍ରମ ପେ ଅଶ୍ୱ ନିରଖି ନୃପସୁତ ହରଷାୟେ ।
କୋଳାହଳ ଅତି କରୟେ କପିଳ ମୁନି ଚୋର ବତାୟେ ।।
ଇନ୍ଦ୍ର ରଚେ ୟା ଷଡଯନ୍ତ୍ର ବୁଦ୍ଧି ନୃପସୁତନ ବିଗାରୀ ।
ମୁନି ମାରନ ହିତ ଚଲେ ଦେହୁଁ ଗିନ ଗିନ କୌଁ ଗାରୀ ।।
କୋଳାହଳ ମୁନି ସହଜହୀ ନେତ୍ର କପିଳ କେ ଖୁଲି ଗୟେ ।
ଦୃଷ୍ଟି ପରତ ନିଜ ପାପ ତେଁ ସଗର ପୁତ୍ର ସବ ମରିଗୟେ ।।

ଥରେ ଜଣେ ଦୁର୍ବଳ ଲୋକ ପରିସ୍ରା କରୁଥାଏ । ଏହି ସମୟରେ ଜଣେ ତଗଡ଼ା ଦୁଷ୍ଟଲୋକ ଆସିଲା । ପରିସ୍ରା କରୁଥିବା ଲୋକଟିକୁ ଦେଖି ସେ ଭାବିଲା—ଏ ଲୋକଟା ଅତି ଦୁର୍ବଳ । ଏହା ସହିତ ମଜା କରିବା । ଏହା ଭାବି ସେ ଦୁର୍ବଳ ଲୋକକୁ ଖୁବ୍ ଜୋର ଏକ ଧକ୍କା ମାରିଲା । ଧକ୍କା ଖାଇ ପରିସ୍ରା କରୁଥିବା ଲୋକଟି ମୁହଁମାଡ଼ି ତଳେ ପଡ଼ିଗଲା । ଏହା ଦେଖି ଦୁଷ୍ଟ ଲୋକଟି ଖୁବ୍ ହସିଲା । ପରିସ୍ରା କରୁଥିବା ଲୋକଟି ଦୁର୍ବଳ ହେଲେ ମଧ୍ୟ ବୁଦ୍ଧିମାନ ଥିଲା । ସେ ଭାବିଲା— ଏହା ଉପରେ ରାଗିଲେ ବି ମୁଁ ଜିତିପାରିବି ନାହିଁ । ସେଥିପାଇଁ ସେ ଦୁଇଟି ଟଙ୍କା ତା' ହାତକୁ ବଢ଼ାଇଦେଇ ନମସ୍କାର କଲା ଓ ଚାଲିଗଲା ।

ଏହି ଘଟଣାରେ ଦୁଷ୍ଟଲୋକଟି ଖୁବ୍ ଖୁସି ହୋଇଗଲା । ସେ ଭାବିଲା— ଆସ୍ତୁ କରିବାର ଏହା ଏକ ଭଲବାଟ । ତେଣୁ ସେ ଯେଉଁଠି ଯାହାକୁ ପଛସ୍ତ୍ରା ବସି- ଥିବାର ଦେଖିଲା ତାକୁ ଯାଇ ଧକ୍କା ମାରିଲା, ଆଉ କହିଲା—ବାହାର କର ଦୁଇ- ଟଙ୍କା । କେହି କେହି ଭୟରେ ଟଙ୍କାଦେଲେ ତ କେତେକ ଦୌଡ଼ି ପଳାଇ- ଗଲେ । ଦିନେ ସେ ନିଜଠାରୁ ବଳୁଆ ଜଣେ ଲୋକକୁ ଧକ୍କା ମାରିଲା । ସେ ଲୋକଟି ରାଗିଯାଇ ଧକ୍କା ଦେଇଥିବା ଲୋକକୁ ଏମିତ ଛେଚି ଛେଚିଲା ଯେ ତା'ର ହାଡ଼- ଗୋଡ଼ ଚୂନା ହୋଇଗଲାପରି ଅବସ୍ଥା ହେଲା । ସେହି ଦିନଠାରୁ ଦୁଷ୍ଟଲୋକଟି ତା'ର ବଦଅଭ୍ୟାସ ଛାଡ଼ିଦେଲା । ସାରକଥା ହେଉଛି, କିଛିକାଳ ପାଇଁ ଦୁର୍ବଳ ଉପରେ ଅତ୍ୟାଚାର କରାଯାଇପାରେ । ଅଧିକ ବଳୁଆ ଲୋକ ଆସିଗଲେ ନିଜର ସବୁ ଅଭିମାନ ଦୂର ହୋଇଯିବ । ଏ ସଂସାରରେ ବଳୁଆଠାରୁ ବଳୁଆ, ଧନୀଠାରୁ ଧନୀ, ଜ୍ଞାନୀଠାରୁ ଜ୍ଞାନୀଲୋକ ଅଛନ୍ତି, ତାହା ସମସ୍ତେ ମନେରଖିବା ଉଚିତ ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ସଗରଙ୍କର ଷାଠିଏ ହଜାର ପୁଅ ଯେତେବେଳେ କପିଳ ମୁନିଙ୍କ ଆଶ୍ରମରେ ନିଜ ପିତାଙ୍କ ଯଜ୍ଞୀୟ ଅଶ୍ୱ ବନ୍ଧା ହୋଇ- ଥିବାର ଦେଖିଲେ ସେତେବେଳେ କ୍ରୋଧରେ ଅସ୍ଥିର ହୋଇପଡ଼ିଲେ । ଦେବରାଜ ଇନ୍ଦ୍ରଙ୍କ ମାୟାହେତୁ ସେମାନଙ୍କର ବୁଦ୍ଧି, ବିବେକ ନଷ୍ଟ ହୋଇଯାଇଥିଲା । ସେମାନେ ଭାବିଲେ ଏହି ଲୋକଟା ହେଉଛି ଚୋର । ଘୋଡ଼ା ଚୋରିକରି ଆଖି ମିଛରେ ସମାଧିରେ ବସିଛି । ସେମାନେ ସମସ୍ତେ ଚୋର ଚୋର ବୋଲି ଚିତ୍କାର କରି ଭଗବାନ୍ କପିଳଙ୍କ ଆଡ଼କୁ ଦୌଡ଼ିଲେ । ପାଟିଗୁଣ୍ଡରେ କପିଳଙ୍କ ସମାଧି ଭାଙ୍ଗି- ଗଲା । ସେ ଆଖିଖୋଲି ଚାହିଁବାମାତ୍ରେ ସଗରଙ୍କ ଷାଠିଏ ହଜାର ପୁତ୍ର ଭସ୍ମ ହୋଇଗଲେ ।"

ଏହା ଶୁଣି ମହାରାଜ ପରୀକ୍ଷିତ ପଚାରିଲେ—"ବ୍ରହ୍ମନ୍ ! ଭଗବାନ କପିଳ- ଥିଲେ ଜ୍ଞାନାବତାର । ସେ କ୍ରୋଧାନ୍ୱିତ ହୋଇ ଏକ ଛୋଟ ଅପରାଧପାଇଁ ଷାଠିଏ ହଜାର ରାଜକୁମାରଙ୍କୁ କାହିଁକି ଦଗ୍ଧ କରିଦେଲେ ?"

ଶ୍ରୀ ଶୁକଦେବ ଉତ୍ତର ଦେବାକୁଯାଇ କହିଲେ—"ରାଜନ୍ ! ସଗରଙ୍କ ପୁତ୍ରମାନେ ମୁନିଙ୍କ ଶାପରେ ଦଗ୍ଧହୋଇ ନଥିଲେ । ସେମାନେ ଆପେ ଆପେ ଭସ୍ମୀଭୂତ ହୋଇଯାଇଥିଲେ । ଆପଣ ଦେଖନ୍ତୁ ସେ ସାକ୍ଷାତ ସତ୍ତ୍ୱସ୍ୱରୂପ ଓ ଜ୍ଞାନର ଅବତାର ତାଙ୍କର କ୍ରୋଧଆସିବ କେଉଁଠୁ ? ସଗର ପୁତ୍ରମାନେ ସ୍ୱକୃତ ପାପହେତୁ ମୃତ୍ୟୁବରଣ କରିଥିଲେ । ଭଗବାନଙ୍କ ଦୃଷ୍ଟି ପଡ଼ିବାମାତ୍ରେ ସେମାନଙ୍କର ପାପଘଟ ପୂର୍ଣ୍ଣହୋଇ ଯାଇଥିଲା ।"

ମହାରାଜ ପରୀକ୍ଷିତ କହିଲେ—"ପ୍ରଭୋ ! ଯେ ସର୍ବଦା ପ୍ରତିକୂଳ ଆଚରଣ-କରେ ସେପରି ଶତ୍ରୁଙ୍କୁ ଦେଖିବାମାତ୍ରେ କ୍ରୋଧାନ୍ୱିତ ହେବା ସ୍ୱାଭାବିକ । ତେଣୁ ସଗରଙ୍କ ପୁତ୍ରମାନେ କ୍ରୋଧାନ୍ୱିତହୋଇ ଦୌଡ଼ି ଆସୁଥିବାର ଦେଖି ସମ୍ଭବତଃ ଭଗବାନ୍ କପିଳଙ୍କ ମନରେ କ୍ରୋଧଜାତ ହୋଇଥିଲା ।

ଏହାଶୁଣି ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଅଜ୍ଞାନତା ହେତୁ କ୍ରୋଧ ଜାତହୁଏ । ଯେ ସାଂଖ୍ୟଦର୍ଶନର ସ୍ରଷ୍ଟା ପରମାତ୍ମା ସ୍ୱରୂପ ସର୍ବଜ୍ଞ ଭଗବାନ୍ ସେହି କପିଳଙ୍କ ପାଖରେ ପର ଆପଣାର ଅନୁକୂଳ ପ୍ରତିକୂଳ, ଶତ୍ରୁ ମିତ୍ର ଏପରି ଭେଦଭାବ ଆସିବ କିପରି ? ତେଣୁ କପିଳ ମୁନିଙ୍କ କ୍ରୋଧାଗ୍ନିରେ ସଗର ପୁତ୍ରମାନେ ଭସ୍ମୀଭୂତ ହେଲେବୋଲି କହିବା ଉଚିତ ନୁହେଁ । ସେମାନେ ସ୍ୱକୃତ ପାପହେତୁ ଯଥା ସମୟରେ ନିଜର ଶରୀରଜାତ ଅଗ୍ନିରେ ଜଳି ଯାଇଥିଲେ ।

ସଗରପୁତ୍ରମାନେ ଭସ୍ମ ହୋଇଯିବାପରେ ରାଜାଙ୍କ ଯଜ୍ଞ ଅଶ୍ୱ ସେଇଠି ବନ୍ଧାହୋଇ ରହିଥାଏ । ମହାମୁନି ପୁଣି ଧ୍ୟାନମଗ୍ନ ହୋଇଗଲେ । ମହାରାଜ ସଗର କିଛି ଜାଣିପାରିଲେ ନାହିଁ । ବହୁଦିନ ଅପେକ୍ଷା କରିବା ପରେ ମଧ୍ୟ ଯେତେବେଳେ ଷାଠିଏ-ହଜାର ପୁଅ ଫେରିଲେ ନାହିଁ କି ଅଶ୍ୱ ଆସିଲାନାହିଁ ସେତେବେଳେ ମହାରାଜ ଚିନ୍ତିତ ହୋଇପଡ଼ିଲେ । ସେ ନିଜର ନାତି ବୀର ଅଂଶୁମାନକୁ କହିଲେ— ବତ୍ସ ! ତୋର କକେଇମାନେ ସମସ୍ତେ ଯଜ୍ଞୀୟ ଅଶ୍ୱ ଖୋଜିବାକୁ ଯାଇ ଏପର୍ଯ୍ୟନ୍ତ ଫେରିଲେ ନାହିଁ । ସେମାନେ ପ୍ରତ୍ୟେକ ଜଣେ ଜଣେ ବୀର । ସେମାନଙ୍କୁ ଯୁଦ୍ଧରେ କେହି ହରାଇପାରିବ ନାହିଁ । ନିଶ୍ଚୟ କୌଣସି ପ୍ରକାର ଦୁର୍ଘଟଣା ଘଟିଛି । ମୁଁ ତ ଯଜ୍ଞଦୀକ୍ଷା ନେଇଛି । ତେଣୁ ମୁଁ କୁଆଡ଼େ ଯାଇପାରିବି ନାହିଁ । ତୁ ଯାଇ ସେମାନେ କୁଆଡ଼େ ଗଲେ ଅନୁସନ୍ଧାନ କର ।

ପିତାମହ ସାଗରଙ୍କ ଆଦେଶ ଅନୁସାରେ ଅଂଶୁମାନ ଯଜ୍ଞଅଶ୍ୱ ଖୋଜିବା-ପାଇଁ ବାହାରିଗଲେ । ସମଗ୍ର ପୃଥିବୀ ଖୋଜିସାରିବାପରେ ଯେତେବେଳେ ଅଶ୍ୱର ସନ୍ଧାନ ପାଇଲେ ନାହିଁ, ସେତେବେଳେ ସେ କକେଇମାନେ ଖୋଳିଥିବା ମାର୍ଗରେ ଖୋଜି ଖୋଜି ଯାଇ ପାତାଳପୁରରେ ପହଞ୍ଚିଲେ । ସେ ଦେଖିଲେ ଭଗବାନ୍ କପିଳ ସମାଧିରେ ନିମଗ୍ନ ଅଛନ୍ତି ଏବଂ ଯଜ୍ଞଅଶ୍ୱ ବୁଲି ବୁଲି ଘାସ ଖାଉଛି । ଷାଠିଏହଜାର ରାଜକୁମାରଙ୍କ ଭସ୍ମ ଏକ ବିରାଟ ସ୍ତୂପରୂପେ ପଡ଼ିରହିଛି ।

ଅଂଶୁମାନ ସବୁକଥା ଜାଣିପାରିଲେ । ସେ ଅତିବ କରୁଣ ସ୍ୱରରେ ଭଗବାନ୍ କପିଳଙ୍କ ସ୍ତୁତି ଆରମ୍ଭକରି କହିଲେ—"ହେ ସର୍ବଭୂତାତ୍ମନ ! ହେ ଭଗବନ୍ ! ଅଜ

ଆପଣଙ୍କ ଦର୍ଶନ ଲାଭକରି ବିଷୟବାସନା, କର୍ମବନ୍ଧନ ଓ ଇନ୍ଦ୍ରିୟମୂଳକ ମୋହ ମୋର ଦୂରହୋଇଛି । ହେ ପ୍ରଭୋ ! ଆପଣ ସଦୟହୋଇ କରୁଣାମୟୀ ଦୃଷ୍ଟି ଢ଼ାଳି ଥରେ ମୋ' ଆଡ଼କୁ ଚାହାଁନ୍ତୁ ।'

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ବାଳକ ଅଂଶୁମାନଙ୍କର ଅପୂର୍ବ ବିନୟ ଓ ଅଦ୍ଭୁତ ବିଶୁଦ୍ଧ ଭକ୍ତି ଦେଖି ଭଗବାନ୍ କପିଳ ପ୍ରସନ୍ନହୋଇ କହିଲେ—"ବତ୍ସ ! ତୁମେ କଣ ଚାହୁଁଛ ?"

ହାତଯୋଡ଼ି ଅଂଶୁମାନ କହିଲେ—"ହେ ଅଶରଣ ଶରଣ ! ମୋର ପିତାମହଙ୍କ ଆଦେଶ ପାଳନକରିବା ନିମିତ୍ତ ଆପଣ ଦୟାକଲେ ଯଜ୍ଞୀୟ ଅଶ୍ୱକୁ ନେଇ ତାଙ୍କୁ ଦେବି । ଅଶ୍ୱକୁ ପାଇଲେ ସେ ଯଜ୍ଞକାର୍ଯ୍ୟ ଶେଷକରିବେ । ମୋର କକେଇମାନେ ଏଠାରେ ଭସ୍ମୀଭୂତ ହୋଇଛନ୍ତି । ସେମାନେ ଉଦ୍ଧାର ହୁଅନ୍ତୁ, ଏହାହିଁ ମୋର ଦ୍ୱିତୀୟ ପ୍ରାର୍ଥନା । ସେମାନେ ଚିରକାଳ ବ୍ରହ୍ମଦ୍ରୋହ ଅପରାଧରେ ନର୍କ ଯନ୍ତ୍ରଣା ଭୋଗ ନ କରନ୍ତୁ ।"

ଏହାଶୁଣି ପ୍ରସନ୍ନହୋଇ ଭଗବାନ କପିଳ କହିଲେ—"ବତ୍ସ ! ତୁମ ପିତାମହଙ୍କ ଯଜ୍ଞ ଅଶ୍ୱ ଆଗରେ ଚରୁଛି, ତାକୁ ନେଇଯାଅ । ତୁମର ପିତାମହ ଯଜ୍ଞ-ପୂର୍ତ୍ତି କରନ୍ତୁ । ଆଉ ରହିଲା ତୁମ କକେଇମାନଙ୍କ ଉଦ୍ଧାରକଥା । କିନ୍ତୁ ବତ୍ସ ! ସେମାନେ ଉଦ୍ଧାର ପାଇବା ସମ୍ଭବ ନୁହେଁ ।"

ଅଂଶୁମାନ ହାତଯୋଡ଼ି ବିନୀତଭାବେ କହିଲେ—"ପ୍ରଭୋ ! ସମ୍ଭବକୁ ଅସମ୍ଭବ ଓ ଅସମ୍ଭବକୁ ସମ୍ଭବ କରିବାର ଶକ୍ତି ଆପଣଙ୍କର ଅଛି । ଆପଣଙ୍କ ପକ୍ଷରେ ସମ୍ଭବ ଅସମ୍ଭବ କଣ ? ସେମାନଙ୍କ ଉଦ୍ଧାର କରିବା ପାଇଁ ଆପଣ ଯେଉଁ ଉପାୟ କହିବେ ଆପଣଙ୍କ ଦୟାରୁ ତାହା ମୁଁ ପୂର୍ତ୍ତି କରିବା ପାଇଁ ଚେଷ୍ଟା କରିବି ।"

ଏହାଶୁଣି କିଛିସମୟ ଚିନ୍ତାକରିବା ପରେ ଭଗବାନ୍ କହିଲେ—"ବତ୍ସ ! ଗୋଟିଏ ଉପାୟ ଅଛି । ଏମାନଙ୍କର ଦାହସଂସ୍କାର ହୋଇନାହିଁ କି ସେମାନଙ୍କ ଉଦ୍ଦେଶ୍ୟରେ ଜଳତର୍ପଣ, ପିଣ୍ଡଦାନ ଆଦି କାର୍ଯ୍ୟ କରାଯାଇନାହିଁ । ସେମାନେ ନିଜ ପାପରେ ହିଁ ଭସ୍ମୀଭୂତ ହୋଇଛନ୍ତି । ତେଣୁ କୌଣସିମତେ ତୁମେ ଯଦି ଗଙ୍ଗାକୁ ଏଠାକୁ ନେଇ ଆସିପାରିବ ତେବେ ଗଙ୍ଗାଜଳ ସ୍ପର୍ଶରେ ସେମାନେ ଉଦ୍ଧାର ପାଇ-ପାରିବେ । ମଣିଷ ଯେତେ ପାପ କରିଥିଲେ ଅଥବା ଯେ କୌଣସି ସ୍ଥାନରେ ମରି-ଯାଇଥିଲେ ମଧ୍ୟ ତାର ଭସ୍ମ ବା ଅସ୍ଥି ଯଦି ଗଙ୍ଗାନଦୀରେ ପକାଇ ଦିଆଯିବ ତେବେ ସେ ସବୁ ପାପରୁ ମୁକ୍ତହୋଇ ସ୍ୱର୍ଗଲୋକ ଲାଭ କରିବ । ଯଦି ତୁମେ ଗଙ୍ଗାଙ୍କୁ ଏଠାକୁ

ନେଇଆସିବ ତେବେ ତୁମର ଏହି କକେଇମାନେ ମୁକ୍ତିଲାଭ କରିପାରିବେ । ତା’ ଛଡ଼ା ଏମାନଙ୍କୁ ଉଦ୍ଧାର କରିବାର ଅନ୍ୟ ଉପାୟ ନାହିଁ ।”

ଏହାଶୁଣି ଅଂଶୁମାନ ଭଗବାନ୍ କପିଳଙ୍କ ଆଦେଶକୁ ଶିରୋଧାର୍ଯ୍ୟ କରି, ଯଜ୍ଞ ଅଶ୍ୱକୁ ନେଇ ପିତାମହଙ୍କ ପାଖକୁ ଫେରିଆସିଲେ । ଅଶ୍ୱକୁ ପାଇ ମହାରାଜ ସଗର ଯଜ୍ଞରେ ପୂର୍ଣ୍ଣାହୁତି ଦେଲେ । ପୁତ୍ରମାନଙ୍କର ମୃତ୍ୟୁପାଇଁ ସେ ଆଦୌ ଦୁଃଖ କଲେନାହିଁ । ଶେଷରେ ସେ ରାଜ୍ୟଭାର ଅଂଶୁମାନଙ୍କ ହାତରେ ସମର୍ପଣ କରି ତପସ୍ୟା ପାଇଁ ବଣକୁ ଚାଲିଗଲେ ।

ଶ୍ରୀ ଶୁକଦେବ କହିଲେ—“ରାଜନ୍ ! ମହାରାଜ ଅଂଶୁମାନ୍ ନିଜର ପିତୃବ୍ୟ (କକେଇ)ମାନଙ୍କୁ ଉଦ୍ଧାର କରିବାପାଇଁ ଗଙ୍ଗାଙ୍କୁ କିପରି ଆଣିବେ ସେ ବିଷୟରେ ଯତ୍ନଶୀଳ ହେଲେ ।”

## ଛପ୍ପୟ

ସୁତ ନହିଁ ଆୟେ ସୋଚ ସଗର ନେ ପୌତ୍ର ପଠାୟେ ।
ଅଂଶୁମାନ୍ ଚଲିଦୟେ କପିଲ ମୁନି ଆଶ୍ରମ ଆୟେ ॥
ତୁମର ବିନୟ ଅତି କରୀ ମହାମୁନି ଅତି ହରଷାୟେ ।
ଗଙ୍ଗା ଲଓ ପିତର ହେତୁ ଯେ ବଚନ ସୁନାୟେ ॥
ଅଶ୍ୱ ପାଇ ମଖ ପୂର୍ଣ୍ଣ କରି, ସଗର ତପୋବନ ଚଲି ଦୟେ ।
ତଦନନ୍ତର ମନୁ ବଂଶ କେ, ଅଂଶୁମାନ୍ ଭୂପତି ଭୟେ ॥



# ଅଂଶୁମାନ୍‌ଙ୍କ ପୁତ୍ର ଦିଲୀପ

ଅଂଶୁମାଂଶ୍ଚ ତପସ୍ତେପେ ଗଙ୍ଗାନୟନକାମ୍ୟୟା ।
କାଲଂ ମହାନ୍ତଂ ନାଶକ୍ନୋତ୍ତତଃ କଲେନ ସଂସ୍ଥିତଃ ॥
ଦିଲୀପସ୍ତତ୍ ସୁତ ସ୍ତଦ୍‌ବଦଶକ୍ତଃ କାଲମେୟିବାନ୍ ।
ଭଗୀରଥସ୍ତସ୍ୟ ପୁତ୍ରସ୍ତେପେ ସ ସୁମହତ୍ତପଃ ॥

(ଭାଗ ୯ସ୍କ-୯ଅ-୧ ,୨ଶ୍ଳୋ)

## ଛପ୍‌ପୟ

ଅଂଶୁମାନ୍ ତପ କର୍‌ୟୋ ଅବନି ପୈ ଗଙ୍ଗା ଆଵୈଂ ।
ମୃତକ ପିତର ପୟ ପରସି ନରକ ତଜି ସୁରପୁର ଜାଵୈଂ ॥
ଭୟୋ କୁମାର ଦିଲୀପ ରାଜ ତଜି ଜାଇ ବସେ ବନ ।
ଗଙ୍ଗା ଆଇଂ ନହୀଂ ସ୍ୱର୍ଗ ନୃପ ଗୟୋ ତ୍ୟାଗି ତନ ॥
କୁମର ଦିଲୀପ ପରାକ୍ରମୀ, ପିତୁ ପୀଛେ ଭୂପତି ଭୟୋ ।
ଗଙ୍ଗା ହିତ ତପ କରନ କୂଁ ହିମ ଗିରି ପୈ ତେହୂ ଗୟୋ ॥

ପିତା ଆରମ୍ଭ କରିଥିବା କାର୍ଯ୍ୟକୁ ଯେ ପୂର୍ଣ୍ଣକରେ ସେ ହିଁ ଯଥାର୍ଥ ପୁତ୍ର । ସତ୍‌ପୁତ୍ର ହିଁ ପିତୃକାର୍ଯ୍ୟ ପୂର୍ଣ୍ଣାଙ୍ଗ କରିବାପାଇଁ ଚେଷ୍ଟା କରିଥାଏ । ପୁତ୍ର ହିଁ ପୁଂନାମକ ନରକରୁ ପିତାଙ୍କୁ ଉଦ୍ଧାର କରେ । ସେଥିପାଇଁ ପିତୃଗଣ ନିଜ ବଂଶରେ ପୁତ୍ର ଜନ୍ମ ହୋଇ ବଂଶର ଧାରାବାହିକତା ରକ୍ଷାକରୁ ବୋଲି ଆଶା କରନ୍ତି । ପୁତ୍ରହିଁ ବଂଶ ଓ ବଂଶର ପରମ୍ପରାକୁ ଅକ୍ଷୁର୍ଣ୍ଣ ରଖେ । ତେଣୁ ଗୃହସ୍ଥ ଲୋକେ ସତ୍ ପୁତ୍ର କାମନା କରନ୍ତି ଏବଂ ପୁତ୍ରପ୍ରାପ୍ତି ପାଇଁ ଯଥାଶକ୍ତି ଉଦ୍ୟମ କରନ୍ତି ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ମହାରାଜ ସଗର ଅଂଶୁମାନଙ୍କ ହାତରେ ରାଜ୍ୟଭାର ଅର୍ପଣ କରି ବନଗମନ କରିବା ପରେ ଅଂଶୁମାନ୍ ଅହୋରାତ୍ର କିପରି ଗଙ୍ଗାଙ୍କୁ ଆଣିବେ ଓ ପିତୃଲୋକଙ୍କୁ ଉଦ୍ଧାର କରିବେ ସେହି ଚିନ୍ତାରେ ବ୍ୟାକୁଳ ହେବାକୁ ଲାଗିଲେ । ଯଥା ସମୟରେ ତାଙ୍କର ପୁଅଟିଏ ଜନ୍ମହେଲା । ଏହି ପୁଅ ଦିଲୀପ ନାମରେ ସୁବିଦିତ । କୁମାର ଦିଲୀପ ଥିଲେ ଖୁବ୍ ଚତୁର ଓ ତେଜସ୍ୱୀ । ଦିଲୀପ ବଡ଼ ହୋଇଯିବାପରେ ଅଂଶୁମାନ୍ ତାଙ୍କୁ ରାଜ୍ୟଭାର ଦେଇ ଗଙ୍ଗାଙ୍କୁ ଆଣିବାପାଇଁ ତପସ୍ୟା କରିବାକୁ ଚାଲିଗଲେ । ସେ ହିମାଳୟକୁ ଯାଇ ଗଙ୍ଗାଙ୍କୁ ସନ୍ତୁଷ୍ଟ କରିବାପାଇଁ କଠୋର ତପସ୍ୟା କଲେ । ଗଙ୍ଗାଙ୍କ ଅବତରଣ କରିବା ସହଜ ବ୍ୟାପାର ନ ଥିଲା । ଅଂଶୁମାନ୍‌ଙ୍କ ତପସ୍ୟାରେ ଗଙ୍ଗା ସନ୍ତୁଷ୍ଟ ହୋଇପାରିଲେ ନାହିଁ । କିଛିକାଳ ପରେ ଅଂଶୁମାନ୍ ପରଲୋକ ଗମନକଲେ । ଗଙ୍ଗାଙ୍କୁ ଆଣିବା ଓ ପିତୃଗଣଙ୍କୁ ଉଦ୍ଧାର କରିବା ଅଭିଳାଷ ତାଙ୍କର ଅପୂର୍ଣ୍ଣ ରହିଗଲା ।"

ମହାରାଜ ଦିଲୀପ ଯେତେବେଳେ ଶୁଣିଲେ ଗଙ୍ଗାଙ୍କୁ ଆଣିବାରେ ପିତା ଅସଫଳ ହୋଇ ସ୍ୱର୍ଗଲୋକ ଗମନ କଲେ, ସେତେବେଳେ ସେ ଖୁବ ଦୁଃଖିତ ହେଲେ । କିନ୍ତୁ ସେ କରିବେ କଣ ? ସେ ପର୍ଯ୍ୟନ୍ତ ତାଙ୍କର ସନ୍ତାନ ସନ୍ତତି ହୋଇ ନ ଥିଲେ । କିଛିକାଳପରେ ତାଙ୍କର ପୁଅଟିଏ ଜନ୍ମ ହେଲା । ସେହି ପୁଅ ଭଗୀରଥ ନାମରେ ଅଭିହିତ । କୁମାର ଭଗୀରଥ ଥିଲେ ଜଣେ ଭଗବଦ୍‌ଭକ୍ତ, ଶାନ୍ତ, ଅଧ୍ୟବସାୟୀ ଓ ସାହସୀ ବୀର । ସେ ଯାହା ଇଚ୍ଛା କରୁଥିଲେ ତାହା ଯଥାର୍ଥରେ ସମ୍ପାଦନ କରୁଥିଲେ । ମହାରାଜ ଦିଲୀପ ତପସ୍ୟା କରିବାକୁ ଯାଇ ପରଲୋକ ଗମନ କଲେ । ସେ ମଧ୍ୟ ଗଙ୍ଗାଙ୍କୁ ଆଣିପାରିଲେ ନାହିଁ । ଏହା ଜାଣିପାରି ଭଗୀରଥ ବିଶେଷ ଚିନ୍ତିତ ହୋଇ-ପଡ଼ିଲେ । ସେ ଭାବିଲେ—ମୋର ପିତାମହ ଓ ପିତା, ପିତୃଗଣଙ୍କୁ ଉଦ୍ଧାର କରିବା-ପାଇଁ ଗଙ୍ଗାଙ୍କୁ ଆଣିପାରିଲେ ନାହିଁ । ଗଙ୍ଗାଙ୍କୁ ଆଣିବାପାଇଁ ମୋତେ ଯେ କୌଣସି ପ୍ରକାର କଷ୍ଟ ବରଣ କରିବାକୁ ପଡ଼ିବ ଏବଂ ଏହି ମୁହୂର୍ତ୍ତରୁ କାର୍ଯ୍ୟ ଆରମ୍ଭ କରିବାକୁ ହେବ । ଏହିପରି ସିଦ୍ଧାନ୍ତ କରି ଭଗୀରଥ ଯୋଗ୍ୟ ମନ୍ତ୍ରୀଙ୍କୁ ରାଜ୍ୟଭାର ଦେଇ ହିମାଳୟ ଯାତ୍ରା କଲେ । ସେ ଗୋଟିକ ପରେ ଗୋଟିଏ ପର୍ବତ ଅତିକ୍ରମ କରି ଶେଷରେ ଗୋମୁଖ ନିକଟରେ ପହଞ୍ଚିଲେ । ସେଠାରେ ଏକ ଶିଳାଖଣ୍ଡ ଉପରେ ଠିଆ-ହୋଇ ନ ଖାଇ ନ ପିଇ ହଜାରେ ବର୍ଷ ପର୍ଯ୍ୟନ୍ତ ତପସ୍ୟା କଲେ । ଅନବରତ ବ୍ରହ୍ମ ଦ୍ରବରୂପା ଗଙ୍ଗାଙ୍କୁ ସେ ଧ୍ୟାନ କଲେ । ସବୁବେଳେ ତାଙ୍କ ମୁହଁରୁ ଗଙ୍ଗା ଗଙ୍ଗା ଶବ୍ଦ ବାହାରୁଥାଏ । ସେ ପ୍ରଥମେ ପ୍ରଥମେ କିଛି କିଛି କନ୍ଦମୂଳ ଖାଉଥିଲେ । କିନ୍ତୁ ପରେ ପରେ ଖାଦ୍ୟ, ଜଳ ଓ ବାୟୁ ମଧ୍ୟ ପରିତ୍ୟାଗ କଲେ । ପ୍ରାଣ ବାୟୁକୁ ନିରୋଧ କରି, ଠିଆ ହୋଇ ରହି ସେ ଗଙ୍ଗାଙ୍କ ଚିନ୍ତାରେ ତନ୍ମୟ ହୋଇଗଲେ ।

ଭଗୀରଥଙ୍କ କଠୋର ତପସ୍ୟାରେ ସୁରେଶ୍ୱରୀ ଗଙ୍ଗା ସନ୍ତୁଷ୍ଟହୋଇ ସାକ୍ଷାତ୍ ଆବିର୍ଭୂତା ହେଲେ । ସେ ମକର ବାହନ ଉପରେ ବିଜେ କରିଥିଲେ । ତାଙ୍କ ମସ୍ତକରେ ମଣିମୟ ମୁକୁଟ ଝଲମଲ କରୁଥିଲା । କର୍ଣ୍ଣରେ ଶୋଭିତ କୁଣ୍ଡଳର ଆଭାରେ ତାଙ୍କ ମୁଖମଣ୍ଡଳ ପ୍ରଦୀପ୍ତ ଦେଖାଯାଉଥିଲା । ନାକରେ ବସଣି ଶୋଭାପାଉଥିଲା । ଶୁଭ୍ରଦନ୍ତ ପଂକ୍ତି, ରକ୍ତିମ ଅଧର ଛଟାର ଆଭାରେ ହିମାଳୟ ଶୃଙ୍ଗରେ ଇନ୍ଦ୍ରଧନୁ ସୃଷ୍ଟି ହେଉଥିଲା । କଣ୍ଠଦେଶରେ ମଣିମୁକ୍ତାର ହାର ଶୋଭାପାଉଥିଲା । ନୀଳବସ୍ତ୍ର ପରିହିତା ଦେବୀ ଗଙ୍ଗା ସୁବର୍ଣ୍ଣ ପ୍ରତିମା ପରି ଦେଖାଯାଉଥିଲେ । ସନ୍ତାନମାନଙ୍କୁ ଅମୃତଧାରା ପାନ କରାଇବା ପାଇଁ ବ୍ୟଗ୍ର ହୋଇ ଉଠୁଥିବା ଦେବୀଙ୍କ ପୀନପୟୋଧର ନୀଳବସନ ଅନ୍ତରାଳରୁ ଫୁଟିଉଠୁଥିଲା । କ୍ଷୀଣ କଟୀ, ବର୍ତ୍ତୁଳ ଉରୁଯୁଗଳରେ ଦେବୀଙ୍କ ଅଙ୍ଗଶୋଭା ବହୁ ଗୁଣିତ ହେଉଥିଲା । ଦେବୀ ଧୀରେ ଧୀରେ ହସୁଥିଲେ ।

ମହାରାଜ ଭଗୀରଥ ଆଖି ବନ୍ଦ କରି ତ୍ରୈଲୋକ୍ୟ ପାବନୀ, ତରଣି ତାରଣୀ, ଜଗତ୍ ଉଦ୍ଧାରଣୀ, ଅଘହାରଣୀ, ବିଷ୍ଣୁ ପାଦାବ୍ଜ ସମ୍ଭୂତା, ଭଗବତୀ ସୁରେଶ୍ୱରୀଙ୍କୁ ଧ୍ୟାନ କରୁଥିଲେ । ସହସା ନିଜ ହୃଦୟ କମଳରେ ଠିଆ ହୋଇଥିବା ଦେବୀ ଗଙ୍ଗାଙ୍କର ଅପୂର୍ବ ମୂର୍ତ୍ତି ଦେଖି ରାଜର୍ଷି ଭଗୀରଥ ରୋମାଞ୍ଚିତ ହୋଇପଡ଼ିଲେ । ସେ ନିଜର ତପସ୍ୟା ସଫଳ ହେଲାବୋଲି ଭାବିଲେ ଓ ମନେ ମନେ ଭଗବତୀଙ୍କ ସ୍ତୁତିଗାନ କରିବାକୁ ଲାଗିଲେ । ହଠାତ୍ ସେହି ମନୋହାରିଣୀ ମୂର୍ତ୍ତି ହୃଦୟ ପ୍ରଦେଶରୁ ଅନ୍ତର୍ହିତ ହୋଇଗଲେ ।

ଦେବୀଙ୍କର ଅଲୌକିକ ରୂପରାଶି ପୂର୍ଣ୍ଣ ମୂର୍ତ୍ତି ଅନ୍ତର୍ହିତ ହୋଇଯିବାରୁ ମହାରାଜ ଭଗୀରଥଙ୍କ ଚିତ୍ତ ବ୍ୟାକୁଳ ହୋଇଉଠିଲା । ଦେବୀଙ୍କୁ ଦର୍ଶନ କରି ତାଙ୍କ ମନ ପରିତୃପ୍ତ ହୋଇ ନ ଥିଲା । ତେଣୁ ମାନସିକ ବ୍ୟଗ୍ରତାରୁ ତାଙ୍କର ନେତ୍ରଦ୍ୱୟ ଉନ୍ମୀଳିତ ହୋଇଗଲା । ଆଖି ଖୋଲିଯିବା ପରେ ସେ ଦେଖିଲେ ତ୍ରିଭୁବନ ତାରିଣୀ ଭଗବତୀ ଗଙ୍ଗା ଆଗରେ ଠିଆ ହୋଇଛନ୍ତି । ମହାରାଜ ଦେବୀ ଗଙ୍ଗାଙ୍କ ଅରୁଣ କମଳ ତୁଲ୍ୟ କୋମଳ ପବିତ୍ର ପାଦପଦ୍ମ ତଳେ ସାଷ୍ଟାଙ୍ଗ ପ୍ରଣାମ କଲେ । ଜଗଜ୍ଜନନୀ ଗଙ୍ଗା ମହାରାଜଙ୍କ ମସ୍ତକ ଉପରେ ଅଭୟ ହସ୍ତ ପ୍ରସାରଣ କରି କହିଲେ—"ବତ୍ସ ! ମୁଁ ତୁମ ତପସ୍ୟାରେ ସନ୍ତୁଷ୍ଟ ହୋଇଛି । ତୁମେ ଇଚ୍ଛା ଅନୁସାରେ ବର ପ୍ରାର୍ଥନା କର ।

ମହାରାଜ ଭଗୀରଥ ଅଞ୍ଜଳିବଦ୍ଧ ହୋଇ କହିଲେ—"ମା, ଆପଣ ଯଦି ମୋ ପ୍ରତି ପ୍ରସନ୍ନ ଓ ପ୍ରକୃତରେ ବର ଦେବା ପାଇଁ ଇଚ୍ଛୁକ ତେବେ ମୋର ପିତୃଗଣଙ୍କୁ ଉଦ୍ଧାର କରନ୍ତୁ, ଏହାହିଁ ମୋର ପ୍ରାର୍ଥନା ।"

ଭଗବତୀ ଗଙ୍ଗା କହିଲେ—"ତେବେ ତ ମୋତେ ସ୍ୱର୍ଗରୁ ମର୍ତ୍ତ୍ୟକୁ ଓହ୍ଲାଇ ଯିବାକୁ ପଡ଼ିବ ।"

ଭଗୀରଥ କହିଲେ—"ଆପଣ କଣ କରିବେ ନ କରିବେ ସେକଥା ମୋତେ ଜଣା ନାହିଁ । କପିଳ ମୁନିଙ୍କ ଦୃଷ୍ଟି ପଡ଼ିବାମାତ୍ରେ ମୋର ପିତାମହଙ୍କ ପିତୃବ୍ୟମାନେ ଯମଯାତନା ଭୋଗକଲେ । ଅଦ୍ୟାବଧି ସେମାନେ ଅଚେତ ହୋଇ ରହିଛନ୍ତି । ସେମାନଙ୍କ ଭସ୍ମକୁ ଆପଣଙ୍କର ପବିତ୍ର ଜଳଧାରା ସ୍ପର୍ଶ କରୁ, ଏହାହିଁ ମୋର ଏକମାତ୍ର ଅଭିଳାଷ ।"

ଦେବୀ ଗଙ୍ଗା କହିଲେ—"ହଁ ବାବୁ, ମୁଁ ସବୁକଥା ବୁଝିପାରୁଛି । ମୁଁ ଅବତରଣ ନ କଲେ ଏକାର୍ଯ୍ୟ ସାଧିତ ହୋଇପାରିବ ନାହିଁ । କିନ୍ତୁ ମୁଁ ହଠାତ୍ ଉପରୁ ତଳକୁ ଡେଇଁ ପଡ଼ିଲେ ମୋର ବେଗ ଅସମ୍ଭବ ପ୍ରକାରର ହେବ । ପୃଥିବୀ ମୋର ବେଗକୁ ସମ୍ଭାଳି ପାରିବ ନାହିଁ । ମୁଁ ସେପରି ଅବତରଣ କଲେ ସିଧା ପାତାଳକୁ ଚାଲିଯିବି । ଏହାଦ୍ୱାରା ତୁମର ସମସ୍ତ ସାଧନା ବ୍ୟର୍ଥ ହେବ । ତେଣୁ ମୋର ବେଗକୁ ଯେ ଧାରଣ କରିପାରିବ ସେପରି କୌଣସି ବ୍ୟକ୍ତିକୁ ଖୋଜି ଆଣ ।"

ଭଗୀରଥ କହିଲେ—"ମା, ଆପଣ ସେ ବିଷୟରେ ଆଦୌ ଚିନ୍ତା କରନ୍ତୁ ନାହିଁ । ଏହି ଚରାଚର ବିଶ୍ୱର ସ୍ରଷ୍ଟା ଏବଂ ବସ୍ତ୍ର ସହିତ ସୂତ୍ର ଓତଃପ୍ରୋତଭାବେ ରହିଲାପରି ଯେ ନିଜ ସୃଷ୍ଟି ଜଗତର ସର୍ବତ୍ର ପରିବ୍ୟାପ୍ତ ଓ ଜୀବଜଗତର ଆତ୍ମସ୍ୱରୂପ ସେହି ଭବାନୀପତି ଭଗବାନ୍ ଭୂତନାଥ ଆପଣଙ୍କ ବେଗକୁ ଧାରଣ କରିବେ ।"

ଦେବୀ ଗଙ୍ଗା ଏହା ଶୁଣି ମନେ ମନେ ଟିକିଏ ଗର୍ବ କଲେ । ସେ ଭାବିଲେ —"ରୁଦ୍ର କଣ ମୋର ବେଗକୁ ଧାରଣ କରି ପାରିବେ ? ହଉ ମୁଁ ତାଙ୍କୁ ଏଥର ଦେଖିବି । ସେ ତ ମୋର ଭଉଣୀର ସ୍ୱାମୀ ଓ ଲେଖାରେ ଭିଣୋଇ ।" ଏହା ଭାବି ସେ କହିଲେ—ବତ୍ସ ! ଠିକ୍ ଅଛି । ଯଦି ଭଗବାନ୍ ରୁଦ୍ର ମୋର ବେଗ ଧାରଣ କରି-ପାରିବେ ସେଥିରେ ମୋର ଆପତ୍ତି କରିବାର କିଛି ନାହିଁ । କିନ୍ତୁ ମୋର ଏକ ସର୍ତ୍ତ ଅଛି ।

ଭଗୀରଥ ପଚାରିଲେ—"ମା, କଣ ସେହି ସର୍ତ୍ତ ?",

ଗଙ୍ଗା କହିଲେ—"ତୁମେ ପାପୀମାନଙ୍କୁ ଉଦ୍ଧାର କରିବାପାଇଁ ମୋତେ ନେଉଛ । ତୁମର ପିତୃ ଲୋକଙ୍କୁ ତ ନିଶ୍ଚୟ ଉଦ୍ଧାର କରିବି । ଏପରି କ୍ରୂରକର୍ମା, ଘୋର ପାପୀମାନେ ଯେତେବେଳେ ମୁକ୍ତିଲାଭ କରିଯିବେ ତାହା ଜାଣି ସଂସାରର

ସବୁ ପାପୀ ଆସି ମୋ' ଜଳରେ ସ୍ନାନ କରି ନିଜନିଜର ପାପ ପ୍ରକ୍ଷାଳନ କରିବେ । ସେମାନେ ପାପମୁକ୍ତ ହୋଇ ନିଷ୍ପାପ ହୋଇଯିବେ ଆଉ ସେମାନଙ୍କ ପାପକୁ ନେଇ ମୁଁ କେଉଁଠି ନିଜକୁ ଧୋଇବି ? ଏ ବିଷୟରେ ତୋର କିଛି ଉପାୟ ଚିନ୍ତା କରିବା ଉଚିତ ନୁହେଁ କି ? ମୁଁ ତ ପାପ ଭାରରେ ସ୍ୱଚ୍ଛତା ହରାଇ କାଳୀ ହୋଇଯିବି ।"

ମହାରାଜ ଭଗୀରଥ କହିଲେ—"ମା, ଆପଣ ଏ ବିଷୟରେ ଟିକିଏ ହେଲେ ଚିନ୍ତା କରନ୍ତୁ ନାହିଁ । ଏହାର ସମାଧାନ ପାଇଁ ଏକ ସରଳ ଉପାୟ ଅଛି ।"

ଦେବୀ ଗଙ୍ଗା ପଚାରିଲେ—"ସେ ଉପାୟଟି କଣ ?"

ଭଗୀରଥ କହିଲେ—"ଆପଣଙ୍କ ଜଳରେ ସ୍ନାନ କରି ପାପୀମାନେ ନିଜ ପାପକୁ ପ୍ରକ୍ଷାଳନ କରିବେ, ଏହା ସତ । କିନ୍ତୁ କେବଳ ପାପୀମାନେ ତ ଗାଧୋଇବେ ନାହିଁ, କେତେକ ସାଧୁ, ସନ୍ଥ, ମହାତ୍ମା, ବ୍ରହ୍ମବାଦୀ, ଶାନ୍ତଚିତ୍ତ, ବିରକ୍ତ ଓ ପୁତ୍ରତ୍ୟାଗୀ ମହାପୁରୁଷ ବି ସ୍ନାନ କରିବେ ।"

ଭଗବତୀ ଗଙ୍ଗା ପଚାରିଲେ—"ତା' ହେଲେ କଣ ହେବ ? ସେମାନେ ସବୁ ନିଷ୍ପାପ । ସେମାନଙ୍କ ପାପ ମୋ' ପାଖକୁ ଆସିବ ନାହିଁ । କିନ୍ତୁ ସେପରି ସାଧୁ ଏ ସଂସାରରେ କେତେଜଣ ଅଛନ୍ତି ? ଅଧିକାଂଶ ପାପୀହିଁ ମୋ' ଜଳରେ ସ୍ନାନ କରିବେ ।"

ଭଗୀରଥ କହିଲେ—"ନା ମାମାଜୀ, ଏହା ଠିକ୍ ନୁହେଁ । ନିଷ୍ପାପ ସାଧୁ, ମହାପୁରୁଷମାନେ ମନ୍ତ୍ର ବଳରେ ଭୁଲାରେ ନିଆଁ ଲଗିଲାପରି ଆପଣଙ୍କର ସମସ୍ତ ପାପକୁ ଭସ୍ମ କରିଦେବେ । ସୂର୍ଯ୍ୟ ଉଦୟ ହେଲେ ଅନ୍ଧାର ଯେପରି ଦୂର ହୋଇଯାଏ ବା ସିଂହ ଆସିଲେ ଯେପରି ଅନ୍ୟ ପଶୁମାନେ ଭୟରେ ପଳାଇଯାଆନ୍ତି ଅଥବା ଚନ୍ଦ୍ର ଉଦୟ ହେଲେ ଯେପରି ତାରାଗଣ ମଳିନ ପଡ଼ିଯାଆନ୍ତି, ସେହିପରି ଆପଣଙ୍କର ସମସ୍ତ ପାପ ଦୂର ହୋଇଯିବ । ଜଣେ ସାଧୁ ସ୍ନାନ କଲେ ବି ଆପଣଙ୍କ ପାପ କଟିଯିବ । ତେଣୁ ପରୋପକାରୀ ସାଧୁମାନେ ତୀର୍ଥ ସ୍ଥାନମାନଙ୍କରେ ବୁଲି ବୁଲି ସ୍ନାନ କରନ୍ତି । ଆପଣଙ୍କର ଉଭୟ ତୀରରେ ସେମାନେ ବୁଲି ବୁଲି ଆପଣଙ୍କୁ ପବିତ୍ର କରିଦେବେ । ଆପଣଙ୍କଠାରେ ପାପର ଲେଶ ବି ରହିବ ନାହିଁ ।"

ଦେବୀ ଗଙ୍ଗା ପଚାରିଲେ—"ଏହା କିପରି ହେବ ?"

ମହାରାଜ କହିଲେ—"ମା, ସାଧୁମାନଙ୍କ ହୃଦୟରେ ପାପତାପହାରୀ ଭଗବାନ୍ ବିଷ୍ଣୁ ସର୍ବଦା ବାସ କରନ୍ତି । ସେମାନେ ଆପଣଙ୍କ ଜଳରେ ବୁଡ଼ିବା ମାତ୍ରେ ପାପହାରୀ ଭଗବାନ୍ କ୍ଷଣକ ମଧ୍ୟରେ ସମସ୍ତ ପାପ ବିନାଶ କରିଦେବେ । କର୍ପୂରରେ

ନଥାଁ ଲଗାଇଦେଲେ ତାହା ଯେପରି ଜଳିଯାଏ ସେହିପରି ଭଗବାନଙ୍କ ସ୍ପର୍ଶରେ ଆପଣଙ୍କ ପାପ ଦୂର ହୋଇଯିବ ।"

ଭଗବତୀ ଗଙ୍ଗା କହିଲେ—"ହଉ, ଠିକ୍ ଅଛି । ମୋର ବେଗକୁ ଧାରଣ କରିବାପାଇଁ ତୁମେ ଭଗବାନ୍ ଶଙ୍କରଙ୍କୁ ନିବେଦନ କର । ସେ ରାଜି ହେଲେ ମୁଁ ଆସିବି । ଏହା କହି ଗଙ୍ଗା ଅନ୍ତର୍ଦ୍ଧାନ ହୋଇଗଲେ ।"

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଗଙ୍ଗା ଅନ୍ତର୍ଦ୍ଧାନ ହୋଇଯିବା ପରେ ମହାରାଜ ସେହି ଆଡ଼କୁ ମସ୍ତକଟେକ ପ୍ରଣାମ କଲେ । ଏହାପରେ ଭଗବାନ୍ ଶଙ୍କରଙ୍କୁ ପ୍ରସନ୍ନ କରିବାପାଇଁ ତପସ୍ୟା କରିବାକୁ ଲାଗିଲେ ।"

## ଛପ୍ପୟ

କରତ କରତ ତପ ଭୂପ ଦଲୀପହୁ ସ୍ୱର୍ଗ ସିଧାରେ ।
ତନକେ ସୁତ ନୃପ ଭୟେ ଭଗୀରଥ ସବକେ ପ୍ୟାରେ ।।
ପିତା ପିତାମହ ମରେ ନହୀଁ ଶ୍ରୀଗଙ୍ଗା ଆଇଂ ।
ପିତର ମରେ ଯମ ସଦନ ଦୁଃଖ ତେିଁ ତେ ବିଲଲାଇଂ ।।
ଭୂପ ଭଗୀରଥ ରାଜ ତଜି, ଗଙ୍ଗାକୀ ଲେଓୈ ଗୟେ ।
ଅବକେ ଜନନୀ ତୁଷ୍ଟ ହ୍ୱୈ, ନରପତ କୂଁ ଦରଶନ ଦୟେ ।।



## ଗଙ୍ଗାବତରଣ

ସକୃଲ୍ଲସ୍ପର୍ଶମାତ୍ରେଣ ବ୍ରହ୍ମଦଣ୍ଡହତା ଅପି ।
ସଗରାତ୍ମଜା ଦିବଂ ଜଗ୍ମୁଃ କେବଲଂ ଦେହଭସ୍ମଭିଃ ।।
ଭସ୍ମୀଭୂତାଙ୍ଗ ସଙ୍ଗେନ ସ୍ୱର୍ଯାତାଃ ସଗରାତ୍ମଜାଃ ।
କିଂ ପୁନଃ ଶ୍ରଦ୍ଧୟା ଦେବୀଂ ଯେ ସେବନ୍ତେ ଧୃତବ୍ରତାଃ ।।

(ଭାଗ ୯ସ୍କ-୯ଅ-୧୨-୧୩ଶ୍ଳୋ)

### ଛପ୍ପୟ

ଗଙ୍ଗା ବୋଲୀଂ ବେଗ ବଢୌ ରୋକେଁ କୋ ତେମେରେ ।
ଔରହୁ ଚିନ୍ତା ଏକ କରୁଁ ହୌଂ କାରଜ ତେରେ ।।
ହୌଂ ସବକେ ଅଘ ହରୁଁ ହରେଗି ମେରେ କୋ ଅଘ ନର ।
କହୌଂ ନୃପତି ତବ ବେଗ ସହେଂଗେ ଶିବ ହର ଶଙ୍କର ।।
ଅଘହାରୀ ହୃଦୟ ମେ ବସହୁଁ, ସାଧୁ ପାପ କାଟେଁ ସବହୁଁ ।
ହ୍ୱୈ ପ୍ରସନ୍ନ ଅବତରଣ ହିତ, ଗଙ୍ଗାଜୀ ଗମନୀ ତବହୁଁ ।।

ସମୟ ବଡ଼ ବଳବାନ୍ ! ଯାହା ଘଟିବାର ଥାଏ ତାହା ସମୟ ଆସିଲେ ଘଟେ । ସବୁକିଛୁ ଘଟଣାର ନିର୍ଦ୍ଧାରିତ ସମୟ ଅଛି । ଏହି ସମୟ କାଳ ନାମରେ ଅଭିହିତ । କାଳ ହେଉଛି ଭଗବାନଙ୍କର ଅନ୍ୟତମ ରୂପ । ଯେ କୌଣସି ପ୍ରକାର କାର୍ଯ୍ୟ ସିଦ୍ଧି ପାଇଁ କାହାର ଉଦ୍ୟମ କେବେହେଲେ ବ୍ୟର୍ଥ ହୁଏନାହିଁ, କିନ୍ତୁ ସେହି କାର୍ଯ୍ୟ ଓ ଉଦ୍ୟମର ପରିଣାମ ଯଥା ସମୟରେ ପ୍ରକାଶିତ ହୋଇଥାଏ ।

ଅମାବାସ୍ୟା ଦିନ ପୂର୍ଣ୍ଣଚନ୍ଦ୍ର ଉଦୟ ହୁଏନାହିଁ । କିନ୍ତୁ ଅମାବାସ୍ୟାର ଅନ୍ଧକାର ମଧ୍ୟରେ ପୂର୍ଣ୍ଣିମାର ସଙ୍କେତ ଥାଏ । ଦିନେ ଅମାବାସ୍ୟା ହେଲେ ପୂର୍ଣ୍ଣିମା

ବ ହିନେ ଆସିବ । ଆପଣ ପ୍ରତିଦିନ ପାଣି ଢାଳିଲେ ମଧ୍ୟ ଆପଣଙ୍କ ଇଚ୍ଛା ଅନୁସାରେ ଆମ୍ବଗଛ ଫଳିବ ନାହିଁ । ଯେତେ ଚେଷ୍ଟାକଲେ ବି ସମୟ ନ ଆସିଲେ ଆମ୍ବଗଛରେ ଆମ୍ବ ଫଳିବନାହିଁ । ପାଣି ଦେବା ବ୍ୟର୍ଥହେବ ନାହିଁ । ପାଣି ପାଇଲେ ଗଛ ଭଲ ଫଳ ଦେବ, ଏଥିରେ ସନ୍ଦେହ ନାହିଁ । କିନ୍ତୁ ସମୟ ଆସିଲେ ହେବ । ବଳେଲୋକ ସାତ୍ଦିନ ପରିଶ୍ରମ କରି ମଧ୍ୟ ଗୋଟିଏ ବଡ଼ ପଥରକୁ ଫଟେଇ ପାରିଲେ ନାହିଁ । ପରଦିନ ଅଳ୍ପସମୟ ଭିତରେ ପଥରଟି ଫଟାଇଦେଲେ । ତେବେ ପୂର୍ବରୁ ଯେଉଁମାନେ ସାତ୍ଦିନ ପରିଶ୍ରମ କରିଥିଲେ ସେମାନଙ୍କ ପରିଶ୍ରମ ବ୍ୟର୍ଥହେଲା କି ? ନା, ତାହା ଠିକ୍ ନୁହେଁ । ସେମାନଙ୍କ ଶ୍ରମ ନିରର୍ଥକ ହୋଇନାହିଁ । ସେମାନେ ଯେଉଁ ଆଘାତ କରିଥିଲେ ସେଥିରେ ପଥରଟି ଦୁର୍ବଳ ହୋଇ ଯାଇଥିଲା । କିନ୍ତୁ ସେଦିନ ଭାଙ୍ଗିଯିବାର ବେଳ ତାର ଆସି ନଥିଲା । ପରଦିନ ଭାଙ୍ଗିବାର ବେଳ ଆସିବାରୁ ଅଳ୍ପ ଶ୍ରମରେ ପଥରଟି ଭାଙ୍ଗିଗଲା ।

କୌଣସି କାର୍ଯ୍ୟ କରିବା ପାଇଁ ଜଣେ ଜଣେ ବହୁ ଚେଷ୍ଟା କରନ୍ତି । ସେମାନଙ୍କ ଉଦ୍ୟମକୁ କେହି ଜାଣିପାରନ୍ତି ନାହିଁ, ଏପରି କି ସେମାନଙ୍କ ନାମ ମଧ୍ୟ ସ୍ମରଣ କରାଯାଏ ନାହିଁ । କିନ୍ତୁ ଅନ୍ୟକେହି ସେ କାମରେ ହାତ ଦେବାମାତ୍ରେ କାର୍ଯ୍ୟଟି ସଫଳ ହୁଏ । ଲୋକେ ସେହି ଲୋକକୁ ପ୍ରଶଂସା କରନ୍ତି । ଚାରିଆଡ଼େ ତା'ର ନାମ ପ୍ରଚାର ହୋଇଯାଏ ।

କୋଇଲା ଖଣିରୁ ନୀଳା ପଥର ମିଳେ । ଯେ ପାଏ ସେ ଖୁସି ହୋଇଯାଏ । ବିଶେଷଜ୍ଞମାନେ କହନ୍ତି କୋଇଲା ଖଣିରେ ନୀଳା ପଥର ଥାଏ । ଥରେ ଜଣେ ବ୍ୟବସାୟୀ କୋଇଲା ଖଣିଟିଏ ପଟାନେଇ ବହୁବର୍ଷ ପର୍ଯ୍ୟନ୍ତ କୋଇଲା ଖୋଳି ବାହାର କରାଇଲେ, ନୀଳା ପଥର ଖଣ୍ଡିଏ ହେଲେ ବାହାରିଲା ନାହିଁ । ତେଣୁ ନିରାଶହୋଇ ସେ ଅନ୍ୟ ଏକ ବ୍ୟବସାୟୀଙ୍କୁ ଖଣିଟି ବିକିଦେଲେ । ଦ୍ୱିତୀୟ ବ୍ୟବସାୟୀ ଖଣି ଅଧିକାର କରିବା ପରେ ଖୋଳିବାମାତ୍ରେ ବଡ଼ ବଡ଼ ନୀଳା ପଥରଖଣ୍ଡ ବାହାରିଲା । ସେ ଅଳ୍ପଦିନ ମଧ୍ୟରେ କୋଟିପତି ହୋଇଗଲେ । କିନ୍ତୁ ପ୍ରଥମ ବ୍ୟକ୍ତି ଯେଉଁ ଶ୍ରମ ଓ ଅର୍ଥବ୍ୟୟ କରିଥିଲେ ତାହା ବ୍ୟର୍ଥହୋଇ ନଥିଲା, ମାତ୍ର ତାର ସୁଫଳ ସେ ଭୋଗ କରିପାରି ନଥିଲେ । ସେ ଯଶସ୍ୱୀ ହୋଇପାରିଲେ ନାହିଁ । ସେହିପରି ଅଂଶୁମାନ୍ ଓ ଦିଲୀପ ଯେଉଁ ତପସ୍ୟା କରିଥିଲେ ସେଥିରେ ଗଙ୍ଗାଙ୍କ ହୃଦୟ ଦ୍ରବିତ ହୋଇଥିଲା । କିନ୍ତୁ ସଫଳତା ଭଗୀରଥଙ୍କୁ ମିଳିଥିଲା । ସେଥିପାଇଁ ଭଗବତୀ ସୁରସରିତ୍ ଭାଗୀରଥୀ ନାମରେ ପରିଚିତା ହୋଇଥିଲେ ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଦେବୀ ଗଙ୍ଗା ବର ପ୍ରଦାନ କରି ଅନ୍ତର୍ହିତ ହୋଇଯିବା ପରେ ମହାରାଜ ଭଗୀରଥ ଭଗବାନ୍ ଭୂତନାଥଙ୍କୁ କପରି ପ୍ରସନ୍ନ କରିବେ ତାହା ଚିନ୍ତା କରିବାକୁ ଲାଗିଲେ । ସବୁ ଚିନ୍ତା ଛାଡ଼ି ସେ ସଦାଶିବଙ୍କ ଧ୍ୟାନରେ ନିମଗ୍ନ ହୋଇଗଲେ । ଶଙ୍କର ହେଉଛନ୍ତି ଆଶୁତୋଷ । ସେ ଅଳ୍ପକାଳ ମଧ୍ୟରେ ପ୍ରସନ୍ନ ହୋଇଗଲେ । ଅର୍କ ଓ ଦୁଦୁରା ଫୁଲଦେଇ ପୋଷେ ଜଳ ଦେଇଦେଲେ ଓ ଗାଲଟେ ମାରିଦେଲେ ଭୋଳାନାଥ ଖୁସି ହୋଇଗଲେ । ଭଗୀରଥଙ୍କ ଦୃଢ଼ ମନ ଓ ତନ୍ମୟ ଭାବ ଦେଖି ପଶୁପତି ତ୍ରିପୁରାରି ସାକ୍ଷାତ ଆବିର୍ଭୂତ ହୋଇ ପଚାରିଲେ—"ବାବୁ ! କି ଅଭିଳାଷ ମୁଁ ପୂରଣ କରିବି ?

ଅଞ୍ଜଳିବଦ୍ଧ ହୋଇ ବିନୀତ ଭାବରେ ଭଗୀରଥ ସାଷ୍ଟାଙ୍ଗ ପ୍ରଣାମ କରି ଗଦ୍‌ଗଦ କଣ୍ଠରେ କହିଲେ—"ହେ ବିଶ୍ୱନାଥ ! ଆଶୁତୋଷ ! ମୋର ପିତୃଗଣ ବ୍ରହ୍ମଦଣ୍ଡରେ ଦଣ୍ଡିତ ଯମଯାତନା ଭୋଗ କରୁଛନ୍ତି । ସେମାନଙ୍କୁ ଉଦ୍ଧାର କରିବା-ପାଇଁ ଭଗବତୀ ଗଙ୍ଗା ପୃଥିବୀରେ ଅବତୀର୍ଣ୍ଣ ହେବେବୋଲି ପ୍ରତିଶ୍ରୁତି ଦେଇଛନ୍ତି । ଆପଣ ଦୟାକରି ତାଙ୍କର ପ୍ରବଳ ବେଗକୁ ଧାରଣ କରିବେ । ଆପଣଙ୍କ ପାଦପଦ୍ମରେ ଏହାହିଁ ମୋର ବିନୀତ ପ୍ରାର୍ଥନା ।"

ମହାଦେବ କହିଲେ—"ଠିକ୍ ଅଛି, ତୁମେ ଗଙ୍ଗାଙ୍କୁ କହିଦିଅ, ସେ ଯେତେ ବେଗରେ ଆସିଲେ ବି ମୁଁ ତାଙ୍କୁ ମୋ ଜଟାରେ ଧାରଣ କରିବି । ମୁଁ କୈଳାସର ଶିଖରଦେଶରେ ଆସନ ଲଗାଇ ବସୁଛି । ଗଙ୍ଗା ଆସନ୍ତୁ ।"

ଭଗବାନ୍ ଆଶୁତୋଷଙ୍କ ପ୍ରତିଶ୍ରୁତି ପାଇ ଭଗୀରଥ ଗଙ୍ଗାଙ୍କୁ ସ୍ତୁତିକଲେ । ଦେବୀ ଗଙ୍ଗା ଚପଳା ବାଳିକା ପରି ମନେ ମନେ ଭାବିଲେ—ଶିବ ତ ଭୋଳାନାଥ । ଭାଙ୍ଗ ଖାଇ କୈଳାସର ବରଫରେ ଗଡ଼ୁଥାନ୍ତି । ଯେଉଁଦିନ ସେ ବିଷ ପାନକଲେ ସେହିଦିନଠାରୁ ଶୀତଳ ସ୍ଥାନ, ଜଳସ୍ନାନ ତାଙ୍କୁ ଭଲଲାଗେ । ମୁଁ ମୋର ପ୍ରବଳ ବେଗରେ ତାଙ୍କ ସହିତ ତାଙ୍କର ପ୍ରିୟ କୈଳାସକୁ ନେଇ ପାତାଳରେ ପଶିଯିବି । ଏହା ଭାବି ଭଗବତୀ ଗଙ୍ଗା ହରହର ଶବ୍ଦରେ ସ୍ୱର୍ଗରୁ ଅବତରଣ କଲେ । ସେ ସମୟରେ ଗଙ୍ଗାଙ୍କ ଅବତରଣ ଦୃଶ୍ୟ ଦେଖିବାପାଇଁ ଦେବତା, ଯକ୍ଷ, ଗନ୍ଧର୍ବ, କିନ୍ନରଗଣ ନିଜ ନିଜ ବିମାନରେ ବସି କୈଳାସ ଉପରେ ରହିଥିଲେ । କଳକଳ ନିନାଦିନୀ ପତିତପାବନୀ ଭବଭୟ ହାରିଣୀ ଭଗବତୀ ଗଙ୍ଗା ଅନନ୍ତ ଜଳରାଶି ରୂପରେ ଶିବଙ୍କ ଜଟାରେ ଆସି ପଡ଼ିଲେ । ବିନ୍ଦୁ ବିନ୍ଦୁ ଜଳକଣାରେ କେହି ଜଣେ ତାଙ୍କୁ ଅଭିଷେକ କରୁଛି ବୋଲି ଶିବ ଅନୁଭବ କଲେ । ସେଦିନ ତାଙ୍କର ଭାଙ୍ଗ ପରିମାଣ ଟିକିଏ ଅଧିକ ହୋଇଥିଲା ।

ପ୍ରମଥ ଗଣ ଭୃଙ୍ଗ ନାଚିବାବେଳେ ଝୁରୁଝୁରର ମାତ୍ରା ଅଧିକ କରିଦେଇଥିଲେ । ଯେତେବେଳେ 'ଗଙ୍ଗାଙ୍କ ଶୀତଳ ଜଳକଣା ତାଙ୍କ ଉପରେ ପଡ଼ିଲା ସେତେବେଳେ ତାଙ୍କ ତନ୍ଦ୍ରା ଘୋଟିଗଲା । ଗଙ୍ଗା ବହୁତ ଗର୍ଜନ ତର୍ଜନ କଲେ, ନିଜର ବେଗକୁ ସର୍ବାଧିକ ବଢ଼ାଇଲେ ଏବଂ ସମସ୍ତ ବଳ, ପରାକ୍ରମ ପ୍ରକାଶକରି ମଧ୍ୟ ଶିବଙ୍କ ଜଟାଜୁଟରୁ ବାହାରିପାରିଲେ ନାହିଁ । ସେହି ଜଟା ଭିତରେ ସେ ହଜିଗଲେ । ବର୍ତ୍ତମାନ ଗଙ୍ଗା ଶିବଙ୍କ ଜଟାବନ୍ଧନରେ ବାନ୍ଧିହୋଇ ରହିଗଲେ । ମହାଦେବ ଆଖିବୁଜି ଧ୍ୟାନମଗ୍ନ ଥାନ୍ତି । ଗଙ୍ଗାଙ୍କର ବିନ୍ଦୁଏ ଜଳ ବି ତାଙ୍କ ଦେହରେ ପଡ଼ିଲା ନାହିଁ । ନିଜ ପତ୍ନୀଙ୍କ ଭଉଣୀ ସହିତ ଭୂତନାଥ ଏକ ବିଚିତ୍ରପ୍ରକାର ବିନୋଦ କଲେ ।

ମହାରାଜ ଭଗୀରଥ ଗଙ୍ଗାଙ୍କର ଏ ଅବସ୍ଥା ଦେଖି ଖୁବ୍ ବିବ୍ରତ ହୋଇପଡ଼ିଲେ । ସେ ଦୁହେଁ ଅଳ୍ପ ପରିହାସର ଆନନ୍ଦ ପାଇଲେ କିନ୍ତୁ ତାଙ୍କର କିଛି ଉପକାର ହେଲାନାହିଁ । କେତେ କଷ୍ଟରେ ଗଙ୍ଗାଙ୍କୁ ପ୍ରସନ୍ନ କରିଥିଲେ, ମାତ୍ର ସେ ଆସି ଶିବଙ୍କ ଜଟାରେ ବନ୍ଦୀ ହୋଇଗଲେ । ଭଗୀରଥ ପୁଣି ଶିବଙ୍କୁ ସ୍ତୁତି କରିବାକୁ ଲାଗିଲେ । ମହାଦେବ ଆଖିଖୋଲି ପଚାରିଲେ—"ରାଜନ୍ ! ମୁଁ ତ ଗଙ୍ଗାଙ୍କୁ ଧାରଣ କଲି । ତୁମେ ଆଉ ବୃଥା ଚାରେ ମୋତେ ବ୍ୟସ୍ତ କରୁଛ କାହିଁକି ?"

ମହାରାଜ ଭଗୀରଥ କହିଲେ--"ପ୍ରଭୋ ! ଧାରଣ କରିବାର ଅର୍ଥ କଣ ଗଙ୍ଗାଙ୍କୁ ନିଜ ଜଟା ଭିତରେ ଲୁଚାଇଦେବା ? ମୋର ପିତୃଗଣଙ୍କୁ ଉଦ୍ଧାର କରିବାପାଇଁ ମୁଁ ପ୍ରାର୍ଥନା କରିଥିଲି । ଗଙ୍ଗା ଯେପରି ଆଗରୁ ବ୍ରହ୍ମ କମଣ୍ଡଳୁରେ ଥିଲେ ଏବେ ସେହିପରି ଆପଣଙ୍କ ଜଟାରେ ରହିଲେ । ଦୟାକରି ତାଙ୍କୁ ପୃଥିବୀରେ ପ୍ରବାହିତ ହେବାକୁ ଛାଡ଼ିଦିଅନ୍ତୁ । ସମୁଦ୍ର ପର୍ଯ୍ୟନ୍ତ ବହିଯିବା ପାଇଁ ଆଦେଶ ଦିଅନ୍ତୁ । ମୋର ପିତୃଗଣଙ୍କ ଭସ୍ମକୁ ଭସାଇନେବାକୁ କହନ୍ତୁ । ତେବେ ମୋର ଶ୍ରମ ସାର୍ଥକ ହେଲା ବୋଲି ଜାଣିବି ।"

ମହାଦେବ କହିଲେ—"ରାଜନ୍ ! ମୁଁ ଟିକିଏ ଢୋଳେଇ ପଡ଼ିଥିଲି । ଆଚ୍ଛା ହେଲା । ହଉ ଏଥର ମୁଁ ତୁମକୁ ଗଙ୍ଗାଙ୍କୁ ଦେଇଦେଉଛି । ବିଷପାନ ହେତୁ ମୋତେ ଖୁବ୍ ଗରମ ଲାଗୁଛି । ତେଣୁ ଗଙ୍ଗାଙ୍କୁ ପୁରାପୁରି ଛାଡ଼ିପାରିବି ନାହିଁ । ତୁମର କାମ ଚଳିବାପାଇଁ ମାତ୍ର ଗୋଟିଏ ଧାରା ଦେଉଛି ।" ଏହା କହି ଶିବ ତାଙ୍କ ଜଟାରୁ ଗଙ୍ଗାଙ୍କର ଗୋଟିଏ ଧାରା କୈଳାସ ଉପରେ ଛାଡ଼ିଲେ ।"

ଜଟା ବନ୍ଧନରୁ ମୁକ୍ତ ହେବାମାତ୍ରେ ଗଙ୍ଗା କହିଲେ—"ରାଜନ୍ ! କୁଆଡ଼େ ଯିବାକୁ ହେବ ତୁମେ ମୋତେ ବାଟ ଦେଖାଅ । ତୁମ ପିତୃଗଣଙ୍କ ପାଖକୁ ମୁଁ ତୁମ ପଛେ ପଛେ ଯିବି ।"

ଭଗୀରଥ କହିଲେ—ଦେବ ! ମୁଁ ଆଗରେ ଚାଲୁଛି, ଆପଣ ମୋ ପଛରେ ଆସନ୍ତୁ ।"

ଭଗବତୀ ଗଙ୍ଗା ହସି ହସି କହିଲେ—"ଠିକ୍ ଅଛି, ଆଜିଠାରୁ ତୁମେ ମୋର ପିତା ହେଲ । ପିତାଙ୍କ ପଛରେ ଝିଅ ଦୌଡ଼ିଲା ପରି ମୁଁ ତୁମ ପଛେ ପଛେ ଯିବି ! ଆଜିଠାରୁ ମୁଁ ଭାଗୀରଥୀ ନାମରେ ଅଭିହିତା ହେବି ।"

ଏହାଶୁଣି ଭଗୀରଥ ଖୁସି ହୋଇଗଲେ । ଭଗୀରଥ ଦିବ୍ୟ ରଥରେ ଆଗେ ଆଗେ ଚାଲିଲେ । ତାଙ୍କ ପଛେ ପଛେ ଗଙ୍ଗା ପାହାଡ଼ ପର୍ବତ ଡେଇଁ, ବୃକ୍ଷଲତାକୁ ଉପାଡ଼ି, ଛୋଟବଡ଼ ପଥରଖଣ୍ଡଗୁଡ଼ିକୁ ଗଡ଼େଇନେଇ ପ୍ରବଳ ବେଗରେ ବହି ଚାଲିଲେ । ତାଙ୍କ ପଛେ ପଛେ ମତ୍ସ୍ୟ, କଚ୍ଛପ, ନକ୍ର, ସର୍ପ ଆଦି ଜଳଜନ୍ତୁଗଣ ଜନନୀଙ୍କ ଜୟଗାନ କରି ଚାଲିଲେ । ଆକାଶମାର୍ଗରେ ଦେବଦେବୀମାନେ ବିମାନରେ ବସି ଯାଉଥିଲେ । ଗନ୍ଧର୍ବଗଣ ସଙ୍ଗୀତଗାନ କରୁଥିଲେ ଏବଂ ଅପ୍ସରାଗଣ ସଙ୍ଗୀତର ତାଳେ ତାଳେ ନାଚୁଥିଲେ । ଦେବଗଣ ପୁଷ୍ପବୃଷ୍ଟି କରୁଥିଲେ । ସେହି ପୁଷ୍ପଗୁଡ଼ିକ ଗଙ୍ଗାଙ୍କ ତରଙ୍ଗରେ ତରଙ୍ଗାୟିତ ହୋଇ ଭାସିଯାଉଥିଲା ।

ମୃଦଙ୍ଗ, ବୀଣା, ପଣବ, ମଞ୍ଜିରି ଆଦି ବିବିଧ ବାଦ୍ୟ ଏକ ତାଳ ଓ ଏକ ସ୍ୱରରେ ବାଜୁଥାଏ । ସେହିପରି ଆକାଶରେ ଥିବା ଦେବତାମାନଙ୍କର ଜୟଧ୍ୱନି, ସୁରସୁନ୍ଦରୀ ମାନଙ୍କ କଙ୍କଣ ସମୂହର କିଣି କିଣି ଶବ୍ଦ, ନୂପୁର ଓ ଚୂଡ଼ିର ଝଙ୍କାର, ସଙ୍ଗୀତର ମଧୁର ସ୍ୱର ଓ ଗଙ୍ଗାଙ୍କ କଳକଳ ରବ ଏକତାଳ ଓ ଏକ ସ୍ୱରରେ ମିଳିତ-ହୋଇ ଏକ ଅପୂର୍ବ ନୂତନ ସଙ୍ଗୀତମୟ ଝଙ୍କାର ସୃଷ୍ଟି କରିଥିଲା । ସେହି ଅପୂର୍ବ ଝଙ୍କାରରେ ବିଶ୍ୱବ୍ରହ୍ମାଣ୍ଡ ଝଙ୍କୃତ ହେଉଥିଲା ।

ମହାରାଜ ଭଗୀରଥ ଦିବ୍ୟ ରଥରେ ଆଗେ ଆଗେ ଯାଉଥିଲେ । ସେହି ଅଲୌକିକ ରଥ ଜଳ, ସ୍ଥଳ, ପାହାଡ଼ ପର୍ବତ, ବନଅରଣ୍ୟ, ଅସମ ଓ ସମତଳ ମାର୍ଗରେ ସମାନ ଗତିରେ ଚାଲିପାରୁଥିଲା । ତାଙ୍କ ପଛେ ହରହର ମନ୍ଦ୍ର ଅଖଣ୍ଡକୀର୍ତ୍ତନ କଲାପରି ଭଗବତୀ ଭାଗୀରଥୀ ବାହିତ ହେଉଥିଲେ । ଚଞ୍ଚଳା ବାଳିକା ପରି ଗଙ୍ଗା ଅଙ୍କା ବଙ୍କା ହୋଇ ଚାଲୁଥିଲେ । କେଉଁଠି ପାହାଡ଼ରେ ଆଘାତ ପାଇ ବଙ୍କେଇହୋଇ ଯାଉଥିଲେ ତ କେଉଁଠି ଉଚ୍ଚ ସ୍ଥାନରୁ ସିଧା ସମତଳ ଅଞ୍ଚଳକୁ ଡେଇଁ ପଡ଼ୁଥିଲେ । କେଉଁଠି ସଙ୍କୁଚିତ ଆକାରରେ, କେଉଁଠି ଅତି ବିସ୍ତୃତଭାବରେ, କେଉଁଠି ଧୀରେଧୀରେ ତ କେଉଁଠି ଅତି ଦ୍ରୁତଗତିରେ ଗଙ୍ଗା ବହିଯାଉଥିଲେ । ଚଳାପଥରେ ବହୁ ପ୍ରପାତ, ନିର୍ଝରିଣୀଙ୍କର ଆତିଥ୍ୟ ସ୍ୱୀକାର କରି, ବିଭିନ୍ନ ଛୋଟ ବଡ଼ ନଦୀର ଜଳ ପ୍ରବାହକୁ

ଆଲିଙ୍ଗନ କରି ବୃକ୍ଷ, ଲତା, ଗ୍ରେଟବଡ଼ ପାଷାଣଖଣ୍ଡ ସହିତ ଖେଳି ଖେଳି ଦେବୀ ଗଙ୍ଗା ଭଗୀରଥଙ୍କ ରଥ ପଛରେ ଦୌଡ଼ି ଦୌଡ଼ି ଚାଲିଥାନ୍ତି । ବହୁ ବନ, ଗିରି, କାନ୍ତାର, ଅରଣ୍ୟ, ପାହାଡ଼ ପର୍ବତଙ୍କୁ ପବିତ୍ର କରି ଶେଷରେ ଗଙ୍ଗା ସମତଳ ଅଞ୍ଚଳରେ ଆସି ପହଞ୍ଚିଲେ । ଯେଉଁଠି ପର୍ବତକୁ ଫୁଟେଇ ଗଙ୍ଗା ସମତଳ ଅଞ୍ଚଳକୁ ଆସିଲେ—ସେହି ସ୍ଥାନ ହରିଦ୍ୱାର ବା ଗଙ୍ଗାଦ୍ୱାର ନାମରେ ଅଭିହିତ ।

ଭଗବତୀ ଗଙ୍ଗା କୁଶାବର୍ତ୍ତ ଦେଶ ପାରହୋଇ ମହର୍ଷିମାନଙ୍କ ଅଧ୍ୟୁଷିତ ବ୍ରହ୍ମାବର୍ତ୍ତ ପ୍ରଦେଶରେ ପ୍ରବାହିତା ହେଲେ । ସେଠାରେ ଭାଗୀରଥୀ ଜାହ୍ନବୀ ନାମରେ ପରିଚିତା ହେଲେ ।

ଏହାଶୁଣି ଶୌନକ ପଚାରିଲେ—"ହେ ସୂତ ! ଗଙ୍ଗାଙ୍କ ନାମ ଜାହ୍ନବୀ ହେଲା କାହିଁକି ? ଗଙ୍ଗା ରାଜର୍ଷି ଜହ୍ନୁଙ୍କ କନ୍ୟାରୂପେ କିପରି ପରିଚିତା ହେଲେ, ଦୟାକରି ସେ କଥା କହନ୍ତୁ ।"

ଶୌନକଙ୍କ ପ୍ରଶ୍ନ ଶୁଣି ମହର୍ଷି ସୂତ କହିଲେ—"ମୁନିଗଣ ! ଭଗବତୀ ଭାଗୀରଥଙ୍କ ନାମ କିପରି ଜାହ୍ନବୀ ହେଲା ସେ କଥା କହୁଛି । ଆପଣମାନେ ଦତ୍ତଚିତ୍ତ ହୋଇ ପୁଣ୍ୟଦାୟିନୀ ସେହି ପବିତ୍ର କାହାଣୀ ଶୁଣନ୍ତୁ ।"

## ଛପ୍‌ପୟ

ଗରଜତ ତରଜତ ଚଲୀଂ ବେଗତେଁ ଗଙ୍ଗାମାତା ।
ଗିରୀଂ ଜହଁ। ଗିରିଜେଶ ହରଜୈଂ ଭବଭୟ ତ୍ରାତା ॥
ସୋଚେଂ ଶିବକୂଂ ସଂଗ ଲୟେଂ ପାତାଳ ପଧରୁଁ ।
ଜୀକାଜୀ କୀ ଜଟନ ମାହିଁ ଜଳଧାର ଡରୁଁ ॥
ଖେଲେ ବାବା ଭଙ୍ଗ କୀ, ବୈଠେ ସହଜ ତରଙ୍ଗ ମହଁ ।
ଜଟନ ମାହିଁ ଗଙ୍ଗା ଗିରୀଂ, ପରୀ ଭଙ୍ଗ ତନ ରଙ୍ଗ ମହଁ ॥



# ଜାହ୍ନବୀ ଭାଗୀରଥୀ

ଭୀମସ୍ତୁ ବିଜୟସ୍ୟାଥ କାଞ୍ଚନୋ ହୋତ୍ରକସ୍ତତଃ ।
ତସ୍ୟ ଜହ୍ନୁଃ ସୁତୋ ଗଙ୍ଗା ଗଣ୍ଡୂଷୀକୃତ୍ୟ ଯୋଽପିବତ୍ ।।
(ଭାଗ—୯ସ୍କ-୧୫ଅ-୩ଶ୍ଲୋ)

## ଛପ୍ପୟ

ଇତଉତ ସୁରସର ଫିରହିଁ ଜଟନ ମହିଁ ମଗ ନହିଁ ପାୱେଂ ।
ଭୂପ ଭଗୀରଥ ନରଖି ଖେଲ ଅତଶୟ ଘବରାୱେଂ ।।
ଶିବ ସନ୍ ବନତୀ କରୀ ଜଟନ ତେଂ ଛୋଡ଼ୀ ଗଙ୍ଗା ।
ହୋଁକେ ଚଞ୍ଚଳ ଚଲୀଂ ଅବନପେଂ ତରଳ ତରଙ୍ଗା ।
ହୃମଗର, ନଗ, ତୋରତ ବହହିଁ, ସୁରମୁନ ମିଲ ଜୟ ଜୟ କରହିଁ ।
ରଥ ପୀଛେ ପୀଛେ ଫିରହିଁ, ଚଲତ ଦରଶ ତେଂ ଅଘ ହରହି ।।

ଚଞ୍ଚଳତା ହେତୁ ବେଳେବେଳେ କ୍ରୋଧ ଜାତ ହୋଇଥାଏ । ଖେଳ କାଳ ହୁଏ । କିନ୍ତୁ ବାଳକମାନଙ୍କଠାରେ ଚଞ୍ଚଳତା ସ୍ୱାଭାବିକଭାବେ ଦେଖାଯାଏ । ତେଣୁ ଖେଳୁ ଖେଳୁ ସେମାନେ ଝଗଡ଼ା କରନ୍ତି । ପୁଣି ଋକ୍ଷକ ମଧ୍ୟରେ ସବୁ ଭୁଲିଯାନ୍ତି ଓ ପୁଣି ସାଙ୍ଗ ହୋଇଯାନ୍ତି । ଇଟି ଯାଇଥିବା ମିତ୍ରତା ପୁଣି ଯୋଡ଼ି ହୋଇଯାଏ । ଖେଳରେ ସବୁକଥା ସମ୍ଭବ ହୁଏ । ପ୍ରେମ ଯେପରି କ୍ରୀଡ଼ାର ଏକ ଅଙ୍ଗ ସେହିପରି କ୍ରୋଧ, କଳହ ଓ ମାନ ମଧ୍ୟ ତାର ଗୋଟିଏ ଗୋଟିଏ ଅଙ୍ଗ । ମାନ, ଅଭିମାନ ବିନା ପ୍ରେମ ମଧୁର ହୋଇପାରେ ନାହିଁ । ସେହିପରି କଳହ ବିନା କ୍ରୀଡ଼ାରେ ନୂତନତା ପ୍ରକାଶ ପାଏନାହିଁ । ଭଗବାନ୍ ନାନାରୂପ ଧରି ଏହି ଜଗତରୂପକ ରଙ୍ଗ-ମଞ୍ଚରେ ନାନାବିଧ କ୍ରୀଡ଼ା କରୁଛନ୍ତି । ଗଙ୍ଗା ସେହି ଭଗବାନଙ୍କର ଦ୍ରବ୍ୟରୂପ । ବିଷ୍ଣୁ

ଶିବ, ବ୍ରହ୍ମା, ରାଜର୍ଷି, ବ୍ରହ୍ମର୍ଷି, ଦେବତା, ପିତୃଗଣ, ସମସ୍ତେ ତାଙ୍କର ଭିନ୍ନ ଭିନ୍ନ ରୂପ । କ୍ରୀଡ଼ାରେ ଆଶଙ୍କାର ଯେ ସ୍ଥାନନାହିଁ, ଏହା ନୁହେଁ ।

ମହର୍ଷି ସୂତ କହିଲେ—"ମୁନିଗଣ ! ଆପଣମାନେ ଗଙ୍ଗାଙ୍କ ନାମ ଜାହ୍ନବୀ କପରି ହେଲା ବୋଲି ପଚାରୁଥିଲେ, ତାହା କହୁଛି ଶୁଣନ୍ତୁ । ଭାଗୀରଥୀ ପାହାଡ଼ ପର୍ବତର ବନ୍ଧୁର ପଥରେ ଆସିଲାବେଳେ ଚଞ୍ଚଳ ହୋଇପଡ଼ୁଥିଲେ । କିନ୍ତୁ ହିମାଳୟର କୋଳ ପରିତ୍ୟାଗ କରି ଆସିବା ପରେ ସେ ଖୁବ୍ ଧୀରସ୍ଥିର ହୋଇଯାଇଥିଲେ । ସେ ଆଉ ଶ୍ରେଷ୍ଟ ନ ଥିଲେ, ବଡ଼ ହୋଇଯାଇଥିଲେ । ଚଞ୍ଚଳତା କମିଯାଇଥିଲା । ସେ ଯେତକ ଆଗକୁ ଆସୁଥିଲେ ସେତକ ଗମ୍ଭୀର ଓ ଧୀର ହୋଇ ଯାଉଥିଲେ । ଡେଇଁ ଡେଇଁ ଯିବା, ଦୌଡ଼ିବା ସେ ପୂରାପୂରି ଛାଡ଼ ଦେଇଥିଲେ । ସମତଳ ପ୍ରଦେଶରେ ସେ ଚୁପ୍ ଚାପ୍, ଶାନ୍ତ ଓ ଗମ୍ଭୀରଭାବରେ ବହି ଚାଲୁଥିଲେ । ପାହାଡ଼ିଆ ଅଞ୍ଚଳରେ ତାଙ୍କର ଯେଉଁ କ୍ଷୀଣ ଓ ପ୍ରଖର ଧାରା ରୂପ ଥିଲା ତାହା ସମତଳ ପ୍ରଦେଶରେ ବିସ୍ତୃତ ଓ ଧୀର ଗମ୍ଭୀର ହୋଇଯାଇଥିଲା । କୁମାରୀ ଜୀବନର ଉଚ୍ଛଳତା ତ୍ୟାଗ କରି ଭାଗୀରଥୀ ପୂର୍ଣ୍ଣ ଯୁବତୀ ରୂପରେ ଭଗୀରଥଙ୍କ ପଛେ ପଛେ ଚାଲିଥିଲେ । ସମୁଦ୍ରର ଯେତକ ନିକଟବର୍ତ୍ତୀ ହେଉଥିଲେ ସେ ସେତକ ଶାନ୍ତ ଓ ଗମ୍ଭୀର ହୋଇଯାଉଥିଲେ କୁମାରୀ ସୁଲଭ ଚଞ୍ଚଳତା ନ ଥିଲେ ମଧ୍ୟ ଯୁବତୀ ସୁଲଭ ମଧୁର ହସ ଓ ମାଦକତା ଥିଲା । ଯୌବନରେ ଶ୍ରେଷ୍ଟ ବାଳକ ବାଳିକାଙ୍କୁ ଓ ବୁଢ଼ା ବୁଢ଼ୀଙ୍କୁ ଚିଡ଼େଇବାରେ ଏବଂ ସେମାନଙ୍କ କାର୍ଯ୍ୟରେ ବାଧା ସୃଷ୍ଟି କରିବା ଏକପ୍ରକାର ଆନନ୍ଦ ମିଳେ । ସେ ବୟସରେ ବୁଢ଼ା ବୁଢ଼ୀଙ୍କ ଗାଳି ମଧ୍ୟ କାହିଁକି ଖୁବ୍ ଭଲଲାଗେ, କହିହେବ ନାହିଁ ।

ବ୍ରହ୍ମାବର୍ତ୍ତ ପ୍ରଦେଶରେ ଆସୁଥିବା ସମୟରେ ଗଙ୍ଗା ଦେଖିଲେ ଚନ୍ଦ୍ରବଂଶୀ ମହାରାଜ ହୋତ୍ରଙ୍କ ପୁତ୍ର ରାଜର୍ଷି ଜହ୍ନୁ ଏକ ବଡ଼ ଧୁମରେ ଯଜ୍ଞ କରୁଛନ୍ତି । ଗଙ୍ଗାଙ୍କ ମନ ଟିକଏ ଚଞ୍ଚଳ ହୋଇ ଉଠିଲା । ସେ ନିଜର ବେଗକୁ ଟିକଏ ବଢ଼େଇ ଦେଇ ଜହ୍ନୁଙ୍କ ଯଜ୍ଞ ଭୂମିକୁ ପ୍ଳାବନ କରି ଦେଲା । ଫଳରେ ଯଜ୍ଞର ସାମଗ୍ରୀ ସବୁ ଜଳରେ ଭାସିଗଲା । ଜହ୍ନୁଙ୍କ ଯଜ୍ଞରେ ବିଘ୍ନ ସୃଷ୍ଟି ହେଲା । ସେ ଗଙ୍ଗାଙ୍କ ଉପରେ ଖୁବ୍ ରାଗିଗଲେ । ସେ ଭାବିଲେ—ଗଙ୍ଗା ତ ଏବେ ବାଳିକା ହୋଇ ରହି ନାହିଁ, ସେ ଖୁବ୍ ବଡ଼ ହୋଇଗଲାଣି । ତଥାପି ଅଯଥା ମୋତେ ବିରକ୍ତ କରୁଛି । ମୁଁ ତ ଗଙ୍ଗାର କ୍ଷତି କରି ନାହିଁ । ତଥାପି ସେ ବିନା କାରଣରେ ମୋର ଯଜ୍ଞକୁ ନଷ୍ଟ କରିଦେଲା । ହଉ, ବର୍ତ୍ତମାନ ତାକୁ ଏକ ଶିକ୍ଷା ଦେବି । ସେ ଜାଣୁ, ମୋର ତପୋବଳ କେତେ ଅଛି ? ଏହା ଭାବି ମୁନି ଜହ୍ନୁ ଗଙ୍ଗାର ପ୍ରବାହକୁ ସ୍ତମ୍ଭନ କରିଦେଲେ ଏବଂ ସମସ୍ତ ଜଳକୁ ଚଳୁ କରି ଦେଲେ । ଗଙ୍ଗା ସଙ୍ଗେ ସଙ୍ଗେ ଜଳଶୂନ୍ୟ ହୋଇଗଲେ ।

ଏହା ଶୁଣି ଶୌନକ ପଚାରିଲେ—"ହେ ସୂତ ! ଆପଣଙ୍କ କଥା ଆମକୁ ଏକ ଗପ ପରି ଲାଗୁଛି । ଆପଣ କହନ୍ତୁ, ଏତେ ଗଙ୍ଗାଜଳକୁ ଜଣେ ମଣିଷ ଏକମାତ୍ର ଚୁଳୁରେ କିପରି ପିଇଦେଇ ପାରିବ ?"

ମହର୍ଷି ସୂତ ହସି ହସି କହିଲେ—"ମହାତ୍ମେ ! ଏହା କଣ ବଡ଼ ଆଶ୍ଚର୍ଯ୍ୟ କଥା ? କାର୍ଯ୍ୟ କାରଣରେ ବିଲୀନ ହୁଏ, ଏଥିରେ ସନ୍ଦେହ କରିବାର କଣ ଅଛି ? ଯେତେ ବେଶୀ ବରଫ ହେଉ ପଛକେ ତାକୁ ପାଣିରେ ପକାଇଦେଲେ ତାହା ପାଣି ସହିତ ମିଶିଯାଏ । ଯେତେ ବଡ଼ ବରଗଛ ହେଲେ ବି ତାକୁ ନିଆଁରେ ଜଳାଇ-ଦେଲେ ତାହା ମୁଠାଏ ପାଉଁଶରେ ପରିଣତ ହୋଇଯାଏ । ହଜାରେ ମହଣ କର୍ପୂର ଜଳାଇଦେଲେ ତା'ର ଟିକିଏ ବି ପାଉଁଶ ରହେ ନାହିଁ । ସବୁ କୁଆଡ଼େ ଉଭେଇଯାଏ । ଅଗ୍ନିରୁ ଜଳର ସୃଷ୍ଟି । ମୁନି ଯୋଗବଳରେ ଅଗ୍ନିତତ୍ତ୍ୱକୁ ପ୍ରୟୋଗ କରି ଦେଲେ । ସବୁ ଜଳ କାରଣରେ ବିଲୀନ ହୋଇଗଲା । ଜଳର ପ୍ରବାହ ବନ୍ଦ ହୋଇଗଲା । ଏହାତ ସତ୍ୟଯୁଗର କଥା । ଏଇ କଳିଯୁଗରେ କେତେବର୍ଷ ପୂର୍ବରୁ ଏକ ବିଚିତ୍ର ଘଟଣା ଘଟିଥିଲା । ଜଣେ ଯୋଗୀ ନିଜ ସାଧନାର ଚମତ୍କାରିତା ଦେଖାଇଥିଲେ ।"

ଶୌନକ ପଚାରିଲେ—"ସେ ଯୋଗୀ କଣ କରିଥିଲେ ଆମକୁ ସେ କଥା ପ୍ରଥମେ କୁହନ୍ତୁ ।"

ମହର୍ଷି ସୂତ କହିଲେ—"ଭଗବାନ୍ ! ପ୍ରୟାଗର ଦକ୍ଷିଣରେ ଗ୍ୱାଲିୟର ନାମକ ଶ୍ରେଷ୍ଠ ରାଜ୍ୟଟିଏ ଅଛି । ସେଠାରେ ମହାରାଷ୍ଟ୍ର ଦେଶର ରାଜା ରାଜ୍ଯ କରୁଥିଲେ । ଦିନେ ଜଣେ ଯୋଗୀ ଆସି ପହଞ୍ଚିଲେ । ସେ ଲଙ୍ଗଳା ହୋଇ ବୁଲୁଥିଲେ । ସେହି ଲଙ୍ଗଳା ଅବସ୍ଥାରେ ସେ ରାଜମହଲ ଭିତରକୁ ପଶୁଥିଲେ । ଦ୍ୱାରପାଳ ତାଙ୍କୁ ଅଟକାଇ ଦେଲା । ସେ ଅଟକି ଗଲେ ଏବଂ ଉଦ୍ୟାନର ଏକ ଚବୁତରା ଉପରେ ଠିଆ-ହୋଇ ପରସ୍ରା କରିବାକୁ ଲାଗିଲେ । ଆଶ୍ଚର୍ଯ୍ୟର କଥା, ତାଙ୍କ ପରସ୍ରାର ପ୍ରବାହ ବନ୍ଦ ହେଲା ନାହିଁ । ଉଦ୍ୟାନଟା ପୂରା ବୁଡ଼ିଗଲା । ଗୁହୁଁ ଗୁହୁଁ ଦୁର୍ଗର ଗଡ଼ଖାଇ ପୂର୍ଣ୍ଣ ହୋଇଗଲା । ରାଜମହଲ ଓ ନଗର ବୁଡ଼ିବାକୁ ବସିଲା । ରାତି ଭିତରେ ପ୍ରଳୟଙ୍କରୀ ବନ୍ୟା ଆସିଗଲା । ଲୋକେ ବ୍ୟାକୁଳ ହୋଇ ରାଜାଙ୍କୁ ସବୁ କଥା ଜଣାଇଲେ । ରାଜା ଦୌଡ଼ିଆସି ମହାତ୍ମାଙ୍କ ପାଦତଳେ ପଡ଼ିଗଲେ । ଏହାପରେ ପ୍ରବାହ ବନ୍ଦ ହୋଇଗଲା । ସେହିଦିନଠାରୁ ମହାରାଜ ତାଙ୍କୁ ଖୁବ୍ ସମ୍ମାନ କଲେ । ପ୍ରତିଦିନ ସୁନା ଥାଳିରେ ତାଙ୍କ ପାଖକୁ ଖାଦ୍ୟ ପଠାଗଲା । ସେ ଖାଇସାରି ଥାଳିକୁ ଫିଙ୍ଗି ଦେଉଥିଲେ । କଥା

ହେଉଛ, ଯେ ପ୍ରକୃତିତତ୍ତ୍ୱକୁ ଭଲ ଭାବରେ ଜାଣନ୍ତି ତାଙ୍କ ପକ୍ଷରେ ଜଳକୁ ଶୁଖାଇ ଦେବା, ଅଗ୍ନିକୁ ଶୀତଳ କରିବା ପ୍ରଭୃତି ନାନା ପ୍ରକାର ଅସାଧାରଣ କାର୍ଯ୍ୟ କରିବା ଏକ ସାଧାରଣ କଥା । ଯେଉଁ ମହାତ୍ମା ପ୍ରାକୃତିକ ପଦାର୍ଥର ଉପର ସ୍ତରକୁ ଯାଇସାରିଛନ୍ତି ତାଙ୍କ ପକ୍ଷରେ ଗଙ୍ଗାର ପ୍ରବାହକୁ ଅବରୁଦ୍ଧ କରିଦେବା ବଡ଼କଥା ନୁହେଁ ।"

ଶୌନକ ପଚାରିଲେ—"ତା'ପରେ କଣ ହେଲା ?"

ମହର୍ଷି ସୂତ ପୁଣି କହିଲେ—"ହବ ଆଉ କଣ, ଗଙ୍ଗାଙ୍କୁ ଶୁଖିଯିବାର ଦେଖି ମହାରାଜ ଭଗୀରଥଙ୍କ ହଂସା ଉଡ଼ିଗଲା । ସେ ଭାବିଲେ—ଗଙ୍ଗାଙ୍କୁ ଆଣିବାରେ ଗୋଟିକ ପରେ ଗୋଟିଏ ବିଘ୍ନ ଘଟୁଛି । ଏବେ କଣ କରିବି ? ଏହା ଭାବି ସେ ରଥରୁ ଓହ୍ଲାଇ ପଡ଼ିଲେ ଏବଂ ବିନମ୍ର ସହକାରେ ଜହ୍ନୁଙ୍କୁ ପ୍ରାର୍ଥନା କରିବାକୁ ଲାଗିଲେ ।"

ଭଗୀରଥଙ୍କ ପ୍ରାର୍ଥନାରେ ଜହ୍ନୁ ମୁନି ପ୍ରୀତ ହୋଇ କହିଲେ—"ରାଜନ୍ ! ଆପଣଙ୍କ ଅଭିଳାଷ ବ୍ୟକ୍ତ କରନ୍ତୁ, ମୁଁ ତାହା ପୂରଣ କରିବି ।"

ମହାରାଜ ଭଗୀରଥ କହିଲେ—"ଭଗବନ୍ ! ମୁଁ ପିତୃଗଣଙ୍କୁ ଉଦ୍ଧାର କରିବା ପାଇଁ ଗଙ୍ଗାଙ୍କୁ ନେଇଯିବାକୁ ପ୍ରାର୍ଥନା କରୁଛି । ଦୟା କରି ଗଙ୍ଗାଙ୍କୁ ଛାଡ଼ିଦିଅନ୍ତୁ ।"

ଏହା ଶୁଣି ମୁନି କହିଲେ—"ରାଜନ୍ ! ଗଙ୍ଗା ତ ମୋ' ପେଟରେ ପହଞ୍ଚିଗଲେଣି । ହଉ, ଆପଣ ଯଦି କହୁଛନ୍ତି ମୁଁ ତାଙ୍କୁ ବାହାର କରି ଦେଉଛି । ଏହା କହି ରାଜର୍ଷି ଜହ୍ନୁ ନିଜ କାନ ଦେଇ ଗଙ୍ଗାଙ୍କୁ ବାହାର କରି ଦେଲେ । ଜହ୍ନୁଙ୍କ ଦେହ ବନ୍ଧନରୁ ମୁକ୍ତ ହୋଇ ଭଗବତୀ ଗଙ୍ଗା କହିଲେ—"ବାପା ! ଆପଣ ମୋତେ ନିଜ ଦେହରୁ ଉତ୍ପନ୍ନ କଲେ । ଏଣୁ ଆଜଠାରୁ ମୁଁ ଆପଣଙ୍କ କନ୍ୟା ରୂପେ ପରିଚିତା ହେବି । ଲୋକେ ମୋତେ ଜାହ୍ନବୀ, ଜହ୍ନୁସୁତା ବା ଜହ୍ନୁକନ୍ୟା କହି ଡାକିବେ । ଆଜଠାରୁ ଆପଣ ମୋର ପିତା ହେଲେ ।"

ରାଜର୍ଷି ଜହ୍ନୁ କହିଲେ—"ଠିକ୍ ଅଛି । ଏହା ମୋ' ପକ୍ଷରେ ବଡ଼ ଏକ ସୌଭାଗ୍ୟର କଥା । ଜଗତର ମୁକ୍ତିଦାତ୍ରୀ ତୁ ମୋର ପୁତ୍ରୀ ହେଲୁ । ନିଜ ଔରସରୁ ଜାତ ହେଲେ ମଧ୍ୟ ଯେଉଁ ଧର୍ମପୁତ୍ର ଓ କନ୍ୟା ପରୋପକାର କରନ୍ତି ସେ ପିତୃଗଣଙ୍କୁ ଉଦ୍ଧାର କରିବାରେ ସମର୍ଥ ହୁଅନ୍ତି । ସେ ହିଁ ଯୋଗ୍ୟ ସନ୍ତାନ ରୂପେ ଅଭିହିତ । ତୋର ଜଳ ସ୍ପର୍ଶ କରି ପାପୀ ତାପୀ ତରିଯିବେ । ଜଗତ ତାରିଣୀ ତୁ ମୋର କନ୍ୟା ରୂପେ ଅଭିହିତ ହେବୁ, ଏହାଠାରୁ ମୋ' ପକ୍ଷରେ ଗୌରବର ବିଷୟ ଆଉ କଣ ଅଛି ?"

ମହର୍ଷି ସୂତ କହିଲେ—"ମୁନିଗଣ ! ଭଗବତୀ ଗଙ୍ଗା ରାଜର୍ଷି ଜହ୍ନୁଙ୍କୁ ପିତାରୂପେ ସ୍ୱୀକାର କରି ଓ ତାଙ୍କ ଚାରିପାଖରେ ପରିକ୍ରମା କରି ପ୍ରବାହିତ ହେବାକୁ ଲାଗିଲେ । ମହାରାଜ ଜହ୍ନୁ ଗଙ୍ଗାଙ୍କ ଜଳ ସ୍ପର୍ଶ କରି ଆଶୀର୍ବାଦ ଦେଇ କହିଲେ—"ତୁ ସଂସାରରେ ସମସ୍ତଙ୍କର ବନ୍ଦନୀୟା ହେବୁ । ପିତା ଜହ୍ନୁଙ୍କ ଆଶୀର୍ବାଦ ଲାଭ କରି ଭଗବତୀ ଜାହ୍ନବୀ ଆଗେଇ ଚାଲିଲେ ।"

## ଛପ୍‌ପୟ

ଉତର ହିମାଳୟ ଅଙ୍କ ଅବନି ଯେତେ ନୀଚେ ଆଇ ।
ସାମଗ୍ରୀ ମୁନି ଜହ୍ନୁ ଯଜ୍ଞ କୀ ସବହିଁ ବହାଇ ।।
ଲଖି ଅବିନୟ ମୁନି କର୍‌ୟୋ କୋପ ଗଙ୍ଗା ପୀ ଲୀହ୍ନୀ ।
ଭୂପ ଭଗୀରଥ ବିନୟ ବହୁତ ବିଧି ମୁନି କୀ କୀହ୍ନୀ ।।
ଛୋଡ଼ୀ ଗଙ୍ଗା କାନ ତେଁ, ତନୟା ତିନକୀ ହ୍ୱୈ ଗଈଂ ।
ତବଈ ତେଁ ଭାଗୀରଥୀ, ଖ୍ୟାତ ଜାହ୍ନବୀ ଜଗ ଭଈଂ ।।



# ସଗର ପୁତ୍ରମାନଙ୍କର ମୁକ୍ତିଲାଭ

ରଥେନ ବାୟୁବେଗେନ ପ୍ରୟାନ୍ତମନୁଧାବତୀ ।
ଦେଶାନ୍ ପୁନନ୍ତୀ ନିର୍ଦ୍ଦଗ୍ଧାନାସିଞ୍ଚତ୍ସଗରାତ୍ମଜାନ୍ ॥

(ଭାଗ—୯ସ୍କ-୯ଅ-୧୧ଶ୍ଲୋ)

## ଛପ୍ପୟ

ଅବନୀ ଉତରି ଅବ ବଢ଼ୀ ରହୀ ନହିଁ ଗଙ୍ଗା ଛୋଟୀ ।
ଚଞ୍ଚଳତା ଛୁଟି ଗଈ ଭଈ ଅବ କୃଶତେଂ ମୋଟୀ ॥
ସଙ୍ଗ ଭଗୀରଥ ଲୟେ କପିଲ ନିଜ ଆଶ୍ରମ ଆୟେ ।
ଗଙ୍ଗା ଜଳ କୂଂ ପରସି ପିତର ସବ ସ୍ୱର୍ଗ ସିଧାୟେ ॥
ଭସ୍ମୀଭୂତ ମାଁ ପୟ ପରସି ସଗର ସୁତନ ଛୂଟୀ ବ୍ୟଥା ।
ତଟ ନିବସୈଁ ନିତ ପୟ ପିୟେ, ତିନ ସୁକୃତିନ କୀ କା କଥା ॥

ଆମେ ସଂସାରର ସବୁ ଘଟଣାକୁ ଆଖିରେ ଦେଖିପାରିବା ନାହିଁ । ତେଣୁ କେତେକ କଥା ଉପରେ ବିଶ୍ୱାସ କରିବା ଆବଶ୍ୟକ । ଶ୍ରଦ୍ଧା ଓ ବିଶ୍ୱାସ ଉପରେ ନିର୍ଭର କରି ସଂସାର ଚାଲିଛି । ରୋଗୀ ଚିକିତ୍ସା ହେଲାବେଳେ ଔଷଧର ଦ୍ରବ୍ୟଗୁଣ ପରୀକ୍ଷା କରି ଦେବାପାଇଁ ଚିକିତ୍ସକଙ୍କୁ ଅନୁରୋଧ କରେ ନାହିଁ । ତାହାଲେ ରୋଗୀର ରୋଗ ଭଲ ହେବା ସମ୍ଭବ ନୁହେଁ । ରୋଗରୁ ମୁକ୍ତ ପାଇବା ନିମିତ୍ତ ରୋଗୀଙ୍କୁ ଚିକିତ୍ସକଙ୍କ ଉପରେ ବିଶ୍ୱାସ ରଖିବାକୁ ପଡ଼ିବ । ଚିକିତ୍ସକ ଯେଉଁ ଔଷଧ ଦେବେ ତାହାକୁ ଶ୍ରଦ୍ଧାର ସହିତ ଖାଇବାକୁ ହେବ ଏବଂ ତାଙ୍କ ଉପଦେଶ ଅନୁସାରେ ଖାଦ୍ୟପେୟ ସେବନ କରିବାକୁ ପଡ଼ିବ ।

ପୁଅ ଯଦି ମାଆକୁ କହିବ, ମୋର ପିତା କିଏ ତାହା ଦେଖାଇଦେ, ତେବେ ମା' କିପରି ପୁଅର ଜନକକୁ ପ୍ରତ୍ୟକ୍ଷ କରାଇ ପାରିବ ? ସେ କେବଳ ତା'ର ମା ବୋଲି

କିପରି ପ୍ରମାଣିତ କରିବ ? ତେଣୁ ପୁତ୍ରକୁ ମାତା, ପିତା, ଗୁରୁଜନମାନଙ୍କ କଥା ଉପରେ ବିଶ୍ୱାସ ରଖିବାକୁ ପଡ଼ିବ । ଗୁରୁଜନମାନେ ଯାହାକୁ ମା' ବୋଲି ପରିଚୟ ଦେବେ ତାଙ୍କୁ ମା' କହିବାକୁ ପଡ଼ିବ ଏବଂ ଯାହାକୁ ମା' ପିତାରୂପେ ପରିଚୟ ଦେବେ ତାଙ୍କୁ ବାପା ବୋଲି ଗ୍ରହଣ କରିବାକୁ ହେବ । ଗୁରୁ ଅକ୍ଷର ଶିକ୍ଷା ଦିଅନ୍ତି । ସେ ଆରମ୍ଭରେ କହି ଦିଅନ୍ତି ଏହା ଅ, ଆ, ଇ, ଉ, ଇତ୍ୟାଦି । ଯଦି ପିଲାଟି ପଚାରିବ ଏହା ଆ ନହୋଇ ଉ କାହିଁକି ନ ହେବ ? ତେବେ ଗୁରୁ ତା'ର କି ଉତ୍ତର ଦେବେ ଗୁରୁ କହିବେ 'ପରମ୍ପରା ଅନୁସାରେ ଏହା ଆମେ ଜାଣିଆସୁଛୁ । ଏହି ଆପ୍ତବାକ୍ୟ ଉପରେ ମୋର ବିଶ୍ୱାସ ଅଛି, ତେଣୁ ମୋର କଥାକୁ ବିଶ୍ୱାସର ସହିତ ଗ୍ରହଣ କରିବାକୁ ହେବ ।' ଏହିପରି ବହୁ ଉଦାହରଣ ଅଛି ।

ଆମେ ଆପ୍ତବଚନ ଓ ଗୁରୁଜନମାନଙ୍କ ଉପଦେଶ ଉପରେ ବିଶ୍ୱାସ ରଖି ସଂସାରଯାତ୍ରାରେ ଆଗେଇ ଯାଇ ପାରିବା । ଯଦି ପ୍ରତି ପଦକ୍ଷେପରେ ଆମେ ଯୁକ୍ତି-ତର୍କର ଅବତାରଣା କରିବା ତେବେ ପାଦେ ହେଲେ ବି ଆଗକୁ ଯାଇପାରିବା ନାହିଁ । ଅନେକ କହନ୍ତି—ଅନ୍ୟଜଳ ଯାହା ଗଙ୍ଗାଜଳ ବି ସେଇଆ । ତା'ର ଅଧିକ କିଛି ବିଶେଷତ୍ୱ ଅଛି । ଗଙ୍ଗାଜଳ ସ୍ପର୍ଶ କଲେ ଅନେକ ପାପ କଟିଯାଏ ଏବଂ ଗଙ୍ଗାରେ ଅସ୍ଥି ବା ଭସ୍ମ ବିସର୍ଜନ କଲେ ମୃତ ବ୍ୟକ୍ତି ଉଦ୍ଧାର ପାଇଯାଏ, ଏପରି କରିବାର ଯଥାର୍ଥତା କିଛି ନାହିଁ । ସେମାନଙ୍କୁ କେବଳ ଏତିକି କୁହାଯାଇପାରିବ ଯେ, ପ୍ରାଚୀନ ଶାସ୍ତ୍ରକାରମାନେ ସାଧାରଣ ନଦୀଜଳ ଅପେକ୍ଷା ଗଙ୍ଗାଜଳର ବିଶେଷତ୍ୱ ଅଛି ବୋଲି କହିଛନ୍ତି । ଗଙ୍ଗା ସ୍ୱର୍ଗର ସୋପାନରୂପା, ପାପତାପ ହାରିଣୀ । ଜ୍ଞାତସାରରେ ହେଉ ବା ଅଜ୍ଞାତ ସାରରେ ହେଉ, ଶ୍ରଦ୍ଧାରେ ହେଉ ବା ଅଶ୍ରଦ୍ଧାରେ ହେଉ ଯେ ଗଙ୍ଗାରେ ସ୍ନାନ କରିବ ସେ ମୁକ୍ତି ଲାଭ କରିବ । ଏହି କଥା ବେଦ, ପୁରାଣଠାରୁ ଆରମ୍ଭ କରି ସମସ୍ତେ କହୁଛନ୍ତି । ସେହି ସବୁ ଶାସ୍ତ୍ର, ପୁରାଣକୁ ସତ୍ୟ ବୋଲି ବିଚାରୁଥିବା ଓ ବିଶ୍ୱାସ କରୁଥିବା ଲୋକେ ଏହା ବିଶ୍ୱାସ କରୁଛନ୍ତି । ଏହା ସତ୍ୟ କି ମିଥ୍ୟା, ତାହା ପ୍ରମାଣ କରିବା ପାଇଁ ଯୁକ୍ତିତର୍କ କରିବାର ଆବଶ୍ୟକତା ନାହିଁ, କାରଣ ଯାହା ସ୍ୱତଃସିଦ୍ଧ ସେଥିରେ ଅଯଥା ତର୍କ କରିବାର କି ପ୍ରୟୋଜନଅଛି ?

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଭଗବତୀ ଜାହ୍ନବୀ ବିଭିନ୍ନ ଦେଶକୁ ପବିତ୍ର କରି ଭଗୀରଥଙ୍କ ରଥ ପଛେ ପଛେ ଆଗେଇ ଚାଲିଲେ । ପ୍ରବଳ ବେଗରେ ସେ ବିଷମ ଭୂମିକୁ ସମାନ କରି, ଅଳକନନ୍ଦାକୁ ନିଜ ଭିତରେ ମିଶାଇ ଓ ଗୋବିନ୍ଦଙ୍କ ଗୁଣ ଗାନ କରି କରି ପ୍ରୟାଗରେ ଆସି ପହଞ୍ଚିଲେ । ପ୍ରୟାଗରେ ବଡ଼ ଭଉଣୀ ଯମୁନା ଜାହ୍ନବୀ ଆସୁଥିବା ଦେଖି ଅର୍ଘ୍ୟ ନେଇ ସ୍ୱାଗତ ଜଣାଇବା ପାଇଁ ଆଗେଇଗଲେ ।

ଯମୁନାଙ୍କୁ ଆସୁଥିବାର ଦେଖି ଗଙ୍ଗା ଟିକଏ ପଛକୁ ହଟିଗଲେ । ଯମୁନା ମଧୁର ଭାଷାରେ ପଚାରିଲେ—"ଗଙ୍ଗା, ମୋର କଣ ଭୁଲ ହେଲା । ତୁ ବହୁଦିନ ପରେ ମୋ' ଘରକୁ ଆସିଛୁ । ତୁ ମୋ' ପାଖକୁ ନ ଆସି ଚାଲିଗଲୁ କାହିଁକି ? ତୁ ମୋ' ସହିତ ମିଶିବା ପାଇଁ ସଙ୍କୁଚିତ ହେଉଛୁ କାହିଁକି ? ଆ, ମୋ' ପାଖକୁ ଆ । ଦୁଇ ଭଉଣୀ ପରସ୍ପରକୁ ଆଲିଙ୍ଗନ କରିବା ।"

ଗଙ୍ଗା କହିଲେ—"ଭଉଣୀ ! ତୋତେ ମୋର ବଡ଼ ଭୟ । ତୁ ସବୁ ନଦୀ ମଧ୍ୟରେ ଶ୍ରେଷ୍ଠ ନଦୀ । ତୁ ସମୁଦ୍ର ଗାମିନୀ । ତୁ ପତିଙ୍କ ସହିତ ସଙ୍ଗମ କରି ସାରିଛୁ । ମୁଁ ଏପର୍ଯ୍ୟନ୍ତ ମୋର ପତି ସମୁଦ୍ରଙ୍କୁ ଦେଖି ବି ନାହିଁ । ତୋ' ସହିତ ମିଶିଗଲେ ମୋ'ର ଅସ୍ତିତ୍ୱ ଲୋପ ହୋଇଯିବ । ମୋତେ ଆଉ ପଚାରିବ କିଏ ? ସମସ୍ତେ ତୋତେ ସ୍ମରଣ କରିବେ । ସେଥିପାଇଁ ତୋତେ ମୁଁ ଡରୁଛୁ । ଦୂରରୁ ତୋତେ ଜୁହାର କରି ମୋ' ବାଟରେ ମୁଁ ଯିବାକୁ ଚାହୁଁଛୁ । ତୁ ତୋ' ବାଟରେ ଯା, ମୁଁ ମୋ' ବାଟରେ ଯାଉଛୁ ।"

ଭଗବତୀ ଜାହ୍ନବୀଙ୍କ କଥା ଶୁଣି ଯମୁନା ହସି ହସି କହିଲେ—"ହଇଲୋ, ତୁ ଏଡ଼େ ବଡ଼ଟିଏ ହେଲେ ମଧ୍ୟ ତୋର ପିଲାଳିଆ ଭାବ ଯାଇନି । କହିଲୁ, ଭଉଣୀ ଭଉଣୀ ପାଖକୁ ଆସି, ନ ମିଶି ଦୂରରୁ ନମସ୍କାର କରି କଣ ଚାଲିଯାଏ ? ହୃଦୟ ସହିତ ହୃଦୟର ମିଳନ ନ ହେଲେ ସେ ମିଳନର ମୂଲ୍ୟ କଣ ? ଯେପର୍ଯ୍ୟନ୍ତ ଦୁଇ ଦେହ ମିଶି ଏକ ନ ହୋଇଛି ସେ ପର୍ଯ୍ୟନ୍ତ ମନରେ ସରସତା ଆସିବ କେଉଁଠୁ ? ନାଁରୁ କଣ ମିଳିବ ? ଯେଉଁମାନେ ବଡ଼ ସେମାନେ ସାନମାନଙ୍କର ନାମ ହେଉ, ସେମାନଙ୍କୁ ପ୍ରଶଂସା ମିଳୁ ବୋଲି ଆନ୍ତରିକତାର ସହିତ ଇଚ୍ଛା କରନ୍ତି । ସାନମାନେ ବଡ଼ ହେବା ପରେ ବଡ଼ମାନେ କାର୍ଯ୍ୟ କ୍ଷେତ୍ରରୁ ଧୀରେ ଧୀରେ ଦୂରେଇ ଯାଆନ୍ତି । ତୁ ସର୍ବସମର୍ଥା, ଶକ୍ତିମୟୀ । ହେଉ ତୁ ନ ଆସିଲେ ବି, ମୁଁ ତୋ ସହିତ ମିଶିଯିବି । ଏଠାରୁ ଆଗକୁ ମୋର ନାଁ ନ ରହି ତୋରି ନାମ' ରହିବ ।

ଗଙ୍ଗା ନିରୁତ୍ତର ହୋଇ ଦୌଡ଼ି ଯାଇ ଯମୁନାର ହୃଦୟରେ ମିଶିଗଲେ । ଯମୁନା ଆଦର ସହକାରେ ଆଲିଙ୍ଗନ କରି କହିଲେ—"ଦେଖ, ଆଜିଠାରୁ ତୁ ଆଉ ଅଲଗା ହେବୁ ନାହିଁ । ଆମର ଏହି ମିଳନ ଅନନ୍ତ କାଳ ପାଇଁ ହେଉଥିବ । ତୋର ଧୂଆଁଳିଆ ଶାଢ଼ୀରେ ମୋର ନୀଳଶାଢ଼ୀକୁ ଯୋଡ଼ିଦେ । ଆଗରେ କେବଳ ତୋରି ନାମ ରହିବ । କିନ୍ତୁ ଆମର ଏହି ସଙ୍ଗମ ହେବ ସନାତନ ସଙ୍ଗମ ।"

ନିମ୍ନଭାଗରେ ଥିବା ସରସ୍ୱତୀ କହିଲେ—"ତୁମେ ଦୁହେଁ ପୁଣିପୁଣି ମୋତେ ଭୁଲିଗଲନା କଣ ?"

ଅତୀବ ସ୍ନେହରେ ଯମୁନା କହିଲେ—"ଭଉଣୀ ! ତୋତେ କିଏ କେହି କେବେ ଭୁଲି ପାରିବ ? ତୁ ଆମ ସମସ୍ତଙ୍କ ମଧ୍ୟରେ ବଡ଼ । ଆମେ ତିନିହେଁ ମିଶି ତ୍ରିବେଣୀ ନାମରେ ପରିଚିତ ହେବା । ଏହି ପ୍ରୟାଗ ତ୍ରିବେଣୀ ଓ ସଙ୍ଗମ ନାମରେ ନାମିତ ହେବ । ତୁ ଯେପରି ଲୁଚିରହିଛୁ ସେହିପରି ରହି । ଦେବତାମାନେ ପରୋକ୍ଷପ୍ରିୟ । ବାଣୀ ସର୍ବଦା ଲୁଚିରହି ଥାଏ । ବାଣୀର ଆକାର ନାହିଁ । କିନ୍ତୁ ବାଣୀଦ୍ୱାରା ହିଁ ବିଶ୍ୱର ବ୍ୟାପାର ପରିଚାଳିତ ହେଉଛି । ତୁ ସେହି ସର୍ବ ଶକ୍ତିମୟୀ ବାଣୀ ।"

ଗଙ୍ଗା ବଡ଼ ଭଉଣୀ ଯମୁନାକୁ କହିଲେ—"ଭଉଣୀ ! ଏକା ଏକା ସାଗରଙ୍କ ପାଖକୁ ଯିବା ପାଇଁ ମୋତେ ଲାଜ ଲାଗୁଛି । ତୁ ବି ମୋ' ସହିତ ଚାଲ ।"

ଯମୁନା ସ୍ନେହରେ କହିଲେ—"ଗଙ୍ଗା ! ତୁ ଏତେ ବଡ଼ ହେଲୁଣି, ତୋତେ ପୁଣି ଲାଜ ମାଡ଼ୁଛି । ନିଜର ପ୍ରାଣନାଥଙ୍କ ପାଖରେ ଲଜ୍ଜା କରିବାର କିଣ ଅଛି ? ସଙ୍ଗମ ସୁଖ ହେଉଛି ସର୍ବଶ୍ରେଷ୍ଠ ସୁଖ । ମୋ' ସହିତ ଯେପରି ଆସି ମିଶିଲୁ ପ୍ରାଣପ୍ରିୟ ସାଗରଙ୍କ ସହିତ ସେପରି ମିଶିଯିବୁ ।"

ଗଙ୍ଗା କହିଲେ—"ପ୍ରଥମ ମିଳନରେ ଖୁବ୍ ଲାଜ ଲାଗେ । କେହି ହାତ ଧରି ନେଇ ତାଙ୍କ ପାଖରେ ଛାଡ଼ିବା ଆବଶ୍ୟକ । ତେଣୁ ତୁମେ ଦୁଇ ଭଉଣୀ ମୋ' ସହିତ ଚାଲ ।"

ଯମୁନା କହିଲେ—"ଦେଖ, ତୋର ଟିକିଏ ହେଲେ ବୁଦ୍ଧି ନାହିଁ । ଭୋଜନ, ଭଜନ ଓ ସଙ୍ଗମ ସର୍ବଦା ଏକାନ୍ତରେ କରାଯାଏ । ଅନ୍ୟ କେହି ଥିଲେ ସେଥିରୁ ପ୍ରକୃତ ଆନନ୍ଦ ମିଳେ ନାହିଁ । ହଉ ଚାଲ, ତୋତେ ତାଙ୍କ ଘର ପର୍ଯ୍ୟନ୍ତ ସାଙ୍ଗରେ ନେଇଯିବା । ସେଠାରୁ ମୁଁ ଅଲଗା ମାର୍ଗରେ ଯାଇ ମିଶିବି, ତୁ ବି ଅଲଗା ଯାଇ ମିଶିବୁ । ଦୁଇ ସଉତୁଣୀ ଏକା ସାଙ୍ଗରେ ଯାଇ ପତି ସହିତ ମିଳିତ ହୁଅନ୍ତି ନାହିଁ । ଏସବୁ କଥା କିଣ ତୁ ଜାଣିନୁ ?"

ସରସ୍ୱତୀ ଯମୁନାଙ୍କର ଉପଦେଶ ଶୁଣି ହସି ହସି କହିଲେ—"ଭଉଣୀ, ଗଙ୍ଗା ଏବେ ପିଲା ହୋଇଛି । ଶିଖୁ ଶିଖୁ ସବୁ ଶିଖିଯିବ ଓ ତୋତେ ବି ପାଠ ପଢ଼ାଇବ । ବର୍ତ୍ତମାନ ତାକୁ ଚିଡ଼ି ଲଗାଇବା ବି ଆସେ ନାହିଁ ।"

ତିନି ଭଉଣୀ କହିଲେ—"ହଉ ଚାଲ । କିନ୍ତୁ ଏହିଠାରୁ ତିନି ଜଣଙ୍କ ମିଳିତ ଧାରାର ନାମ ରହିବ ଗଙ୍ଗା ।"

ଭଗବତୀ ଗଙ୍ଗା ତାହାହିଁ ଶୁଣୁଥିଲେ । ଭଗୀରଥଙ୍କ ପଛେ ପଛେ ଗଙ୍ଗା ବାରାଣସୀ ଆଡ଼କୁ ଆଗେଇଲେ । ଚମ୍ପା ଆଦି ଦେଶକୁ ପବିତ୍ର କରି ଗଙ୍ଗା ଯାଇ ସମୁଦ୍ର ପାଖରେ ପହଞ୍ଚିଲେ । ଯମୁନା ଦୂରରୁ ଅଙ୍ଗୁଳି ଦେଖାଇ କହିଲେ—"ନଦୀମାନଙ୍କର ପତି ହେଉଛନ୍ତି ସେହି ସାଗର । ସେଇଠି ତୋର ତାଙ୍କ ସହିତ ସଙ୍ଗମ ହେବ । ବର୍ତ୍ତମାନ ତୁ ତୋ' ବାଟରେ ଯା, ଆଉ ମୋ' ବାଟରେ ମୁଁ ଯାଉଛି ।"

ନିଜର ପ୍ରାଣନାଥଙ୍କୁ ଭେଟିବା ଗଙ୍ଗାଙ୍କର ମନ ଚଞ୍ଚଳ ହେଉଥିଲା । ତଥାପି ସେ ଉପର ମନରେ କହିଲେ—"ମୋତେ ଏକା ଛାଡ଼ିଦେଇ ତୁମେ ଦୁହେଁ କୁଆଡ଼େ ଯାଉଛ । ମୁଁ ବି ତୁମ ସହିତ ଯିବି ।"

ଯମୁନା ଧମକ୍ ଦେଇ କହିଲେ—"ନାଁ, ପ୍ରୟାଗରେ ଆମେ ଯେପରି ମିଶିଥିଲୁ ଏଠାରୁ ସେହିପରି ଅଲଗା ହୋଇଯିବୁ । ପ୍ରୟାଗରେ ଆମେ ତିନିହେଁ ମିଶିଥିବାରୁ ତାହା ଯୁକ୍ତ ତ୍ରିବେଣୀ ଏବଂ ବଙ୍ଗଦେଶରେ ଆମେ ପରସ୍ପରଠାରୁ ମୁକ୍ତ ହୋଇଥିବାରୁ ଏହା ଆଜିଠାରୁ ମୁକ୍ତ ତ୍ରିବେଣୀ ନାମରେ ନାମିତ ହେବ ।"

ଗଙ୍ଗାଙ୍କୁ ଏତିକି କହି ଯମୁନା ସରସ୍ୱତୀଙ୍କୁ କହିଲେ—"ଭଉଣୀ ! ବର୍ତ୍ତମାନ ତୋର ପ୍ରଚ୍ଛନ୍ନ ରୂପ ତ୍ୟାଗ କରି ତୁ ପ୍ରତ୍ୟକ୍ଷ ରୂପରେ ଯାଇ ପତି ସାଗରଙ୍କ ସହିତ ମିଶିବୁ । ଏହାପରେ ଗଙ୍ଗା, ଯମୁନା ଓ ସରସ୍ୱତୀ ତିନୋଟି ଧାରରେ ପରସ୍ପରଠାରୁ ଅଲଗା ହୋଇଗଲେ ।"

ମହର୍ଷି ସୂତ କହୁଛନ୍ତି—"ମୁନିଗଣ ! ବଙ୍ଗ ଦେଶରେ ଥିବା ତ୍ରିବେଣୀଠାରୁ ଏହି ତିନି ନଦୀ ତିନୋଟି ଧାରରେ ପ୍ରବାହିତ ହେଲେ । ଭଗବତୀ ଗଙ୍ଗା ଅନ୍ୟ ଦୁଇ ଭଉଣୀଙ୍କଠାରୁ ଅଲଗା ହୋଇ ସାଗର ଅଭିମୁଖେ ଆଗେଇଲେ । ସଗରଙ୍କ ପୁତ୍ରମାନେ ଯେଉଁଠି ଭୂମିକୁ ଖୋଳି ପକାଇଥିଲେ ଦେବୀ ଗଙ୍ଗା ନିଜର ପବିତ୍ର ଜଳରେ ସେ ଅଞ୍ଚଳକୁ ପୂର୍ଣ୍ଣ କରିଦେଲେ । ତାହାହିଁ ସାଗର ନାମରେ ଅଭିହିତ । ସେଠାରେ ଗଙ୍ଗା ସାଗର ସହିତ ମିଳିତ ହୋଇଛନ୍ତି । ତେଣୁ ସେ ସ୍ଥାନଟି ଗଙ୍ଗାସାଗର ସଙ୍ଗମ ନାମରେ ସୁବିଦିତ । ମକର ସଂକ୍ରାନ୍ତି ଦିନ ସେଠାରେ ଏକ ବଡ଼ ମେଳା ହୁଏ । ସେଦିନ ମେଳା ସ୍ଥାନରୁ ସାଗର କିଛିଦୂର ପଛକୁ ଘୁଞ୍ଚିଯାଏ ଏବଂ ମେଳା ସରିବା ପରେ ପରେ ତାହାକୁ ପୁଣି ଜଳରେ ବୁଡ଼ାଇ ଦିଏ ।

ସଗରଙ୍କର ଷାଠିଏ ହଜାର ପୁତ୍ର ମାଟି ଖୋଳି ଯେଉଁ ମାର୍ଗରେ କପିଳାଶ୍ରମରେ ପ୍ରବେଶ କରିଥିଲେ ଗଙ୍ଗା ସେହି ମାର୍ଗରେ ଯାଇ ସେମାନଙ୍କ ଭସ୍ମକୁ ଜଳରେ ବୁଡ଼ାଇଦେଲେ । ଗଙ୍ଗାଜଳ ସ୍ପର୍ଶ କରି ସଗରଙ୍କ ପୁତ୍ରଗଣ ଯମଯନ୍ତ୍ରଣାରୁ ମୁକ୍ତ ହୋଇ

ସ୍ୱର୍ଗଯାତ୍ରା କଲେ । ଦେବଗଣ ପୁଷ୍ପବୃଷ୍ଟି କଲେ, ଗନ୍ଧର୍ବମାନେ ସଙ୍ଗୀତ ଗାନ କଲେ ଏବଂ ଅପ୍ସରାଗଣ ନୃତ୍ୟ କରିବାକୁ ଲାଗିଲେ । ଗଙ୍ଗାଙ୍କର ଜୟଧ୍ୱନିରେ ଗଗନ ପବନ ମୁଖରିତ ହୋଇଉଠିଲା ।

ଗଙ୍ଗାବତରଣ କଥା ଶୁଣି ସାରି ଶୌନକ ପଚାରିଲେ—"ଭଗବନ୍ ! ଆପଣ ଗଙ୍ଗାଙ୍କର ମାହାତ୍ମ୍ୟ କଥା କହିଲେ । କିନ୍ତୁ ହଜାର ହଜାର ବର୍ଷ ଧରି ପଡ଼ିରହିଥିବା ଭସ୍ମ ଗଙ୍ଗାଜଳ ସ୍ପର୍ଶ କରିବାମାତ୍ରେ ନରକ ଯାତନା ଭୋଗ କରୁଥିବା ଜୀବ ମୁକ୍ତ ହୋଇଯିବା କଥାଟା ବଡ଼ ଆଶ୍ଚର୍ଯ୍ୟଜନକ ମନେ ହେଉଛି ।"

ମହର୍ଷି ସୂତ କହିଲେ—"ମହାଶୟ ! ଏଥିରେ ଆଶ୍ଚର୍ଯ୍ୟ ହେବାର କଣ ଅଛି ? ଶହେ ଯୋଜନ ଦୂରରେ ଥାଇ ମଧ୍ୟ ଯଦି କେହି ଗଙ୍ଗାଙ୍କ ନାମ ଉଚ୍ଚାରଣ କରିବ ତେବେ ସେ ପାପମୁକ୍ତ ହୋଇଯିବ । ପୁଣି ଯାହାର ଭସ୍ମ ବା ଅସ୍ଥିକୁ ଗଙ୍ଗା ଜଳରେ ପକାଇ ଦିଆଯିବ ତାର ମୁକ୍ତି ଯେ ନିଶ୍ଚିତ ସେଥିରେ ସନ୍ଦେହ କରିବାର ନାହିଁ । ଥରେ ଜଣେ ରାଜା ତ୍ରିବେଣୀରେ ସ୍ନାନ କରିବା ପାଇଁ ଆସିଲେ । ତାଙ୍କ ସାଙ୍ଗରେ ଅନେକ ରାଣୀ ଆସିଥା'ନ୍ତି । ସେମାନେ ଗଙ୍ଗାରେ ସ୍ନାନ କରିବା ମାତ୍ରେ ହଜାର ହଜାର ମୃଗ ବିମାନରେ ବସି ସ୍ୱର୍ଗଯାତ୍ରା କଲେ । ଏପରି ଏକ ବିଚିତ୍ର ଘଟଣା ଦେଖି ରାଣୀମାନେ ପ୍ରଶ୍ନ କରିବାରୁ ରାଜପୁରୋହିତ କହିଲେ—"ଆପଣମାନେ କୁଙ୍କୁମ ମିଶ୍ରିତ କସ୍ତୂରୀ ବ୍ୟବହାର କରନ୍ତି । ସେହି କସ୍ତୂରୀ ଗଙ୍ଗାଜଳ ସ୍ପର୍ଶ କରିବାରୁ ଯେଉଁ ମୃଗଙ୍କୁ ମାରି କସ୍ତୂରୀ ସଂଗ୍ରହ କରାଯାଇଥିଲା ସେମାନେ ସ୍ୱର୍ଗଯାତ୍ରା କଲେ । ପରମ୍ପରାର ସ୍ପର୍ଶରେ, ନାମ ଉଚ୍ଚାରଣରେ ଯଦି ଏପରି ସୁଫଳ ମିଳେ, ତେବେ ଯେଉଁମାନେ ପ୍ରତିଦିନ ଗଙ୍ଗାରେ ସ୍ନାନ କରୁଛନ୍ତି ତାଙ୍କ ପୁଣ୍ୟ ବିଷୟରେ କିଛି କହିବା ସମ୍ଭବ ନୁହେଁ ।"

ମହର୍ଷି ସୂତ କହିଲେ—"ମୁନିଗଣ ! ସ୍ୱୟଂ ଚତୁର୍ମୁଖ ବ୍ରହ୍ମା, ସହସ୍ର ଫଣାଧାରୀ ଶେଷନାଗ ମଧ୍ୟ ଗଙ୍ଗାଙ୍କର ମାହାତ୍ମ୍ୟ ବର୍ଣ୍ଣନା କରିବା ପାଇଁ ସମର୍ଥ ନୁହନ୍ତି । ମୁଁ ଗୋଟିଏ ମୁହଁରେ ତାଙ୍କ ମହିମା କିପରି କହି ପାରିବି ? ଥରେ ଗରୁଡ଼ ପକ୍ଷୀ ଗଙ୍ଗାରେ ଭାସି ଯାଉଥିବା ଏକ ସାପକୁ ଖାଇବା ପାଇଁ ଉଦ୍ୟମ କଲେ । ଶେଷରେ ସେ ସାପଟିକୁ ଧରି ଗିଳି ପକାଇବା ମାତ୍ରେ ସେ ଚତୁର୍ଭୁଜ ହୋଇ, ପୀତାମ୍ବର ପରିଧାନ କରି ଗରୁଡ଼ଙ୍କ ପିଠି ଉପରେ ବସିପଡ଼ିଲା । ଗରୁଡ଼ ତା'ର ବାହନ ହେଲେ, ଗଙ୍ଗାଙ୍କ ପ୍ରସାଦରୁ ଭକ୍ଷକ ବାହାକ ହେଲା । ତେଣୁ ଯେ ଗଙ୍ଗା ଜଳରେ ପ୍ରାଣ ବିସର୍ଜନ କରେ ତା'ର ସ୍ଥାନ ବୈକୁଣ୍ଠରେ । ଗରୁଡ଼ କଣ କରିବେ ? ଗଙ୍ଗାଙ୍କ ପ୍ରଭାବକୁ ତ କମାଇଦେଇ ପାରିବେ ନାହିଁ । ସେ ସାପଟିକୁ ପିଠିରେ ବସାଇ ବୈକୁଣ୍ଠରେ ପହଞ୍ଚାଇ ଦେଲେ ।"

ମୁନିଗଣ ! ମହାରାଜ ଭଗୀରଥଙ୍କ ନିମିତ୍ତ କରି ଭଗବତୀ ଭାଗୀରଥୀ ପାପୀମାନଙ୍କୁ ଉଦ୍ଧାର କରିବା ପାଇଁ ପୃଥିବୀରେ ଅବତୀର୍ଣ୍ଣ ହୋଇଛନ୍ତି । ଗଙ୍ଗା ନ ଥିଲେ କିଏ ଦୀନ, ଦୁଃଖୀ, ପାପୀଙ୍କ ଦୁଃଖ ଦୂର କରିଥାନ୍ତା । ସଂସାର ଦୁଃଖରୁ କିଏ ନିଜକୁ ରକ୍ଷାକରି ପାରିଥାନ୍ତା । ଗଙ୍ଗାଙ୍କ ଦୟାରୁ ଅସଂଖ୍ୟ ପାପୀ ସ୍ୱର୍ଗଲାଭ କରିଛନ୍ତି ଏବଂ ମୁନି, ଋଷି, ରାଜର୍ଷି, ବ୍ରହ୍ମର୍ଷି ମୋକ୍ଷ ପଥର ପଥିକ ହୋଇଛନ୍ତି ।"

ମହର୍ଷି ସୂତ କହିଲେ—"ଖୁବ୍ ସଂକ୍ଷେପରେ ସଗର ପୁତ୍ରଙ୍କ ପ୍ରସଙ୍ଗ ବର୍ଣ୍ଣନାକ୍ରମେ ଗଙ୍ଗାବତରଣ କଥା କହିଲି । ସଗର ପୁତ୍ରମାନେ ଜମ୍ବୁଦ୍ୱୀପର ଚାରି-ପାଖରେ ପୃଥିବୀକୁ ଖୋଳି ପକାଇଥିଲେ । ଗଙ୍ଗା ସେଠାରେ ଜଳପୂର୍ଣ୍ଣ କରି ସାଗର ସହିତ ମିଶାଇ ଦେଲେ । ସେହିଦିନଠାରୁ ସମୁଦ୍ରକୁ ସାଗର ବୋଲି କହିବା ଆରମ୍ଭ ହେଲା । ଗଙ୍ଗାଙ୍କୁ ପୃଥିବୀକୁ ଆଣିବାର ସୌଭାଗ୍ୟ ମହାରାଜ ଭଗୀରଥ ଲାଭ କଲେ । ସେଥିପାଇଁ ଗଙ୍ଗା ଭାଗୀରଥୀ ନାମରେ ପରିଚିତା ହେଲେ । ଏବେ ଆପଣମାନେ ଆଉ କଣ ଜାଣିବା ପାଇଁ ଇଚ୍ଛା କରୁଛନ୍ତି ?"

ଶୌନକ ପଚାରିଲେ—"ଆପଣ ଇକ୍ଷ୍ୱାକୁ ବଂଶ ବର୍ଣ୍ଣନା ପ୍ରସଙ୍ଗରେ ସ୍ୱାୟଂଭୁବ ମନୁଙ୍କଠାରୁ ଆରମ୍ଭ କରି ମହାରାଜ ଭଗୀରଥଙ୍କ ପର୍ଯ୍ୟନ୍ତ ସବୁ ରାଜାଙ୍କ କଥା କହିଲେ । ବର୍ତ୍ତମାନ ପରବର୍ତ୍ତୀ ରାଜାମାନଙ୍କ କଥା କହନ୍ତୁ । ସେହି ବଂଶରେ ଭଗବାନ୍ ରାମଚନ୍ଦ୍ର ଅବତୀର୍ଣ୍ଣ ହୋଇଥିଲେ । ତେଣୁ ମହାରାଜ ଭଗୀରଥଙ୍କ ପରେ କିଏ କିଏ ରାଜା ହେଲେ କୁହନ୍ତୁ ।"

ଏହା ଶୁଣି ମହର୍ଷି ସୂତ କହିଲେ—"ମୁନିଗଣ ! ଇକ୍ଷ୍ୱାକୁ ବଂଶରେ ଭଗୀରଥଙ୍କ ପରେ ଯେଉଁ ରାଜାମାନେ ଜନ୍ମ ହୋଇଥିଲେ ମୁଁ ସେମାନଙ୍କ କଥା କହୁଛି, ଆପଣମାନେ ମନଦେଇ ଶୁଣନ୍ତୁ ।"

## ଛପ୍ପୟ

ଗଙ୍ଗା ଗଙ୍ଗା କହେ ନିତ୍ୟ ଗଙ୍ଗାଜଳ ପୀଓଁ ।
ସଦା ବସୌଂ ତଟ ନିକଟ ଗଙ୍ଗାଜଳ ତୈଂଇ ଜୀଓଁ ॥
ଗଙ୍ଗାରଜ ତନ ଲାଇ ନହାଓଁ ଗଙ୍ଗାଜଳ ମହଁ ।
ବସୌଂ ଗଙ୍ଗ ପୟ ପରସି ଅନଲ ବହଁରେ ଜିହ ଥଳ ମହଁ ॥
ଶ୍ରୀଗଙ୍ଗା କେ ନାମ ତେ, କୋଟି ଜନ୍ମ ପାତକ ନସହିଁ ।
ଭୋଗେଁ ଭୂପେଁ ଭୋଗ ବହୁ, ଅନ୍ତ ଜାହି ସୁରପୁର ବସହିଁ ॥



# ନଳଦମୟନ୍ତୀ ଚରିତ

ଋତୁପର୍ଣ୍ଣୋ ନଳସଖୋ ଯୋଽଶ୍ୱବିଦ୍ୟାମୟାନ୍ନଳାତ୍ ।
ଦତ୍ତ୍ୱାକ୍ଷ ହୃଦୟଂ ଚାସ୍ମୈ ସର୍ବକାମସ୍ତୁ ତତ୍ସୁତଃ ॥

(ଭାଗ ୯ସ୍କ-୯ଅ-୧୭ଶ୍ଳୋ)

## ଛପ୍ପୟ

ଧନ୍ୟ ଭଗୀରଥ ଗଙ୍ଗ ଲାଇ ଜଗ କୀନ୍ହୌ ପାବନ ।
ତିନକେ ସୁତ 'ଶ୍ରୁତ' ଭୟେ ତାସୁ ସୁତ 'ନାଭ' ସୁହାବନ ॥
ସିନ୍ଧୁ ଦ୍ୱୀପ ତିନ ତନୟ ଭୟେ ତିନକେ ଅୟୁତାୟୁ ।
ତିନକେ ସୁତ ଋତୁପର୍ଣ୍ଣ ସଖାନଳ କେ ପରମାୟୁ ॥
ଦମୟନ୍ତୀ ପତି ନଳ ଭୟେ, ତିନ କଳି ଦୟେ ଦୁଃଖ ଅତି ।
ହ୍ୱୈ ବିରୂପ ଋତୁପର୍ଣ୍ଣ କେ, ବନେ ସାରଥୀ ଭୂମିପତି ॥

ବିଦ୍ୟା ଏପରି ଏକ ଧନ ଯେ, ସବୁ ପରିତ୍ୟାଗ କଲେ ମଧ୍ୟ ତାକୁ ତ୍ୟାଗ କରିହୁଏ ନାହିଁ । ବିଦ୍ୟା ମଧ୍ୟ କାହାରିକୁ ଛାଡ଼ିଯାଏ ନାହିଁ । ଧନ ଚାଲିଯାଏ, ସ୍ତ୍ରୀ ଛାଡ଼ିଯାଏ, ସ୍ୱଜନ ଅପ୍ରିୟ ହୋଇଯାଏ, ଐଶ୍ୱର୍ଯ୍ୟ ନଷ୍ଟ ହୁଏ, ଶକ୍ତି କ୍ଷୀଣ ହୁଏ, ପ୍ରତିଷ୍ଠା ଧୂଳିସାତ୍ ହୋଇଯାଏ, ଧନ ଦାନ କଲେ ସରିଯାଏ, କିନ୍ତୁ ବିଦ୍ୟା ଏପରି ଏକ ଧନ ଯାହା ଯେତେ ଦାନ କଲେ ମଧ୍ୟ ସେତେ ବଢ଼ୁଥାଏ । ବିଦ୍ୟା ଲାଭର ତିନୋଟି ଉପାୟ ଅଛି । ପ୍ରଥମ ହେଉଛି ଗୁରୁ ଶୁଶ୍ରୂଷା । ଗୁରୁସେବା ଦ୍ୱାରା ଯେଉଁ ବିଦ୍ୟା ଲାଭ ହୁଏ ତାହାକୁ ଶ୍ରେଷ୍ଠ ସ୍ଥାନ ଦିଆଯାଏ । ଦ୍ୱିତୀୟ ଉପାୟ ହେଉଛି ଗୁରୁଙ୍କୁ ଯଥେଷ୍ଟ ଧନ ଦେଇ ବିଦ୍ୟା ଅର୍ଜନ କରିବା । ଏହାକୁ ଶାରୀରିକ ସେବା ନ କହି ଆର୍ଥିକ ସେବା କୁହାଯାଏ । ତୃତୀୟ ଉପାୟ ହେଉଛି ଆଦାନ ପ୍ରଦାନ ଦ୍ୱାରା ବିଦ୍ୟା ଅର୍ଜନ କରିବା ।

ଜଣେ ଅନ୍ୟକୁ ଗୋଟିଏ ବିଦ୍ୟା ଶିଖାଇଲେ ପ୍ରତିଦାନ ସ୍ୱରୂପ ସେ ଆଉ ଗୋଟିଏ ବିଦ୍ୟା ଶିଖାଇ ଦିଅନ୍ତି । ବିଦ୍ୟା ଅର୍ଜନ କ୍ଷେତ୍ରରେ ଏହି ନୀତିଟି ଉପାଯୁକ୍ତ ପ୍ରାଧାନ୍ୟ ଦିଆଯାଇଛି । ଛଳନାଦ୍ୱାରା ଅର୍ଜିତ ବିଦ୍ୟା ସଫଳ ହୁଏ ନାହିଁ ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଆପଣ ମହାରାଜ ଭଗୀରଥଙ୍କ ପରେ ଇକ୍ଷ୍ୱାକୁ ବଂଶୀୟ ରାଜାମାନଙ୍କ କଥା ପଚାରୁଥିଲେ, ତାହା ମୁଁ କହୁଛି । ଦିଲୀପଙ୍କ ଯଶସ୍ୱୀ ପୁତ୍ର ମହାରାଜ ଭଗୀରଥ ଗଙ୍ଗାଙ୍କୁ ଆଣିଥିବାରୁ ବିଶ୍ୱ ପ୍ରସିଦ୍ଧ ଲାଭ କରିଥିଲେ । ତାଙ୍କର ନାମ ଅନୁସାରେ ଗଙ୍ଗାଙ୍କୁ ଭାଗୀରଥୀ କୁହାଯାଏ । ସେହି ପୁଣ୍ୟଶ୍ଳୋକ ଭଗୀରଥଙ୍କ ପୁଅ ଶ୍ରୁତ ଥିଲେ ପ୍ରବଳ ପରାକ୍ରମୀ । ତାଙ୍କଠାରୁ ନାଭ ଓ ନାଭଙ୍କଠାରୁ ସିନ୍ଧୁଦ୍ୱୀପ ଜନ୍ମ ଗ୍ରହଣ କରିଥିଲେ । ସିନ୍ଧୁଦ୍ୱୀପଙ୍କ ପୁତ୍ର ଆଯୁତାୟୁ ଥିଲେ ଜଣେ ଧର୍ମାତ୍ମା ଓ ଦୀର୍ଘଜୀବୀ ମହାପୁରୁଷ । ତାଙ୍କଠାରୁ ପରମ ତେଜସ୍ୱୀ ବିଶ୍ୱ ବିଖ୍ୟାତ ମହାରାଜ ଋତୁପର୍ଣ୍ଣ ଜନ୍ମ ଗ୍ରହଣ କରିଥିଲେ । ସେ ଦ୍ୟୂତ ବିଦ୍ୟାରେ ଖୁବ୍ ପାରଦର୍ଶୀ ଥିଲେ । ଦ୍ୟୂତ ବିଦ୍ୟାରେ କେହି ତାଙ୍କୁ ପରାଜିତ କରିପାରୁ ନଥିଲେ । ଅଯୋଧ୍ୟାର ରାଜା ମହାରାଜ ଋତୁପର୍ଣ୍ଣଙ୍କ ଖ୍ୟାତି ଚାରିଆଡ଼େ ପ୍ରସାର ଲାଭ କରିଥିଲା । ତାଙ୍କର ପାଖରେ ମହାରାଜ ନଳ ସାରଥି ହୋଇ ରହିଥିଲେ ।

ଏହା ଶୁଣି ଶୌନକ ପଚାରିଲେ—"ଭଗବନ୍ ! ମହାରାଜ ନଳ କିଏ ? ସେ ଅଯୋଧ୍ୟା ଆସି ମହାରାଜ ଋତୁପର୍ଣ୍ଣଙ୍କ ସାରଥି କିପରି ହେଲେ ? ରାଜା ହୋଇ ମଧ୍ୟ ନଳ ଜଣେ ବେତନ ଭୋଗୀ ସାରଥି ରୂପେ ଦାସତ୍ୱ ବରଣ କରିଥିଲେ କାହିଁକି ?"

ଶୌନକଙ୍କ ପ୍ରଶ୍ନ ଶୁଣି ମହର୍ଷି ସୂତ କହିଲେ—"ମୁନିଗଣ ! ପୁଣ୍ୟଶ୍ଳୋକ ରାଜର୍ଷି ନଳ ଥିଲେ ନିଷଧ ଦେଶର ରାଜା । ସେ ଜଣେ ଧାର୍ମିକ ଓ ପ୍ରଜା ପାଳକ ରାଜା ଥିଲେ । ମହାରାଜ ଯୁଧିଷ୍ଠିରଙ୍କ ପରି ସେ ଜୁଆ ଖେଳରେ ହାରି ଯାଇଥିଲେ । ପରମା ସୁନ୍ଦରୀ ଦମୟନ୍ତୀଙ୍କ ପାଇଁ କଳିଯୁଗ ତାଙ୍କ ଉପରେ ରାଗି ଯାଇଥିଲା । ସେଥିପାଇଁ ତାଙ୍କୁ ନାନା ଦୁଃଖ ସହିବାକୁ ପଡ଼ିଥିଲା ।"

ଶୌନକ ପଚାରିଲେ—"ଭଗବନ୍ ! ରାଜର୍ଷି ନଳଙ୍କ ଜୀବନବୃତ୍ତାନ୍ତ ଆମକୁ ଦୟାକରି କହନ୍ତୁ ।"

ମହର୍ଷି ସୂତ କହିଲେ—"ମୁନିଗଣ ! ନଳ ଚରିତ ବହୁତ ବଡ଼ ବିଷୟ । ବର୍ତ୍ତମାନ ମୁଁ ଇକ୍ଷ୍ୱାକୁବଂଶୀୟ ମହାରାଜ ଋତୁପର୍ଣ୍ଣଙ୍କ କଥା କହୁଛି । ମହାରାଜ ନଳ ତାଙ୍କ ପାଖରେ ସାରଥି ହୋଇ ରହିଥିଲେ । ତେଣୁ ପ୍ରସଙ୍ଗତଃ ସଂକ୍ଷେପରେ ନଳ ଚରିତ କହୁଛି, ଆପଣମାନେ ମନ ଦେଇ ଶୁଣନ୍ତୁ ।"

ପ୍ରୟାଗ ନିକଟରେ ଯେଉଁ ନିଷଧ ଦେଶ ଅଛି ସେଠାରେ ପୂର୍ବେ ବୀରସେନ ନାମକ ରାଜା ରାଜତ୍ୱ କରୁଥିଲେ । ତାଙ୍କର ଦୁଇ ପୁଅ ଥିଲେ । ବଡ଼ ପୁଅ ନାମ ନଳ ଓ ସାନ ପୁଅ ନାମ ପୁଷ୍କର ଥିଲା । ବଡ଼ ପୁଅ ହୋଇଥିବାରୁ ନଳ ରାଜଗାଦୀରେ ବସିଲେ । ବିଦର୍ଭର ରାଜା ଭୀମଙ୍କ କନ୍ୟା ଦମୟନ୍ତୀ ସ୍ୱୟମ୍ବର ସଭାରେ ଉପସ୍ଥିତ ରାଜା, ମହାରାଜା ତଥା ଦେବଗଣଙ୍କୁ ଛାଡ଼ି ନଳଙ୍କୁ ପତିରୂପେ ବରଣ କଲେ ।

ବିଦର୍ଭ ରାଜାଙ୍କର କୌଣସି ସନ୍ତାନ ନ ହେବାରୁ ରାଜା ଓ ରାଣୀ ବଡ଼ ମନ ଦୁଃଖରେ ଥାନ୍ତି । ଦିନେ ଦମନ ନାମକ ଜଣେ ମହର୍ଷି ରାଜାଙ୍କର ଅତିଥି ହେଲେ । ରାଜା ଓ ରାଣୀଙ୍କ ସେବା ଓ ଆତିଥ୍ୟରେ ପ୍ରୀତ ହୋଇ ମହର୍ଷି କହିଲେ— "ରାଜନ୍ ! ମୁଁ ଖୁବ୍ ପ୍ରୀତ ହୋଇଛି । ଆପଣଙ୍କର କି ଉପକାର କରିପାରିବି କହନ୍ତୁ । କଣ କଲେ ଆପଣଙ୍କର ଚିନ୍ତା ଦୂର ହେବ ?"

ରାଜା କହିଲେ —"ବ୍ରହ୍ମନ୍ ! ଆପଣ ସର୍ବଜ୍ଞ । ଆପଣଙ୍କୁ କଣ ଅଜଣା ଅଛି ? ତଥାପି ଆପଣ ପଚାରୁଥିବାରୁ ମୁଁ କହୁଛି । ଆମର କୌଣସି ସନ୍ତାନ ନାହାନ୍ତି । ଆପଣ ଦୟାକରି ଆମକୁ ଯେ କୌଣସି ସନ୍ତାନଟିଏ ଦିଅନ୍ତୁ ।"

ପ୍ରସନ୍ନତା ପ୍ରକାଶ କରି ମହର୍ଷି କହିଲେ—"ରାଜନ୍ ! ଆପଣଙ୍କର ଏକ ସୁନ୍ଦରୀ କନ୍ୟା ହେବ । ତିନିଲୋକର କୌଣସି ସୁନ୍ଦରୀ ତାର ସୌନ୍ଦର୍ଯ୍ୟ ସହିତ ତୁଳନୀୟ ହୋଇ ପାରିବେ ନାହିଁ । ତା'ଛଡ଼ା ଆପଣଙ୍କର ତିନୋଟି ପୁଅ ହେବେ ।"

ଏକ ସମୟରେ ଚାରୋଟି ସନ୍ତାନର ବରଲାଭ କରି ରାଜା ଆନନ୍ଦିତ ହୋଇ କହିଲେ—"ବ୍ରହ୍ମନ୍ ! ମୁଁ କୃତ କୃତ୍ୟ ହେଲି । ଆପଣଙ୍କଠାରେ ଆଜୀବନ କୃତଜ୍ଞ ହୋଇ ରହିଲି ।" ରାଜାଙ୍କ ଦ୍ୱାରା ସମ୍ମାନିତ ହୋଇ ଦମନ ମହର୍ଷି ବିଦାୟ ନେଲେ । ଯଥାସମୟରେ ରାଜାଙ୍କର ସର୍ବଲକ୍ଷଣ ସମ୍ପନ୍ନା ସର୍ବଶ୍ରେଷ୍ଠ ସୁନ୍ଦରୀ କନ୍ୟା ଜାତ ହେଲା । ରାଜା ଦମନ ମୁନିଙ୍କ ସ୍ମୃତି ଉଦ୍ଦେଶ୍ୟରେ କନ୍ୟାର ନାମ ଦମୟନ୍ତୀ ଦେଲେ । ପରେ ଜନ୍ମ ଗ୍ରହଣ କରିଥିବା ତିନି ପୁଅ ଦମ, ଦାନ୍ତ ଓ ଦମନ ନାମରେ ଅଭିହିତ ହେଲେ ।

ଦମୟନ୍ତୀ ଦିନକୁ ଦିନ ଚନ୍ଦ୍ରକଳା ପରି ବଢ଼ିବାକୁ ଲାଗିଲେ । କୁସୁମ କଳିକା ଫୁଟି ଆସିଲା ପରି ଓ ମାଧବୀ ଲତା ବିକଶିତ ହେଲା ପରି ଦମୟନ୍ତୀଙ୍କ ଅଙ୍ଗ ସୌନ୍ଦର୍ଯ୍ୟ ବିକାଶ ଲାଭ କଲା । ଦମୟନ୍ତୀ ବାଲ୍ୟାବସ୍ଥା ଅତିକ୍ରମ କରି ଯୌବନରେ ପଦାର୍ପଣ କଲେ । କନ୍ୟାକୁ ବିବାହ ଦେବାପାଇଁ ରାଜା ଚିନ୍ତିତ ହୋଇ ପଡ଼ିଲେ ।

ଦମୟନ୍ତୀ ଯେପରି ସୁନ୍ଦରୀ ନିଷଧାଧିପ ନଳ ସେହିପରି ସୁନ୍ଦର ଥିଲେ । ମହାରାଜ ନଳ ଦେବତାମାନଙ୍କଠାରୁ ଅଧିକ ସୁନ୍ଦର ଦେଖା ଯାଉଥିଲେ । ଲୋକେ

ତାଙ୍କୁ ମର୍ତ୍ତ୍ୟର ଅଶ୍ୱିନୀକୁମାର ବୋଲି କହୁଥିଲେ । ଯେ ଥରେ ତାଙ୍କୁ ଦେଖୁଥିଲା ତାର ନୟନ, ମନ ମହାରାଜ ନଳଙ୍କ ସୌନ୍ଦର୍ଯ୍ୟରେ ଅଭିଭୂତ ହୋଇ ଯାଉଥିଲା । ବହୁ ସାଧୁ, ସନ୍ଥ, ବ୍ରାହ୍ମଣ ଏ ରାଜ୍ୟରୁ ସେ ରାଜ୍ୟକୁ ଯିବା ଆସିବା କରୁଥିଲେ । ସେମାନେ ଉଭୟ ରାଜ୍ୟରେ ନିଜ ନିଜ ରାଜ୍ୟର ଖବର ଶୁଣାଉଥିଲେ । ଯେଉଁମାନେ ନଳଙ୍କ ପାଖକୁ ଯାଉଥିଲେ ସେମାନେ କହୁଥିଲେ—ରାଜନ୍ ! ବିଦର୍ଭ ରାଜକୁମାରୀ ଦମୟନ୍ତୀ ହିଁ ଆପଣଙ୍କ ପାଇଁ ଯୋଗ୍ୟ କନ୍ୟା । ନିଷଧ ଦେଶରୁ ଆସୁଥିବା ଲୋକେ ଦମୟନ୍ତୀଙ୍କୁ କହୁଥିଲେ—ରାଜକୁମରୀ ! ନଳଙ୍କ ବ୍ୟତୀତ ତୁମର ଯୋଗ୍ୟ ପତି ଏ ଜଗତରେ ନାହାନ୍ତି ।

ସାଧାରଣତଃ ଯେଉଁ କଥାକୁ ଆମେ ଶହେ ଥର ଶୁଣୁ ତାହା ଆମର ମ୍ମରଣୀୟ ହୋଇ ରହିଯାଏ । ନଳ ଓ ଦମୟନ୍ତୀ ପରସ୍ପର କଥା ଶୁଣି ଶୁଣି କେହି କାହାକୁ ନ ଦେଖି ମଧ୍ୟ ଉଭୟ ପରସ୍ପର ପ୍ରତି ଆସକ୍ତ ହୋଇ ପଡ଼ିଲେ । ସଂଯୋଗ-ବଶତଃ ଏକ ଘଟଣା ଘଟିଲା । ରାଜାଙ୍କ ଉଦ୍ୟାନକୁ ବହୁତ ରାଜହଂସ ଆସୁଥିଲେ । ସେମାନଙ୍କ ମଧ୍ୟରେ ଗୋଟିଏ ହଂସର ପକ୍ଷ ସୁବର୍ଣ୍ଣ ବର୍ଣ୍ଣଥିଲା । ରାଜା ନଳ ସେହି ହଂସଟିକୁ ଧରି ପକାଇଲେ । ହଂସଟି କହିଲା—"ରାଜନ୍ ! ମୋତେ ରଖି ଆପଣଙ୍କର କି ଲାଭ ହେବ ? ମୋତେ ଛାଡ଼ି ଦିଅନ୍ତୁ । ମୁଁ ଦମୟନ୍ତୀଙ୍କ ସହିତ ଆପଣଙ୍କର ବିବାହ କରାଇଦେବି । ରାଜା ନିଜ ମନର କଥା ହଂସ ମୁହଁରୁ ଶୁଣି ତାକୁ ଛାଡ଼ିଦେଲେ ଆଉ କହିଲେ—"ହେ ରାଜହଂସ ! ତୁମେ ମୋର ପ୍ରିୟ କାର୍ଯ୍ୟଟି କରିଦେଲେ ମୁଁ ତୁମ ଅଣ୍ଟରେ ସୁନା ଗୁଡ଼ଣି କରିଦେବି । ତୁମକୁ ପାଖରେ ବସାଇ ଦୁଧଭାତ ଖୁଆଇବି । ତୁମେ ଦମୟନ୍ତୀ ସହିତ ମୋର ମିଳନ କରାଇଦିଅ ।" ରାଜାଙ୍କ କଥା ଶୁଣି ହଂସ ଉଡ଼ି ଉଡ଼ି ଯାଇ ଦମୟନ୍ତୀଙ୍କ ପୁଷ୍ପ ବାଟିକାରେ ପହଞ୍ଚିଲା ।

ଦମୟନ୍ତୀ ସଖୀମାନଙ୍କ ସହିତ ପୁଷ୍ପ ବାଟିକାରେ ବୁଲୁ ବୁଲୁ ଅପୂର୍ବ ରାଜହଂସଟିଏ ଦେଖି ନିଜେ ଦୌଡ଼ିଯାଇ ତାକୁ ଧରି ପକାଇଲେ । ହଂସର କଣ୍ଠ ଦେଶରେ ଏକ ପତ୍ର ବନ୍ଧା ଥିବାର ଦେଖି ରାଜକୁମାରୀ ତାହାଟି ଖୋଲି ପଢ଼ିଲେ । ପତ୍ରରେ ନଳଙ୍କ ନାମୋଲ୍ଲେଖ ଥିବାର ଦେଖି ରାଜକୁମାରୀ ମୂର୍ଚ୍ଛିତା ହୋଇ ପଡ଼ିଗଲେ । ରାଜହଂସଟି ମଣିଷ କହିଲା ପରି ଭାଷାରେ ଆଶ୍ୱାସନା ଦେଇ କହିଲା—"ଦେବି ! ତୁମେ ଆଦୌ ଚିନ୍ତା କର ନାହିଁ । ମୁଁ ନଳଙ୍କ ସହିତ ତୁମର ମିଳନ କରାଇ ଦେବି । ତୁମେ ତାଙ୍କ ପ୍ରତି ଯେତିକି ଅନୁରକ୍ତ ସେ ତୁମପ୍ରତି ତତୋଽଧିକ ଅନୁରକ୍ତ ଅଛନ୍ତି ।'

ଦମୟନ୍ତୀ ଲଜ୍ଜିତା ହୋଇ କହିଲେ—"ହେ ରାଜହଂସ ! ତୁମେ ଶୀଘ୍ର ଯାଇ ମୋ' କଥା ତାଙ୍କୁ କୁହ । ତାଙ୍କ ବିନା ମୁଁ ଅଧିକ କାଳ ବଞ୍ଚି ପାରିବି ନାହିଁ ।"

ରାଜହଂସ ଫେରି ଆସି ମହାରାଜ ନଳଙ୍କୁ ସବୁକଥା କହିଲା । ମହାରାଜ ନଳ ଓ ରାଜକୁମାରୀ ଦମୟନ୍ତୀ ପରସ୍ପର କଥା ଦିନରାତି ଭାବିବାକୁ ଲାଗିଲେ । ବିଦର୍ଭର ମହାରାଣୀ ସଖୀମାନଙ୍କଠାରୁ ଦମୟନ୍ତୀଙ୍କ ମନର କଥା ଜାଣି ଯାଇ ରାଜାଙ୍କୁ ଯାଇ କହିଲେ । ମହାରାଜ ଭୀମ ସ୍ୱୟମ୍ବର ସଭାର ଆୟୋଜନ କଲେ । ବିଭିନ୍ନ ଦେଶକୁ ଚରମାନେ ଯାଇ ସ୍ୱୟମ୍ବର ସଭାକୁ ଆସିବା ପାଇଁ ରାଜାମାନଙ୍କୁ ନିମନ୍ତ୍ରଣ କଲେ । ରାଜାମାନେ ବିଦର୍ଭ ଦେଶରେ ଆସି ସମବେତ ହେବାକୁ ଲାଗିଲେ । ଦମୟନ୍ତୀଙ୍କ ସ୍ୱୟମ୍ବର କଥା ନାରଦଙ୍କଠାରୁ ଶୁଣି ଅଷ୍ଟ ଦିଗପାଳ ମଧ୍ୟ ଆସିଲେ । ବାଟରେ ନଳଙ୍କ ସହିତ ସେମାନଙ୍କର ସାକ୍ଷାତ ହେଲା ।

ଦେବତାମାନେ ନଳଙ୍କୁ କହିଲେ—"ତୁମେ ଆମର ଦୂତ ହୋଇ ଦମୟନ୍ତୀଙ୍କ ପାଖକୁ ଯାଅ ଆଉ କୁହ, ସେ କୌଣସି ମର୍ତ୍ତ୍ୟବାସୀକୁ ବରଣ ନ କରି ଆମ୍ଭମାନଙ୍କ ମଧ୍ୟରୁ ଯାହାକୁ ଇଚ୍ଛା ତାକୁ ବରଣ କରିବେ ।"

ମହାରାଜ ନଳ ପ୍ରଥମେ ମନା କଲେ ମଧ୍ୟ ଲୋକପାଳମାନଙ୍କର ଆଗ୍ରହ ଓ ଅନୁରୋଧକୁ ପ୍ରତ୍ୟାଖାନ କରି ନ ପାରି ସେମାନଙ୍କଠାରୁ ଅନ୍ତର୍ଦ୍ଧାନ ହେବାର ବିଦ୍ୟା ପାଇ ଦମୟନ୍ତୀଙ୍କ ଅନ୍ତଃପୁରରେ ପ୍ରବେଶ କଲେ । ପ୍ରହରୀ, ଦାସଦାସୀମାନେ ଉପସ୍ଥିତ ଥିଲେ ମଧ୍ୟ କେହି ତାଙ୍କୁ ଦେଖିପାରିଲେ ନାହିଁ ।

ହଠାତ୍ ନିଜ ଅନ୍ତଃପୁରରେ ଜଣେ ଅପରିଚିତ ଅନୁପମ ସୁନ୍ଦର ପୁରୁଷଙ୍କୁ ଦେଖି ରାଜକୁମାରୀ ଦମୟନ୍ତୀ ଲଜ୍ଜିତା ହୋଇ ପଡ଼ିଲେ । ସେ ଧୀରେ ଧୀରେ ହସି ହସି ପଚାରିଲେ—"ହେ ପୁରୁଷସିଂହ ! ଆପଣ କିଏ ? ଆପଣଙ୍କୁ ରାଜ ପ୍ରହରୀମାନେ ଅଟକାଇଲେ ନାହିଁ କାହିଁକି ? ଆପଣ ନିର୍ଭୟ ହୋଇ ସ୍ତ୍ରୀ ଲୋକମାନଙ୍କର ଆବାସସ୍ଥଳୀ ଅନ୍ତଃପୁରକୁ କିପରି ଚାଲିଆସିଲେ ? ଆପଣ ଅପରାଧ କରିଥିଲେ ମଧ୍ୟ ଆପଣଙ୍କର ଅପୂର୍ବ ରୂପଲାବଣ୍ୟ ଦେଖି ମୋର ମନେ ହେଉଛି ସତେ ଯେପରି ଆପଣଙ୍କ ସହିତ ମୋର ଜନ୍ମଜନ୍ମାନ୍ତରର ସଂପର୍କ ଅଛି । ଆପଣ କିପରି ଓ କେଉଁ କାମରେ ଏଠାକୁ ଆସିଛନ୍ତି ତାହା ପ୍ରକାଶ କରନ୍ତୁ ।"

ନଳ କହିଲେ—"ହେ ସୁନ୍ଦରୀ ! ମୋର ନାମ ନଳ । ମୁଁ ନିଷଧ ଦେଶର ରାଜା । ଲୋକପାଳମାନେ ମୋତେ ଦୂତ ରୂପେ ଆପଣଙ୍କ ପାଖକୁ ପଠାଇଛନ୍ତି । ଆପଣ ତ୍ରୈଲୋକ୍ୟ ସୁନ୍ଦରୀ । ତେଣୁ ସ୍ୱୟମ୍ବରରେ ଆପଣ ମର୍ତ୍ତ୍ୟବାସୀ କୌଣସି ମାନବକୁ ବରଣ ନ କରି ଅମରଧାମବାସୀ ଲୋକପାଳମାନଙ୍କ ମଧ୍ୟରୁ ବାହାର ଜଣଙ୍କୁ ବରଣ କରନ୍ତୁ ।"

ଦମୟନ୍ତୀ କହିଲେ—"ଦେବ ! ମୁଁ ନଳଙ୍କ ଭାବରେ କହିବା ପାଇଁ ବାଧ୍ୟ ହେଉଛି ଯେ ମୋ' ହୃଦୟକୁ ନିଷଧ ନରେଶ ପୂର୍ଣ୍ଣପୂର୍ଣ୍ଣ ଅଧିକାର କରି ନେଇଛନ୍ତି । ମୁଁ ତାଙ୍କୁ ଛାଡ଼ି ବିଷ୍ଣୁଙ୍କୁ ମଧ୍ୟ ବରଣ କରିପାରିବି ନାହିଁ । ହୃଦୟ ତ ଗୋଟିଏ । ତାଙ୍କୁ ତ ମହାରାଜ ନଳ ନେଇ ଯାଇଛନ୍ତି । ବର୍ତ୍ତମାନ ଲୋକପାଳମାନଙ୍କ ପାଇଁ ମୋ' ପାଖରେ ଆଉ କିଛି ନାହିଁ । ଆପଣ ମୋ' ଖବର ଲୋକପାଳମାନଙ୍କୁ ଜଣାଇ ଦେଇ କହନ୍ତୁ ସେମାନେ ସ୍ୱୟମ୍ବର ସଭାକୁ ଆସନ୍ତୁ । ସେମାନଙ୍କ ଆଗରେ ମୁଁ ଆପଣଙ୍କୁ ବରଣ କରିବି ।"

ନିଜ ଉପରେ ଦମୟନ୍ତୀଙ୍କର ଅପୂର୍ବ ଅନୁରାଗ ଥିବା ଲକ୍ଷ୍ୟକରି ମହାରାଜ ନଳଙ୍କ ଦେହ ରୋମାଞ୍ଚିତ ହୋଇ ଉଠିଲା । ସେ ଫେରିଯାଇ ଲୋକପାଳମାନଙ୍କୁ ସବୁକଥା କହିଲେ । ସେମାନେ ଯଥା ସମୟରେ ସ୍ୱୟମ୍ବର ସଭାରେ ଉପସ୍ଥିତ ହେଲେ । ମହାରାଜ ନଳ ମଧ୍ୟ ପହଞ୍ଚିଲେ । ବିଦର୍ଭରାଜ ସମସ୍ତଙ୍କ ସ୍ୱାଗତ ଅଭ୍ୟର୍ଥନା କଲେ । ରାଜକୁମାରୀ ଦମୟନ୍ତୀ ସ୍ୱୟମ୍ବର ସଭାକୁ ଆସି ମହାରାଜ ନଳଙ୍କ ଗଳାରେ ବରଣମାଳା ଦେଇ ତାଙ୍କୁ ମୁହଁ କରି ଠିଆ ହେଲେ ।

ସମସ୍ତଙ୍କ ମୁହଁ ଫିକା ପଡ଼ିଗଲା । ଦମୟନ୍ତୀଙ୍କୁ ପାଇ ନଳ ପରମ ସନ୍ତୋଷ ଲାଭ କଲେ । ଦେବଗଣ ନଳଙ୍କୁ ଆଶୀର୍ବାଦ ଦେଲେ । ଦେବରାଜ ଇନ୍ଦ୍ର କହିଲେ —"ତୁମେ ଯଜ୍ଞ କରି ଦେବତାମାନଙ୍କର ପ୍ରତ୍ୟକ୍ଷ ଦର୍ଶନ ଲାଭ କରିବ ଓ ଉତ୍ତମ ଗତି ପ୍ରାପ୍ତ ହେବ ।"

ଅଗ୍ନି କହିଲେ—"ତୁମେ ମୋତେ ଯେଉଁଠି ସ୍ମରଣ କରିବ ସେଠାରେ ମୁଁ ଉପସ୍ଥିତ ହେବି । ଶେଷକାଳରେ ତୁମେ ମୋ'ପରି ତେଜ ଧାରଣ କରି ଦେବ ଲୋକରେ ପ୍ରବେଶ କରିବ ।"

ଧର୍ମରାଜ କହିଲେ—"ତୁମ ହାତରେ ପ୍ରସ୍ତୁତ ସମସ୍ତ ଖାଦ୍ୟ ଅପୂର୍ବ ସ୍ୱାଦୁ ସମ୍ପନ୍ନ ହେବ । ତୁମର ମନ ସର୍ବଦା ଧର୍ମ କାର୍ଯ୍ୟରେ ଲାଗି ରହିବ ।"

ବରୁଣ ଏକ ଦିବ୍ୟମାଳା ଦେଇ କହିଲେ—"ଏହି ମାଳଟି କେବେହେଲେ ମଉଳିବ ନାହିଁ । ତୁମେ ଯେଉଁଠି ଇଚ୍ଛା କରିବ ସେଠାରେ ଜଳ ଉତ୍ପନ୍ନ କରି ପାରିବ ।"

ଏହାପରି ଚାରିଲୋକପାଳଙ୍କ ପାଖରୁ ଆଠଟି ବର ପାଇ ମହାରାଜ ଦମୟନ୍ତୀଙ୍କୁ ବିବାହ କରି ନିଜ ରାଜଧାନୀକୁ ଫେରି ଆସିଲେ ଓ ସୁଖରେ ଦାମ୍ପତ୍ୟ ଜୀବନ ଭୋଗ କରିବାକୁ ଲାଗିଲେ ।

କଳିଯୁଗ ଦମୟନ୍ତୀଙ୍କୁ ବିବାହ କରିବା ପାଇଁ ଚାହୁଁଥିଲା । ସୁନ୍ଦରୀ ନାରୀମାନଙ୍କ ମନରେ ଚଞ୍ଚଳତା ଜନ୍ମାଇ ସେମାନଙ୍କୁ ପଥଭ୍ରଷ୍ଟ କରିବା ଥିଲା ତା'ର ଉଦ୍ଦେଶ୍ୟ । ଯେଉଁ ସୁନ୍ଦରୀ ଯୁବତୀ ଅଶେଷ ରୂପଲାବଣ୍ୟ ପାଇ ମଧ୍ୟ କଳିଯୁଗର କଥାରେ ଅବାଧ ହେଉଥିଲା, କଳିଯୁଗ ତାକୁ ନାନାପ୍ରକାର କଷ୍ଟ ଦେଇ ତା'ର ପାତିବ୍ରତ୍ୟକୁ ପରୀକ୍ଷା କରୁଥିଲା ।

ଦ୍ୱାପର ସହିତ ସାଙ୍ଗ ହୋଇ କଳିଯୁଗ ଯାଉଥିଲା । ସେତେବେଳେ ବାଟରେ ଦେବତାମାନଙ୍କ ସହିତ ତାଙ୍କର ସାକ୍ଷାତ ହେଲା । ଦେବତାମାନେ ପଚାରିଲେ—"କଳିଦେବ, କୁଆଡ଼େ ବାହାରିଛନ୍ତି ?"

କଳିଯୁଗ କହିଲା—"ମୁଁ ଦମୟନ୍ତୀକୁ ନିଜ ଅର୍ଦ୍ଧାଙ୍ଗିନୀ କରିବା ପାଇଁ ସ୍ୱୟମ୍ବର ସଭାକୁ ଯାଉଛି ।"

ଦେବତାମାନେ କହିଲେ—"ହାଇରେ, ତୁ ଗୋଟାଏ ପାଗଳ ନା କଣ ? ଦମୟନ୍ତୀକୁ ନଳ ଅଧିକାର କରିନେଇ ସାରିଲେଣି । ସେ ନଳଙ୍କୁ ଛାଡ଼ି ଅନ୍ୟ କାହା ଆଡ଼କୁ ଚାହୁଁ ନାହାନ୍ତି ।"

ଏହା ଶୁଣି କଳିଯୁଗ ଭୀଷଣ ରାଗିଗଲା । କ୍ରୋଧରେ ଅସ୍ଥିର ହୋଇ ସେ କହିଲା—"ହଉ, ଦମୟନ୍ତୀକୁ ଓ ତା'ର ପତି ନଳକୁ ଦେଖିନେବି ।"

ମହାରାଜ ନଳଙ୍କ ଦେହରେ ସୂକ୍ଷ୍ମ ରୂପରେ ପ୍ରବେଶ କରିବା ପାଇଁ କଳିଯୁଗ ଅବସର ଖୋଜିବାରେ ଲାଗିଲା । ଦିନେ ମହାରାଜ ନଳ ପରିସ୍ରା କରିସାରି ଆଚମନ କଲେ ମଧ୍ୟ ବ୍ୟସ୍ତତା ହେତୁ ଧୋଇବାକୁ ଭୁଲିଗଲେ । କଳି ତ ଅଶୁଦ୍ଧିରେ ହିଁ ଆଶ୍ରୟ ନିଏ । ସେ ନଳରାଜାଙ୍କ ପାଦ ପ୍ରକ୍ଷାଳନ ନ କରିବାର ସୁଯୋଗ ନେଇ ତାଙ୍କ ଦେହରେ ପ୍ରବେଶ କଲା । କଳିଯୁଗ ଯାହା ଶରୀରରେ ପ୍ରବେଶ କରେ ସେ ଅଧର୍ମକୁ ଧର୍ମ ବୋଲି ଭାବେ, ସଦାଚାରକୁ ମିଥ୍ୟା ବୋଲି ଗ୍ରହଣ କରେ ସତ୍ ଅସତ୍ ବିଚାର କରିବାର କ୍ଷମତା ହରାଇ ବସେ । ସେ ପରମାର୍ଥ ପଥରୁ ବିଚ୍ୟୁତ ହୁଏ । କଳିଯୁଗର ପ୍ରଭାବରେ ମହାରାଜ ନଳ ନିଜର ସାନଭାଇ କଥାରେ ରାଜି ହୋଇ ଜୁଆ ଖେଳିବା ପାଇଁ ଆଗ୍ରହୀ ହୋଇପଡ଼ିଲେ । ପ୍ରଜା ବର୍ଗ ଏହା ଜାଣି ପାରି ରାଜାଙ୍କ ପାଖକୁ ଯାଇ ପ୍ରାର୍ଥନା କଲେ—"ମହାରାଜ ! ଜୁଆଖେଳ ଏକ ଭଲ ଅଭ୍ୟାସ ନୁହେଁ । କାରଣ ଜୁଆ ଖେଳରେ ଅନେକ ସର୍ବସ୍ୱାନ୍ତ ହୁଅନ୍ତି । ଆପଣ ଏପରି ଖରାପ କାମ କରନ୍ତୁ ନାହିଁ ।"

ମହାରାଜ ନଳ ପ୍ରଜାଙ୍କ ନିବେଦନକୁ ପ୍ରତ୍ୟାଖ୍ୟାନ କରି ପୁଷ୍କରଙ୍କ ସହିତ ଜୁଆ ଖେଳିବାକୁ ଲାଗିଲେ । କଳିଯୁଗ ଭାଇ ଦ୍ୱାପରଯୁଗ ଜୁଆଖେଳ ସ୍ଥାନରେ ପହଞ୍ଚି ପୁଷ୍କରଙ୍କ ପକ୍ଷ ସମର୍ଥନ କଲା । ତେଣୁ ପଶାକାଠିରେ ଯେଉଁ ଦାନ ପଡ଼ିଲା, ସେଥିରେ ପୁଷ୍କର କେବଳ ଜିଣିଲେ ଓ ମହାରାଜ ନଳ ବାରମ୍ବାର ହାରିଗଲେ । ମହାରାଣୀ ଦମୟନ୍ତୀ ଜୁଆଖେଳ କଥା ଶୁଣି ମନ୍ତ୍ରୀ, ପୁରୋହିତ, ପୁରଜନ ଓ ବନ୍ଧୁବାନ୍ଧବଙ୍କୁ ଡକାଇ ଜୁଆଖେଳର କୁପରିଣାମ ବିଷୟରେ ଯେତେ ବୁଝାଇଲେ ମଧ୍ୟ ମହାରାଜ ନଳ ଅଧିକରୁ ଅଧିକ ସେହି ଖେଳରେ ମାତିବାକୁ ଲାଗିଲେ । ଏହା ଭଲ ଲକ୍ଷଣ ନୁହେଁ ବୋଲି ଦମୟନ୍ତୀ ବୁଝିପାରିଲେ । ସେ ସାରଥିକୁ ଡକାଇ ପୁତ୍ର ଇନ୍ଦ୍ରସେନ ଓ ପୁତ୍ରୀ ଇନ୍ଦ୍ରସେନାକୁ ରଥରେ ନିଜ ପିତ୍ରାଳୟକୁ ପଠାଇଦେଲେ । ସାରଥି ପୁଅ ଓ ଝିଅକୁ ନେଇ ବିଦର୍ଭ ନରପତି ରାଜା ଭୀମଙ୍କ ପାଖରେ ଛାଡ଼ି ଆସିଲା ଏବଂ ଫେରିବାବେଳେ ଅଯୋଧ୍ୟାର ରାଜା ଋତୁପର୍ଣ୍ଣଙ୍କ ନିକଟରେ ସାରଥିଭାବେ ଚାକିରି କଲା ।

ମହାରାଜ ନଳ ଜୁଆଖେଳରେ ନିଜର ସର୍ବସ୍ୱ ହରାଇବା ଦେଖି ପୁଷ୍କର ଖୁବ୍ ଆନନ୍ଦିତ ହେଲେ । କଥାରେ କହନ୍ତି, ଶତ୍ରୁ ବାହାରୁ ଆସେନାହିଁ, ସେ ମା' ପେଟରୁ ହିଁ ଜନ୍ମହୁଏ । ନିଜର ସହୋଦର ଭାଇ ଧନ ଓ ରାଜ୍ୟ ଲୋଭରେ ଶତ୍ରୁ ପାଲଟିଯାଏ । ମହାରାଜ ନଳ ହାରିଯିବା ପରେ ପୁଷ୍କର ହସି ହସି କହିଲେ—"ଭାଇ ! ଆପଣ ନିଜ ରାଜ୍ୟ, ଧନସମ୍ପତ୍ତି ଏପରିକି ନିଜର ବସ୍ତ୍ର, ଭୂଷଣକୁ ମଧ୍ୟ ହରାଇଲେ । ଏବେ ଆପଣଙ୍କ ପାଖରେ କେବଳ ଜଣେ ସୁନ୍ଦରୀ ରାଣୀ ଦମୟନ୍ତୀ ଅଛନ୍ତି । ଆପଣ ତାଙ୍କୁ ବାଜି ଲଗାଇ ଆଉଥରେ ଖେଳିପାରିବେ ।"

ସାନଭାଇ ପୁଷ୍କରଙ୍କ କଥା ଶୁଣି ମହାରାଜ ନଳ ଖୁବ୍ ଦୁଃଖିତ ହେଲେ ବି ଲଜ୍ଜାବଶତଃ କିଛି ଉତ୍ତର ଦେଇପାରିଲେ ନାହିଁ । ଜୁଆଖେଳରେ ସର୍ବସ୍ୱ ହରାଇ ସାରିଥିଲେ ମଧ୍ୟ ମହାରାଜ ନଳ ଧର୍ମକୁ ଛାଡ଼ିପାରିଲେ ନାହିଁ । ସେ ନିଜର ସମସ୍ତ ରାଜକୀୟ ପରିଚ୍ଛଦ ଓ ଅଳଙ୍କାର ବାହାର କରିଦେଇ କେବଳ ଧୋତି ଖଣ୍ଡିଏ ପିନ୍ଧି ଆନନ୍ଦରେ ରାଜପ୍ରାସାଦ ତ୍ୟାଗକଲେ । ତାଙ୍କ ପଛେ ପଛେ ମହାରାଣୀ ଦମୟନ୍ତୀ ମଧ୍ୟ ସାଧାରଣ ବସ୍ତ୍ର ଖଣ୍ଡିଏ ପିନ୍ଧି ବାହାରିଲେ । ନଗରବାସୀ ରାଜା ଓ ରାଣୀଙ୍କର ଏପରି ଅବସ୍ଥା ଦେଖି ହାୟ ହାୟ କରିବାକୁ ଲାଗିଲେ । ଆବାଲବୃଦ୍ଧବନିତା ରାଜାଙ୍କ ପଛେ ପଛେ ଚାଲିବାକୁ ଲାଗିଲେ । ନଳଙ୍କ ଭାଇ ପୁଷ୍କର ପ୍ରଜାମାନଙ୍କର ଅଭୂତପୂର୍ବ ଅନୁରାଗ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ସେ ଭାବିଲେ—ରାଜ୍ୟଭ୍ରଷ୍ଟ ମହାରାଜ ନଳଙ୍କ ପ୍ରତି ଯଦି ରାଜ୍ୟବାସୀ ଏପରି ଗଭୀରଭାବେ ଅନୁରକ୍ତ ଅଛନ୍ତି ସେମାନେ ମୋତେ କିପରି ମର୍ଯ୍ୟାଦା ଦେବେ ? ମୋ' ପ୍ରତି ପ୍ରଜାବର୍ଗ କିପରି ଅନୁରକ୍ତ ହେବେ ? ସେ

ସାଙ୍ଗେ ସାଙ୍ଗେ ଘୋଷଣାକଲେ —ମୋ' ରାଜ୍ୟରେ ଯେ ନଳଙ୍କ ପ୍ରତି ସହାନୁଭୂତି ପ୍ରକାଶ କରିବ, ତାଙ୍କୁ ସ୍ୱାଗତ ସତ୍କାର କରିବ ବା ଆଶ୍ରୟ ଦେବ ତାକୁ କଠୋର ଦଣ୍ଡ ଦିଆଯିବ ।

ରାଜାଦେଶ ଘୋଷିତ ହେବାମାତ୍ରେ ସମସ୍ତେ ଭୟଭୀତ ହୋଇପଡ଼ିଲେ । ଭୟବଶତଃ କେହି ଆଉ ନଳଙ୍କ ପାଖକୁ ଆସିଲେ ନାହିଁ । ରାଜକର୍ମଚାରୀମାନେ ଅସ୍ତ୍ରଶସ୍ତ୍ର ଧରି ଯାଉଥିବା ପ୍ରଜାମାନଙ୍କୁ ଇତସ୍ତତଃ କରିଦେଲେ । ମହାରାଜ ନଳ ରାଣୀ ଦମୟନ୍ତୀଙ୍କୁ ସାଙ୍ଗରେ ନେଇ ନଗର ବାହାରକୁ ଚାଲିଗଲେ ।

ରାଜା ଓ ରାଣୀ କାହାରି ପାଦରେ ଚାଲି ଚାଲି ଯିବାର ଅଭ୍ୟାସ ନଥିଲା । ଦୁହେଁ ଖାଲିପାଦରେ ଯାଉଥିଲେ । ସକାଳେ ସେ ଦୁହେଁ ନଗର ତ୍ୟାଗ କରିଥିଲେ । ଚାଲି ଚାଲି ପାଦରୁ ଚମଡ଼ା ଛୁଣ୍ଡିଗଲା । ରାଣୀଙ୍କ ଦୁଇପାଦରୁ ରକ୍ତ ଝରିବାକୁ ଲାଗିଲା । ମୁହଁ ମଳିନ ପଡ଼ିଗଲା । ତୃଷାରେ ସେ ବ୍ୟାକୁଳ ହୋଇପଡ଼ିଲେ, ଓଠ ଶୁଖିଗଲା । ଧୂଳିରେ ଘନକୃଷ୍ଣ ଅଳକାବଳୀ ଧୂସର ଦେଖାଗଲା । ସେ ସ୍ଖଳିତ ପଦରେ ବଡ଼ କଷ୍ଟରେ ଚାଲୁଥାନ୍ତି । ଆଉ ଯେତେବେଳେ ସେ ଆଦୌ ଚାଲିପାରିଲେ ନାହିଁ ସେତେବେଳେ ସ୍ୱାମୀଙ୍କ କାନ୍ଧରେ ଭରାଦେଇ କାନ୍ଦି କାନ୍ଦି ହୋଇ କହିଲେ—"ପ୍ରାଣନାଥ ! ମୁଁ ଏବେ ଆଉ ପାଦେ ବି ଚାଲିପାରିବି ନାହିଁ ।"

ଯେଉଁ ରାଣୀଙ୍କୁ ସୂର୍ଯ୍ୟ ଦେଖିପାରୁ ନଥିଲେ ସେହି ଅସୂର୍ଯ୍ୟଂପଶ୍ୟା ଦମୟନ୍ତୀ ଦିନେହେଲେ ବି ଖୋଲା ପଡ଼ିଆରେ ପାଦଦେଇ ନଥିଲେ ! ସେ ପାଦରେ ଦିନେହେଲେ ଚାଲି ନଥିଲେ ସେହି ରାଣୀଙ୍କର ଦୁର୍ଦ୍ଦଶା ଦେଖି ମହାରାଜ ନଳଙ୍କ ହୃଦୟ ଦୁଃଖରେ ଫାଟିପଡ଼ିଲା । ସେ ନିରୁପାୟ ହୋଇ କାନ୍ଦି ପକାଇଲେ । ସେ ନିଜର ପିନ୍ଧାଲୁଗା କାନରେ ଦମୟନ୍ତୀଙ୍କ ଆଖିରୁ ଲୁହ ପୋଛିଦେଇ ସ୍ନେହରେ କହିଲେ— ଦେବି ! ଭାଗ୍ୟ ପାଖରେ ମୁଁ ହାରିଗଲି । ହାୟ, ମୋରି ପାଇଁ ତୁମକୁ ଅଶେଷ କ୍ଳେଶ ସହିବାକୁ ପଡ଼ିଲା । ମୋ' ଜୀବନକୁ ଧିକ୍ । ରାଜା ନିଜକୁ ଧିକ୍କାର କରୁଥିବାର ଦେଖି ରାଣୀ କାନ୍ଦିବାକୁ ଲାଗିଲେ । କୃପଣ ଧନକୁ ଲୁଚାଇ ରଖିଲାପରି ଯେ ଏପର୍ଯ୍ୟନ୍ତ ଧୈର୍ଯ୍ୟର ସହିତ ଲୁହକୁ ଲୁଚାଇ ରଖିଥିଲେ ସେହି ଦମୟନ୍ତୀଙ୍କର ଧୈର୍ଯ୍ୟବନ୍ଧ ଭାଙ୍ଗିଗଲା । ସେ କାନ୍ଦି କାନ୍ଦି କହିଲେ—"ପ୍ରାଣନାଥ ! ରାଜକୀୟ ସମ୍ପଦ ପ୍ରତି ମୋର ଆଦୌ ଚିନ୍ତା ନାହିଁ । ଜୀବନରେ ସମସ୍ତଙ୍କର ସୁଖ ଦୁଃଖ ଆସେ । କିନ୍ତୁ ଆପଣ ମୋ ସହିତ ଅଛନ୍ତି ତାହାହିଁ ମୋର ସର୍ବଶ୍ରେଷ୍ଠ ସୁଖ ।"

ରାଜା ଓ ରାଣୀ ପରସ୍ପରକୁ ସାନ୍ତ୍ୱନା ଦେଇ ନିଜ ନିଜର ହୃଦୟକୁ ଶାନ୍ତକଲେ । ଗୋଟିଏ ଗହଳିଆ ଗଛ ଦେଖି ତାହାର ମୂଳରେ ଦୁହେଁ ବସିପଡ଼ିଲେ ।

ପୁଷ୍କର ଭୟରେ କେହି ତାଙ୍କ ପାଖକୁ ଆସିଲେ ନାହିଁ । ନଗରଠାରୁ ଦୁଇକୋଶ ଦୂରରେ ଥାଇ ସେ ଦୁହେଁ କ୍ଷୁଧାରେ ଆତୁର ହୋଇପଡ଼ିଲେ । ନଦୀରୁ ପାଣିଆଣି କୌଣସିମତେ କ୍ଷୁଧା ଶାନ୍ତକଲେ । ରାଣୀଙ୍କୁ ଜ୍ୱର ଆସିଗଲା । ତେଣୁ ତିନଦିନ ଧରି ରାଜା ଓ ରାଣୀ ନ ଖାଇ ନ ପିଇ ସେଇଠି ପଡ଼ିରହିଲେ ।

ଚତୁର୍ଥ ଦିନ ରାଣୀଙ୍କର ଜ୍ୱର କମିଗଲା । ସେ ଟିକଏ ଶାନ୍ତହେଲେ । ରାଜା ରାଣୀଙ୍କ ହାତଧରି ଧୀରେ ଧୀରେ ଚାଲିବାକୁ ଆରମ୍ଭ କଲେ । ଏଣେ ଭୋକରେ ପେଟ ଜଳିଯାଉଥାଏ । ବାଟରେ କନ୍ଦମୂଳ ଓ ଫଳ ଖାଇ ଚାଲିବାକୁ ଲାଗିଲେ । ହଠାତ୍ ରାଜା ଓ ରାଣୀ ସୁବର୍ଣ୍ଣପକ୍ଷ ଥିବା ଗୁଡ଼ିଏ ପକ୍ଷୀ ଦେଖିଲେ । ରାଜା ଭାବିଲେ ଯଦି ଏ ଗୁଡ଼ିକ ଚଢ଼େଇକୁ ଧରିହେବ ତେବେ ତାଙ୍କୁ ବିକିଦେଲେ ବେଶ୍ କିଛି ପଇସା ମିଳିବ । ଯେହି ଅର୍ଥରେ ଆମର କିଛିଦିନ ଚଳିଯିବ । ଏହା ଭାବି ରାଜା ନିଜ ପିନ୍ଧା ଲୁଗାରେ କିଛି କାଠ ବାନ୍ଧି ସେହି ଚଢ଼େଇଙ୍କ ଉପରକୁ ଫିଙ୍ଗିଦେଲେ । ଚଢ଼େଇଗୁଡ଼ିକ ଲୁଗାତଳେ ରହିଗଲେ । ସେମାନଙ୍କୁ ଧରିବା ପାଇଁ ରାଜା ଦୌଡ଼ିଯିବାବେଳକୁ ଚଢ଼େଇ-ଗୁଡ଼ିକ ଲୁଗା ସହିତ ଆକାଶକୁ ଉଡ଼ିଗଲେ । ରାଜା ପୂରାପୂରି ଲଙ୍ଗଳା ହୋଇଗଲେ । ବିଧି ବାମହେଲେ, ଭାଗ୍ୟ ଖରାପ ପଡ଼ିଲେ ବିପଦ ଉପରେ ବିପଦ ଆସେ । ଭାଗ୍ୟ ପ୍ରତିକୂଳ ହେଲେ ସୁନା ଛୁଇଁଲେ ତାହା ମାଟି ପାଲଟିଯାଏ, ସ୍ୱଜନ ବନ୍ଧୁ ଶତ୍ରୁ ହୋଇପଡ଼ନ୍ତି ଏବଂ ଅତି ଆପଣାର ଲୋକ ବି ବିପରୀତ ବ୍ୟବହାର କରେ । ସମସ୍ତ ଉଦ୍ୟମ ବିଫଳ ହୋଇଯାଏ । ରାଜାଙ୍କୁ ପୂରାପୂରି ଉଲଗ୍ନ ଦେଖି ରାଣୀ କାନ୍ଦିବାକୁ ଲାଗିଲେ ଏବଂ ନିଜ ପିନ୍ଧା ଲୁଗାରୁ ଅଧା ଚିରି ରାଜାଙ୍କୁ ପିନ୍ଧିବାକୁ ଦେଲେ । ରାଜାଙ୍କ ଦୁଃଖର ସୀମା ରହିଲା ନାହିଁ । ତାଙ୍କ କାନ୍ଧରେ ମୁଣ୍ଡରଖି ଦମୟନ୍ତୀ ଧୀରେ ଧୀରେ ଚାଲିବାକୁ ଲାଗିଲେ । ରାଜା ସସ୍ନେହରେ କହୁଥାନ୍ତି—"ପ୍ରିୟେ ! ଦେଖ, ଏ ରାସ୍ତାଟି ଅମୁକ ଦେଶକୁ ଯାଇଛି, ସେ ରାସ୍ତାଟି ସମୁକ ଦେଶକୁ ପଡ଼ିଛି । ଆଗ ରାସ୍ତାଟି ତୁମ ପିତାଙ୍କ ନଗର କୁଣ୍ଡିନପୁରକୁ ଯାଇଛି । ଏ ବାଟରେ ଗଲେ ଆଗରେ ଏକ ନଦୀ ପଡ଼ିବ । ନଦୀ କୂଳରେ ବହୁ ପ୍ରକାର ଫଳବୃକ୍ଷ ଅଛି । ସେବାଟେ ଗଲେ ଆଦୌ କଷ୍ଟ ଜଣାପଡ଼ିବ ନାହିଁ । ସ୍ଥାନେ ସ୍ଥାନେ ଋଷି ଆଶ୍ରମମାନ ଅଛି ।" ଏହି କଥାକୁ ରାଜା ବି ଭିନ୍ନ ଢଙ୍ଗରେ କହୁଥାନ୍ତି ।

ଦମୟନ୍ତୀ ପଚାରିଲେ—"ପ୍ରାଣନାଥ ! ଆପଣ ବାରମ୍ବାର ମୋତେ ମୋ' ପିତାଙ୍କ ନଗରକୁ ଯାଇଥିବା ରାସ୍ତା ବିଷୟ କାହିଁକି କହୁଛନ୍ତି ? ଆପଣ କଣ ମୋ' ଦୁଃଖରେ ଦୁଃଖୀ ହୋଇ ମୋତେ ପିତାଳୟକୁ ଚାଲିଯିବା ପାଇଁ କହୁଛନ୍ତି ନା ମୋତେ ଏକା ଏକା ଛାଡ଼ିଦେଇ ଚାଲିଯିବା ପାଇଁ ଇଚ୍ଛା କରୁଛନ୍ତି ? ଯଦି ମୋତେ ମୋର

ପିତୃଗୃହରେ ଛାଡ଼ିବା ଇଚ୍ଛା କରୁଛନ୍ତି ତେବେ ଚାଲନ୍ତୁ ସେଠାରେ ଆପଣଙ୍କର ଯଥାର୍ଥ ସ୍ୱାଗତ ସତ୍କାର ସେମାନେ କରିବେ । ପ୍ରଭୋ ! ମୁଁ ଆପଣଙ୍କର ଦାସୀ । ଆପଣ ମୋ ଜୀବନର ଏକମାତ୍ର ଅବଲମ୍ବନ । ମୋତେ ଦୁଃଖୀ ଦେଖି ଆପଣ ମନରେ କେବେ-ହେଲେ ମୋତେ ପରିତ୍ୟାଗ କରିବାର ଚିନ୍ତା ପୋଷଣ କରିବେ ନାହିଁ । ଆପଣଙ୍କ ସହିତ ଥିଲେ ମୋତେ ବଣରେ ବି ରାଜମହଲଠାରୁ ଅଧିକ ସୁଖ ମିଳିବ । ଆପଣଙ୍କ ଅଭାବରେ ରାଜମହଲ ମୋତେ ରୌରବ ନର୍କ ପରି ଦୁଃଖଦାୟକ ମନେହେବ ।”

ମହାରାଜ ନଳ କହିଲେ—“ପ୍ରିୟେ ! ତୁମପରି ପତିପ୍ରାଣା ପତିବ୍ରତାକୁ ଛାଡ଼ି ମୁଁ କିପରି କୁଆଡ଼େ ଯିବି ? ତୁମେ ଆଦୌ ଚିନ୍ତା କରନାହିଁ କି ମୋତେ ସନ୍ଦେହ କରନାହିଁ ।”

ମହାରାଣୀ ଦମୟନ୍ତୀ କହିଲେ—“ପ୍ରାଣନାଥ ! ଆପଣଙ୍କ ପ୍ରେମକୁ ମୁଁ ତିଳେହେଲେ ସନ୍ଦେହ କରୁନାହିଁ । ଆପଣ ହୃଦୟ ଦେଇ ମୋତେ ସ୍ନେହ କରୁଛନ୍ତି । କିନ୍ତୁ ମୋ’ ଦୁଃଖରେ ଆପଣ ଭାଙ୍ଗିପଡ଼ିଛନ୍ତି । ଆପଣ ଭାବୁଛନ୍ତି ମୁଁ ବାପଘରକୁ ଗଲେ ସୁଖରେ ରହିବି, ମୋର କୌଣସି ଅସୁବିଧା ରହିବ ନାହିଁ । କିନ୍ତୁ ମୁଁ ଏକା ସେଠାକୁ ଯିବି ନାହିଁ । ଯଦି ଯିବି ଆପଣଙ୍କ ସହିତ ଯିବି । ଆମେ ଦୁହିଁଙ୍କୁ ଦେଖି ବାପା ଖୁବ୍ ଆନନ୍ଦିତ ହେବେ ।”

ମହାରାଜ ନଳ ଲୋତକ ଛଳ ଛଳ ଆଖିରେ ଗଦ୍‌ଗଦ କଣ୍ଠରେ କହିଲେ—“ପ୍ରିୟେ ! ତୁମେ ସତ କହୁଛ । ତୁମର ପିତାଙ୍କ ରାଜ୍ୟ ବି ମୋର ରାଜ୍ୟ ସଦୃଶ । ନିଜର ପୁଅ ଝିଅପରି ସେ ଆମ ଦୁହିଁଙ୍କ ପାଳନ ପୋଷଣ କରିବେ । କିନ୍ତୁ ପ୍ରିୟେ ! ପ୍ରଥମେ ମୁଁ ଯେଉଁ ସ୍ଥାନକୁ ଏତେ ଆଡ଼ମ୍ବରରେ ଯାଇଥିଲି ସେଠାକୁ ଏବେ ଭିକାରି-ବେଶରେ ଯିବାକୁ ବଡ଼ ଲାଜ ଲାଗୁଛି । ବିପଦରେ ପଡ଼ିଥିବାବେଳେ ସେଠାରେ ନ ଘଟିବା କଥା ବି ଘଟିଯିବ । ଯଦି ସେଠାରେ ମୋର କୌଣସି ପ୍ରକାର ଅପମାନ ହେବ, ତାହା ତୁମେ ସହିପାରିବ ନାହିଁ । ଏପରି ଅବସ୍ଥାରେ ମୁଁ କେବେହେଲେ ଶ୍ୱଶୁରାଳୟକୁ ଯାଇପାରିବି ନାହିଁ । କେହି ଆତ୍ମସମ୍ମାନ ଥିବା ଲୋକ ଏହାକୁ ପସନ୍ଦ କରିବେ ନାହିଁ ।”

ଦମୟନ୍ତୀ କହିଲେ—“ମୁଁ ତ ଯିବାପାଇଁ ଆଗ୍ରହ ପ୍ରକାଶ କରୁନାହିଁ, ଏହା ଏକ ପ୍ରସ୍ତାବ ମାତ୍ର । ଯଦି ମୁଁ ଯିବି ତେବେ ଆପଣଙ୍କ ସହିତ ଯିବି । ନୋହିଲେ ଆପଣ ଯେଉଁଆଡ଼େ ଯିବେ ମୁଁ ସେଇଆଡ଼େ ଯିବି ।”

ମହାରାଜ ନଳ କହିଲେ—"ପ୍ରିୟେ ! ଭାଗ୍ୟରେ ଯାହା ଲେଖାଅଛି ତାହାହିଁ ଘଟିବ । ତୁମେ ଆଦୌ ଚିନ୍ତା କରନାହିଁ । ଏହା କହି ରାଜା ଆଗକୁ ପାଦ ବଢ଼ାଇଲେ । ରାଜା ଓ ରାଣୀ ଯାଉଁ ଯାଉଁ ବାଟରେ ଏକ ପାନ୍ଥଶାଳା ଦେଖିଲେ । ସେହି ପାନ୍ଥଶାଳାର ଧୂଳିଧୂସର ଚଟାଣରେ ରାଜା ବସିପଡ଼ିଲେ । ଦମୟନ୍ତୀ ରାଜାଙ୍କ କୋଳରେ ମୁଣ୍ଡ ରଖିବାମାତ୍ରେ ଗାଢ଼ ନିଦରେ ଶୋଇପଡ଼ିଲେ । କିନ୍ତୁ ନଳଙ୍କ ଆଖିକୁ ନିଦ ଆସୁ ନଥାଏ । ରାଣୀଙ୍କ ଦୟନୀୟ ଅବସ୍ଥା ଦେଖି ତାଙ୍କ ମନ ବ୍ୟାକୁଳ ହେଉଥାଏ । ଧୀରେ ଧୀରେ ରାଣୀଙ୍କ ମସ୍ତକକୁ ତଳେ ଥୋଇ ନଳ ଠିଆହୋଇଗଲେ ଓ ଅନିମେଷ ନୟନରେ ରାଣୀଙ୍କ ଝାଉଁଳି ପଡ଼ିଥିବା ମୁହଁକୁ ଚାହିଁରହିଲେ । ରାଣୀଙ୍କ ମୁଖ ରାହୁଗ୍ରସ୍ତ ଚନ୍ଦ୍ର, କୁହୁଡ଼ି ଆଚ୍ଛନ୍ନ ସୂର୍ଯ୍ୟ, ମଉଳି ପଡ଼ିଥିବା ଫୁଲ ଅଥବା ବିଷାଦଗ୍ରସ୍ତ ପ୍ରୋଷିତ ଭର୍ତ୍ତୃକାର ମୁଖ ପରି ମଳିନ ଦେଖାଯାଉଥିଲା । ଦମୟନ୍ତୀଙ୍କ ଘନକୃଷ୍ଣ କୁଞ୍ଚିତ କେଶରାଶି ବାବାଜୀମାନଙ୍କ ଜଟାପରି ଜଟାଳିଆ ହୋଇଯାଇଥିଲା । ରାଣୀଙ୍କର ଏହି ଦୁର୍ଦ୍ଦଶା ଦେଖି ରାଜା କାନ୍ଦିବାକୁ ଲାଗିଲେ ।

ଦମୟନ୍ତୀ ଗଭୀର ନିଦ୍ରାରେ ଶୋଇପଡ଼ିଥିବାରୁ କିଛି ଜାଣିପାରିଲେ ନାହିଁ । ମହାରାଜ ନଳ ଅସ୍ଥିର ହୃଦୟରେ ନିର୍ଜ୍ଜନ ବନଭୂମିର ସେହି ପାନ୍ଥଶାଳାରେ ଏପାଖ ସେପାଖ ହେବାକୁ ଲାଗିଲେ । ସେ ମନେ ମନେ ଭାବିଲେ—ଦମୟନ୍ତୀକୁ ଛାଡ଼ି ଚାଲିଯିବି । କିନ୍ତୁ ନିର୍ଜ୍ଜନ ବନରେ ଏକୁଟିଆ ଛାଡ଼ିଗଲେ ଦମୟନ୍ତୀ କଣ କରିବେ, କୁଆଡ଼େ ଯିବେ । ବହୁ ସମୟ ପର୍ଯ୍ୟନ୍ତ ଏହି କଥା ଚିନ୍ତାକରି ରାଜା କିଛି ସ୍ଥିର କରିପାରିଲେ ନାହିଁ । ଶେଷରେ ସେ ରାଣୀଙ୍କୁ ଛାଡ଼ି ଚାଲିଗଲେ । କିଛିଦୂର ଚାଲିଯିବା-ପରେ ରାଣୀଙ୍କ ଚିନ୍ତାରେ ସେ ବ୍ୟାକୁଳ ହୋଇପଡ଼ିଲେ । ସେ ପୁଣି ପାନ୍ଥଶାଳାକୁ ଫେରିଆସି ଦେଖିଲେ ରାଣୀ ସେହିପରି ଅଚେତ ହୋଇ ପଡ଼ିରହିଛନ୍ତି । ରାଜା ଭାବିଲେ —ମୁଁ ନ ରହିଲେ ସେ ନିଶ୍ଚୟ ତାଙ୍କ ପିତ୍ରାଳୟକୁ ଯାଇ ସୁଖରେ ରହିପାରିବେ । କିନ୍ତୁ ଏପରି ଘୋର ଅରଣ୍ୟରେ ଛାଡ଼ିଯିବି କିମିତି ? ଏହିପରି ଭାବି ଭାବି ରାଜା କିଛିଦୂର ଚାଲିଯାଆନ୍ତି ଓ ପୁଣି ଫେରିଆସନ୍ତି । କେତେଥର ଏପରି ଯିବା ଆସିବା ପରେ ଶେଷରେ ମନକୁ ଦୃଢ଼ କରି ରାଜା ଦମୟନ୍ତୀଙ୍କୁ ଛାଡ଼ି ଚାଲିଗଲେ ।

ସକାଳ ହେଲା । ଦମୟନ୍ତୀ ନିଦରୁ ଉଠିବାମାତ୍ରେ ଭୟରେ ଏଣେତେଣେ ଆଖି ବୁଲାଇ ଆଣିଲେ । କିନ୍ତୁ କେଉଁଠି ମହାରାଜ ନଳଙ୍କୁ ଦେଖିବାକୁ ପାଇଲେ ନାହିଁ । ଏବେ ସେ ସବୁକଥା ବୁଝିପାରିଲେ । କପୋତ ପକ୍ଷୀପରି କାନ୍ଦି କାନ୍ଦି ସେ ଅତି ଆର୍ତ୍ତସ୍ୱରରେ ନିଜର ସ୍ୱାମୀଙ୍କୁ ଡାକିବାକୁ ଲାଗିଲେ—ହା, ପ୍ରାଣନାଥ ! ମୋତେ ଏକାକିନୀ କରି ତୁମେ କୁଆଡ଼େ ଚାଲିଗଲ ? ଏହିପରି କାନ୍ଦି କାନ୍ଦି ଦମୟନ୍ତୀ

ଦୌଡ଼ିବାକୁ ଆରମ୍ଭ କଲେ । ବାଟରେ ହଠାତ୍ ଏକ ଅଜଗର ଆଗରେ ସେ ଠିଆ ହୋଇଗଲେ । ଭୟଙ୍କର ଅଜଗର ସାପଟି ତାଙ୍କୁ ଗିଳିବା ପାଇଁ ଉଦ୍ୟତ ହେବାର ଦେଖି ସେ ଭୟରେ ନିଜର ସ୍ୱାମୀଙ୍କୁ ଡାକିବାକୁ ଲାଗିଲେ । ଦମୟନ୍ତୀଙ୍କର କରୁଣ କ୍ରନ୍ଦନ ଧ୍ୱନି ଶୁଣି ଏକ ଶବର ସେଠାରେ ଆସି ପହଞ୍ଚିଗଲା । ସେ ଏକ ତୀକ୍ଷ୍ଣ ଅସ୍ତ୍ରଦ୍ୱାରା ଅଜଗରର ମସ୍ତକକୁ ଛେଦନ କଲା । ଦମୟନ୍ତୀ ଅଜଗର କବଳରୁ ମୁକ୍ତହେଲେ ।

ଶବର ପଚାରିଲା—"ଦେବି ! ଏଇ ପାଖରେ ଥିବା ପୋଖରୀରେ ଗାଧୋଇ ପଡ଼ି ତୁମେ ସୁସ୍ଥ ହୁଅ । ମୋ' ପାଖରେ ଏଇ କନ୍ଦମୂଳ ଅଛି । ସେଥିରୁ କିଛି ଖାଇ କ୍ଷୁଧା ଦୂରକର । ଏବେ ଆଉ ଭୟ କରିବାର କିଛି କାରଣ ନାହିଁ ।" କାନ୍ଦି କାନ୍ଦି ରାଣୀଙ୍କ ଆଖିରୁ ଲୁହ ଶୁଖିଯାଇଥିଲା । ଚାଲି ଚାଲି ପାଦ ବଥା ହୋଇଯାଇଥିଲା । କ୍ଷୁଧାରେ ଦେହହାତ ଛିଡ଼ିପଡ଼ିଲା ପରି ଲାଗୁଥିଲା । ତେଣୁ ରାଣୀ ନିକଟବର୍ତ୍ତୀ ସରୋବରକୁ ଯାଇ ଗାଧୋଇ ପଡ଼ିବା ପରେ ଦେହ ଟିକିଏ ଭଲ ଲାଗିଲା । ସାମାନ୍ୟ ଫଳମୂଳ ଖାଇ ସେ ଟିକିଏ ଶାନ୍ତି ଅନୁଭବ କଲେ ।

ମହର୍ଷି ସୂତ କହିଲେ—"ହେ ମୁନିଗଣ ! ସୌନ୍ଦର୍ଯ୍ୟ ଅନେକ ସମୟରେ ବିପଦର କାରଣ ହୁଏ । ଶବରଟି ଏପର୍ଯ୍ୟନ୍ତ କିଛି ଭାବି ନଥିଲା । କିନ୍ତୁ ରାଣୀ ସ୍ନାନସାରି ଫେରିବା ପରେ ତାର ଲୋଲୁପଦୃଷ୍ଟି ଦମୟନ୍ତୀଙ୍କ ଉପରେ ପଡ଼ିଲା । ଦମୟନ୍ତୀଙ୍କ ଅପୂର୍ବ ରୂପଲାବଣ୍ୟ ଦେଖି ଶବର କାମାସକ୍ତ ହୋଇପଡ଼ିଲା । ସେ ବଳପୂର୍ବକ ଦମୟନ୍ତୀଙ୍କୁ ଉପଭୋଗ କରିବ ବୋଲି ମନେ ମନେ ସ୍ଥିରକଲା । ପତିବ୍ରତା ଦମୟନ୍ତୀ ଶବରର ମନୋଭାବ ଜାଣିପାରିଲେ । କ୍ରୋଧାନ୍ୱିତ ହୋଇ ଶବର ନିକଟକୁ ଆସି କହିଲେ—"ଯଦି ମୁଁ ନୈଷଧ ନଳଙ୍କ ବ୍ୟତୀତ ଅନ୍ୟ କୌଣସି ପୁରୁଷକୁ ମନରେ ସ୍ଥାନ ଦେଇ ନଥିବି ତେବେ ଏ ଦୁଷ୍ଟ ଶବର ଏହିକ୍ଷଣି ଭସ୍ମ ହୋଇଯାଉ । ଏତିକି କହିବାମାତ୍ରେ ଶବର କାଟଗଛ ପରି ପ୍ରାଣଶୂନ୍ୟ ହୋଇ ତଳେ ପଡ଼ିଗଲା ।"

ଶବର ମୃତ୍ୟୁ ବରଣ କରିବା ପରେ ଦମୟନ୍ତୀ ଅତି କରୁଣ ସ୍ୱରରେ କାନ୍ଦି କାନ୍ଦି ନିଜ ପିତାଙ୍କ ରାଜଧାନୀ ଆଡ଼କୁ ଅଗ୍ରସର ହେଲେ । ସେ ଆଗରୁ କେବେହେଲେ ଘରୁ ବାହାରକୁ ଆସି ନଗରକୁ ଦେଖି ନଥିଲେ । କିନ୍ତୁ ଘୋର ଅରଣ୍ୟରେ ଆଜି ସେ ଏକା ଏକା ଚାଲିଛନ୍ତି । ବାଟରେ ସେ ଋଷିମାନଙ୍କ ଆଶ୍ରମରେ ପହଞ୍ଚି ଆଶୀର୍ବାଦ ସ୍ୱୀକାର କରି ଓ ସେମାନଙ୍କୁ ପ୍ରଣାମ ଜଣାଇ ଚାଲିବାକୁ ଲାଗିଲେ । କିଛିଦୂର ଅତିକ୍ରମ କରିବା ପରେ ବାଟରେ ବଳଦ, ହାତୀ ଓ ଘୋଡ଼ା ଉପରେ ଜିନିଷ

ଲାଗି ଯାଉଥିବା କେତେକ ବ୍ୟବସାୟୀଙ୍କୁ ସେ ଭେଟିଲେ । ବେପାରୀମାନଙ୍କର ଦଳପତିଙ୍କ ଆଦେଶ ପାଇ ଦମୟନ୍ତୀ ସେମାନଙ୍କ ସହିତ ଚାଲିଲେ । ନିଜ ପତିଙ୍କ ସହିତ ସାକ୍ଷାତ ପାଇବା ଆଶାରେ ସେ ମାସାଧିକ କାଳ ବ୍ୟବସାୟୀମାନଙ୍କ ସାଙ୍ଗରେ ଚାଲିବାକୁ ଲାଗିଲେ । ବେପାରୀଙ୍କ ଦଳପତି ଥିଲେ ଜଣେ ବୃଦ୍ଧ ଓ ଧର୍ମପରାୟଣ ବ୍ୟକ୍ତି । ତେଣୁ ଯାତ୍ରାକାଳରେ କୌଣସି ଦୁର୍ଘଟଣା ଘଟି ନଥିଲା । ରାଣୀ ବାଟ ଚାଲିବାରେ ଅତ୍ୟନ୍ତ ହୋଇଯାଇଥିଲେ । ସେ ବାଧ୍ୟ ହୋଇ ପରିସ୍ଥିତି ସହିତ ନିଜକୁ ଖାପଖୁଆଇଥିଲେ । ଯାଉଁ ଯାଉଁ ବାଟରେ ଏକ ରାଜଧାନୀ ପାଖରେ ଆଶ୍ରୟ ନେଇଥିବା ସମୟରେ ଗୁଡ଼ାଏ ବଣୁଆ ହାତୀ ତାଙ୍କର ଉପରେ ଆକ୍ରମଣ କଲେ । ହଠାତ୍ ବନାଗ୍ନି ସୃଷ୍ଟି ହୋଇ ଚାରିଆଡ଼େ ମାଡିଗଲା । ସମସ୍ତେ ଦମୟନ୍ତୀଙ୍କୁ ଏହି ଦୁର୍ଘଟଣାର କାରଣ ବୋଲି ସ୍ଥିର କଲେ । ସେମାନେ ରାଣୀଙ୍କୁ ମାରିଦେବାପାଇଁ ଚକ୍ରାନ୍ତ କଲେ । ଦମୟନ୍ତୀ ସେମାନଙ୍କ ମନୋଭାବ ଜାଣିପାରି ରାତିରେ ଏକା ଏକା ବନପଥରେ ପଳାଇଗଲେ । ଯାଉଁ ଯାଉଁ ସେ ଏକ ରାଜଧାନୀ ଦେଖିଲେ । ପ୍ରାଣ ବ୍ୟାକୁଳରେ ଅଧା ଶାଢ଼ୀଟି ପିନ୍ଧି ଥିଲେ ମଧ୍ୟ ସେ ରାଜଧାନୀ ଭିତରକୁ ପ୍ରବେଶ କଲେ ।

ମହାରାଜ ସୁବାହୁଙ୍କ ରାଜଧାନୀ ବୋଲି ଦମୟନ୍ତୀ ଜାଣିବାକୁ ପାଇଲେ । ସୁବାହୁ ଯେପରି ଧାର୍ମିକ ଓ ପରୋପକାରୀ ଥିଲେ ତାଙ୍କ ମା' ସେହିପରି ଦୟାବତୀ, ସତୀ ଓ ପତିବ୍ରତା ଥିଲେ । ସଂଯୋଗବଶତଃ ଦମୟନ୍ତୀ ରାଜଧାନୀରେ ପ୍ରବେଶ କଲାବେଳେ ସେ ଚନ୍ଦ୍ରଶାଳା ଘରେ ଠିଆ ହୋଇ ଝରକାରେ ରାଜପଥକୁ ଚାହିଁଥିଲେ । ସେ ଦେଖିଲେ ଦମୟନ୍ତୀଙ୍କ ବାଳ ବିକ୍ଷିପ୍ତ ହୋଇପଡ଼ିଛି । ଅର୍ଦ୍ଧ ଆବୃତ ଦେହ ତାଙ୍କର ଖଣିରୁ ବାହାରିଥିବା ମଣି ପରି ଫୁଟି ଉଠୁଛି । ନଗରର ବାଳକମାନେ ପାଗଳୀ ବୋଲି ଭାବି ଦମୟନ୍ତୀଙ୍କୁ ଢେଲା ମାରୁଛନ୍ତି । ଦମୟନ୍ତୀ ନିଜକୁ ରକ୍ଷା କରିବାପାଇଁ ଚେଷ୍ଟା କରୁଛନ୍ତି । ସୁବାହୁ ମହାରାଜଙ୍କ ଜନନୀ ରାଜମାତା ଦମୟନ୍ତୀଙ୍କ ଅବସ୍ଥା ଦେଖି ବ୍ୟାକୁଳ ହୋଇ ପଡ଼ିଲେ ଏବଂ ଦାସୀକୁ ଡାକି କହିଲେ –"ଦେଖିତ, ଏ ସ୍ତ୍ରୀଲୋକଟି କିପରି ବିପଦରେ ପଡ଼ିଛି । ଦେଖିବାକୁ ରାଜକନ୍ୟା ପରି ମନେ ହେଉଛି । ଦେହରେ ଅଳଙ୍କାର ନାହିଁ କି ପୁରା ଲୁଗା ନାହିଁ । ଏତେ ସୁନ୍ଦର ସ୍ତ୍ରୀଲୋକଟି ପ୍ରତି ଏତେ ଯନ୍ତ୍ରଣା ? ଏହା ଭାଗ୍ୟର ବିଡ଼ମ୍ବନା ଛଡ଼ା ଆଉ କିଛି ନୁହେଁ । ଯଥାଶୀଘ୍ର ତାକୁ ମୋ'ପାଖକୁ ନେଇଆ । ମୁଁ ସାମର୍ଥ୍ୟ ଅନୁସାରେ ତାର କଷ୍ଟ ଦୂର କରିବାପାଇଁ ଚେଷ୍ଟା କରିବି ।"

ରାଣୀଙ୍କ ଆଦେଶ ପାଇ ଦାସୀ ତୁରନ୍ତ ସେଠାକୁ ଯାଇ ପିଲାମାନଙ୍କୁ ଆଡ଼େଇ ଦମୟନ୍ତୀଙ୍କୁ ଧରି ନେଇଗଲା । ରାଣୀ ସ୍ନେହରେ ପଚାରିଲେ—"ତୁ କିଏ ? ଆଉ ଏକା ଏକା ବୁଲୁଛୁ କାହିଁକି ?"

ଦମୟନ୍ତୀ କହିଲେ – "ମୁଁ ରାଣୀମାନଙ୍କ ସେବାକାରିଣୀ ସୈରନ୍ଧ୍ରୀ । ମୋର ସ୍ୱାମୀ ଜଣେ ଗୁଣୀ ବ୍ୟକ୍ତି, କିନ୍ତୁ ଜୁଆଖେଳ ପ୍ରତି ତାଙ୍କର ଦୁର୍ବଳତା ଥିଲା । ସର୍ବସ୍ୱ ହରାଇ ମୋତେ ସାଙ୍ଗରେ ନେଇ ବନକୁ ଆସିଲେ । ବଣରେ ଶୋଇଥିବା-ବେଳେ ମୋତେ ଛାଡ଼ି ସେ କୁଆଡ଼େ ଚାଲିଗଲେ । ମୁଁ ଜଣେ ପତିବ୍ରତା ନାରୀ । ଦିନରାତି ମୁଁ ପତିଙ୍କ ଅନୁସନ୍ଧାନରେ ଘୂରି ବୁଲୁଛି ।"

ରାଣୀ କହିଲେ—"ଝିଅ ! ତୁ ମୋ' ପାଖରେ ରହ । ମୁଁ ଦେଶ ବିଦେଶକୁ ବ୍ରାହ୍ମଣ ଦୂତ ପଠାଇ ତୋ' ସ୍ୱାମୀଙ୍କର ସନ୍ଧାନ ନେବି । ଦେଶ ବିଦେଶରୁ ମଧ୍ୟ ଅନେକ ବ୍ରାହ୍ମଣ ଆମ ରାଜଧାନୀକୁ ଆସୁଛନ୍ତି । ସେମାନଙ୍କଠାରୁ ତୋ' ପତିର ସମ୍ବାଦ ନିଶ୍ଚୟ ମିଳିବ । ନୋହିଲେ ବୁଲି ବୁଲି ତୋ' ପତି ହୁଏତ କେବେ ଆସି ଏଠାରେ ପହଞ୍ଚିବେ ।"

ଦମୟନ୍ତୀ କହିଲେ—"ମା ! ଆପଣଙ୍କ ଆଶ୍ରୟରେ ରହିଲେ ମୋର ଭୟ କରିବାର କିଛି ନାହିଁ । କିନ୍ତୁ ମୋ' ପ୍ରତି କେତୋଟି କଥାରେ ବାଧ ନ କରିବା ପାଇଁ ବିନୀତ ପ୍ରାର୍ଥନା କରୁଛି । ମୁଁ କାହାର ଅଇଁଠା ଖାଇବି ନାହିଁ କି କାହାର ପାଦ ଧୋଇବି ନାହିଁ । କୌଣସି ପୁରୁଷ ସହିତ କଥାବାର୍ତ୍ତା କରିବି ନାହିଁ । ବିଦେଶୀ ବ୍ରାହ୍ମଣଙ୍କ ସହିତ ପତିଙ୍କ ସନ୍ଧାନ ବିଷୟରେ କଥା ହେବି ନାହିଁ । ମୋ' ପ୍ରତି କେହି ଦୁର୍ବ୍ୟବହାର ବା ଅଛା କଲେ ତାଙ୍କୁ ଦଣ୍ଡିତ କରିବେ । ଯଦି କେହି ସବୁବେଳେ ଅଛା କରିବ ତେବେ ତାକୁ ପ୍ରାଣଦଣ୍ଡ ଦେବେ ।"

ରାଣୀ କହିଲେ—"ଝିଅ ! ମୁଁ ତୋର ସବୁକଥା ରକ୍ଷା କରିବି । ପ୍ରାଣଦେଇ ତୋର ଦୁଃଖ ଦୂର କରିବା ପାଇଁ ଚେଷ୍ଟା କରିବି । ତୁ ମୋର ଝିଅ ପରିକି ରହିବୁ । ଆଜିଠାରୁ ତୁ ମୋର ଧର୍ମଝିଅ ହେଲୁ ।"

ରାଣୀଙ୍କ ସ୍ନେହପୂର୍ଣ୍ଣ କଥା ଶୁଣି ଦମୟନ୍ତୀ ସନ୍ତୁଷ୍ଟ ହେଲେ । ରାଜକୁମାରୀ ସୁନନ୍ଦାଙ୍କ ସହିତ ଦମୟନ୍ତୀ ରହିଲେ । ସୁନନ୍ଦା ଦମୟନ୍ତୀଙ୍କୁ ଭଉଣୀ ପରି ବ୍ୟବହାର କଲା ।

ମହାରାଜ ନଳ ଦମୟନ୍ତୀଙ୍କୁ ଛାଡ଼ି ଏକା ଯାଉଥିବାବେଳେ ତାଙ୍କୁ କର୍କୋଟକ ନାଗ ଦଂଶନ କଲା । ଫଳରେ ସାରା ଦେହ ତାଙ୍କର କଳା ପଡ଼ିଗଲା । ସେ ନିଷଧ ଦେଶର ରାଜା ମହାରାଜ ନଳ, ଏହା ତାଙ୍କୁ ଦେଖି କେହି ଜାଣିପାରିଲେ ନାହିଁ । ଏହି ଅବସ୍ଥାରେ ମହାରାଜ ନଳ ଚାଲି ଚାଲି ଅଯୋଧ୍ୟାରେ ପହଞ୍ଚିଲେ । ସେଠାରେ ମହାରାଜ ଋତୁପର୍ଣ୍ଣ ରଥରେ ସାରଥି ରୂପେ ନିଯୁକ୍ତି ପାଇ ରହିଲେ । ରାଜା ସାରଥିର ଗୁଣରେ

ମୁଗ୍ଧ ହୋଇ କହିଲେ—"ତୁମେ ମୋତେ ଅଶ୍ୱଶାସ୍ତ୍ର ଶିଖାଇଦିଅ ଆଉ ମୁଁ ତୁମକୁ ପଶାଖେଳ ଶିଖାଇଦେବି ।" ମହାରାଜ ନଳ ତାହାହିଁ ଚାହୁଁଥିଲେ । ମହାରାଜ ନଳ ଋତୁପର୍ଣ୍ଣଙ୍କଠାରୁ ଅକ୍ଷହୃଦୟ ଶିକ୍ଷା କଲେ ଏବଂ ତାଙ୍କୁ ଅଶ୍ୱଚାଳନା ବିଦ୍ୟା ଶିଖାଇଲେ । ମହାରାଜ ନଳଙ୍କ ହାତରନ୍ଧା ଖାଇ ଋତୁପର୍ଣ୍ଣ ପୁରାପୁରି ତାଙ୍କର ବଶୀଭୂତ ହୋଇପଡ଼ିଲେ ।

ଦମୟନ୍ତୀଙ୍କ ପିତା ମହାରାଜ ଭୀମ, ଜୁଆଖେଳରେ ନଳ ସର୍ବସ୍ୱ ହାରିବା ଓ ଦମୟନ୍ତୀଙ୍କୁ ବଣରେ ଛାଡ଼ି ପଳାଇବା ଖବର ପାଇ ହଜାର ହଜାର ବ୍ରାହ୍ମଣଙ୍କୁ ଝିଅ ଓ ଜୋଇଁଙ୍କୁ ଖୋଜିବା ପାଇଁ ବିଭିନ୍ନ ଦେଶକୁ ପଠାଇଲେ । ସୁଦେବ ନାମରେ ଜଣେ ଚତୁର ବ୍ରାହ୍ମଣ ଦମୟନ୍ତୀଙ୍କୁ ଖୋଜି ଖୋଜି ଆସି ଚେଦି ରାଜ୍ୟର ମହାରାଜ ସୁବାହୁଙ୍କ ରାଜଧାନୀରେ ଆସି ପହଞ୍ଚିଲେ । କୁମାରୀ ସୁନନ୍ଦାଙ୍କ ଦାସୀଙ୍କ ଗହଣରେ ମଳିନ ବସନ ପରିହିତା ଦମୟନ୍ତୀଙ୍କୁ ଦେଖି ବିପ୍ରବର ସୁଦେବ ଯେତିକି ଖୁସି ହେଲେ ସେତିକି ଦୁଃଖିତ ହେଲେ । ସୁଦେବ ଯଥାଶୀଘ୍ର ଭିତରକୁ ଯାଇ ଦମୟନ୍ତୀଙ୍କୁ କହିଲେ —"ଝିଅ ! ତୁ ମୋତେ ଚିହ୍ନି ପାରୁଛୁ କି ? ତୋ' ପିତାଙ୍କର ମୁଁ ଜଣେ ବିଶ୍ୱସ୍ତ ବ୍ରାହ୍ମଣ ବନ୍ଧୁ । ମୁଁ ତୋତେ କୋଳରେ ଖେଳାଇଛି । ମୋର ନାମ ସୁଦେବ । ତୋର ବାପା ତୋତେ ଓ ତୋର ପତିଙ୍କୁ ଖୋଜିବା ପାଇଁ ହଜାରେ ବ୍ରାହ୍ମଣ ଦେଶ ବିଦେଶକୁ ପଠାଇଛନ୍ତି । ତୁମ ଘରେ ସବୁ ଭଲ । ତୋ' ପାଇଁ ଓ ତୋର ପତି ପାଇଁ ସପରିବାର ମହାରାଜ ଚିନ୍ତିତ ଅଛନ୍ତି ।"

ଦମୟନ୍ତୀ ସୁଦେବଙ୍କୁ ଚିହ୍ନିଲେ ମଧ୍ୟ କିଛି କହି ପାରିଲେ ନାହିଁ । ଅତ୍ୟଧିକ ଦୁଃଖରେ ତାଙ୍କ ହୃଦୟ ଫାଟିଗଲା ପରି ଲାଗିଲା । ସେ ତଳେ ମୁଣ୍ଡ ଲଗାଇ ସୁଦେବଙ୍କୁ ପ୍ରଣାମ କଲେ । କିଛି ସମୟ ପରେ କାନ୍ଦି କାନ୍ଦି କହିଲେ—"ହେ ବ୍ରାହ୍ମଣ ଦେବ ! ଆପଣଙ୍କ ସାକ୍ଷାତ ପାଇ ମୁଁ ଆଜି ପୁନର୍ଜନ୍ମ ଲାଭ କଲି । ମୋର ବାପା ମୋ' ପତିଙ୍କ ଖବର ପାଇଁ ଚିନ୍ତିତ ଅଛନ୍ତି ଓ ତାଙ୍କୁ ଖୋଜୁଛନ୍ତି, ଏହା ଜାଣି ସନ୍ତୋଷ ଲାଭ କଲି । ହାୟ, ବିଧାତା ଆମକୁ କେତେ ଦୁଃଖ ଦେଲା ? ଏତିକି କହିବା ପରେ ଦମୟନ୍ତୀ ମୂର୍ଚ୍ଛିତା ହୋଇ ତଳେ ପଡ଼ିଗଲେ । କିଛିକ୍ଷଣ ପରେ ସେ ସଚେତ ହୋଇ ଉଚ୍ଚ ସ୍ୱରରେ କାନ୍ଦିବାକୁ ଲାଗିଲେ । ଶ୍ରାବଣର ବାରିଧାରା ପରି ତାଙ୍କ ଦୁଇ ଆଖିରୁ ଅଶ୍ରୁଧାର ବୋହିବାକୁ ଲାଗିଲା । ନିକଟରେ ଥିବା ସୁନନ୍ଦା ଦମୟନ୍ତୀଙ୍କ କ୍ରନ୍ଦନ ଧ୍ୱନି ଶୁଣି ଦୌଡ଼ିଯାଇ ମା'ଙ୍କୁ କହିଲା—"ସୈରନ୍ଧ୍ରୀ ଜଣେ ଅପରିଚିତ ବ୍ରାହ୍ମଣ ଆଗରେ କାନ୍ଦୁଛନ୍ତି । ମା' ତୁମେ ଯାଇ ଘଟଣା କଣ ବୁଝ ।" ସୈରନ୍ଧ୍ରୀ ତାଙ୍କ ପିତାଙ୍କ ସମ୍ବନ୍ଧରେ ନିଶ୍ଚୟ କିଛି ଖବର ପାଇଛନ୍ତି ।

ରାଜମାତା ଏହି ଖବର ପାଇବାମାତ୍ରେ ସେଠାରେ ଆସି ପହଞ୍ଚିଲେ । ସେ ସୁଦେବଙ୍କୁ ଡାକି ପଚାରିଲେ—"ଏ ଝିଅଟି କିଏ ? କାହାର ସ୍ତ୍ରୀ । ସେ କାନ୍ଦୁଛି କାହିଁକି ? ଆପଣ ତାକୁ ଚିହ୍ନିଲେ କିପରି ? ସବୁ ସତକଥା କୁହନ୍ତୁ ।"

ବ୍ରାହ୍ମଣ କହିଲେ—"ଦେବି ! ଏ ଝିଅ ବିଦର୍ଭର ରାଜା ଭୀମଙ୍କର ଏକମାତ୍ର ଅଲିଅଳି କନ୍ୟା ଦମୟନ୍ତୀ । ନିଷଧ ଦେଶର ମହାରାଜ ନଳଙ୍କ ପତ୍ନୀ । ଏହାଙ୍କ ପତି ଜୁଆଖେଳରେ ସର୍ବସ୍ୱ ହରାଇ ଏହାଙ୍କୁ ଛାଡ଼ି ଚାଲିଯାଇଛନ୍ତି । ଦମୟନ୍ତୀର ପତି କୁଆଡ଼େ ଯାଇଛନ୍ତି ସେ ସମ୍ବାଦ ମିଳିନାହିଁ । ମୁଁ ତା'ର ପିତା ମହାରାଜ ଭୀମଙ୍କ ବନ୍ଧୁ ସୁଦେବ ବ୍ରାହ୍ମଣ । ମହାରାଜ ହଜାରେ ବ୍ରାହ୍ମଣଙ୍କୁ ଦମୟନ୍ତୀ ଓ ତା'ର ପତିଙ୍କୁ ଖୋଜିବା ପାଇଁ ବିଭିନ୍ନ ଦେଶକୁ ପଠାଇଛନ୍ତି । ସୌଭାଗ୍ୟବଶତଃ ମୁଁ ଏଠାରେ ଦମୟନ୍ତୀକୁ ପାଇଲି ।"

ଏହା ଶୁଣିବା ମାତ୍ରେ ରାଜମାତା ଦମୟନ୍ତୀଙ୍କୁ ଆଲିଙ୍ଗନ କରି ନିଜ ଛାତିରେ ଜାବୁଡ଼ି ଧରିଲେ । କାନ୍ଦି କାନ୍ଦି ରାଜମାତା କହିଲେ—"ଝିଅ ! ଆରେ ତୋର ଏପରି ଦୁର୍ଦ୍ଦଶା ହେଲା । ତୁ ତୋର ପରିଚୟ ବି ଆମକୁ ଦେଲୁ ନାହିଁ । ତୁ ଛୋଟ ପିଲା ହୋଇଥିବାବେଳେ ମୁଁ ତୋତେ କାଖେଇଛି । ମୁଁ ତୋର ସାନ ମାଉସୀ, ତୋର ମା' ମୋର ବଡ଼ ଭଉଣୀ । ଆମେ ଦୁହେଁ ଦଶାର୍ଣ୍ଣ ଦେଶର ଅଧିପତି ମହାରାଜ ସୁଦାମାଙ୍କ ଝିଅ । ତୋ' ତାଳୁରେ ଏକ ଚିହ୍ନ ଥିଲା, ଏବେ ତାହା ଦେଖାଯାଉଛି । ମାଉସୀର ଝିଅ ବୋଲି ଶୁଣିବାମାତ୍ରେ ସୁନନ୍ଦା ଦମୟନ୍ତୀଙ୍କ ପାଦତଳେ ପଡ଼ି କାନ୍ଦି କାନ୍ଦି କହିଲା—ଭଉଣୀ ! ମୁଁ ଅଜ୍ଞାନତାବଶତଃ ଐଶ୍ୱର୍ଯ୍ୟଗର୍ବରେ ମତ୍ତ ହୋଇ ତୁମକୁ ଦାସୀ ବୋଲି ଭାବି ବହୁତ ଦୁର୍ବ୍ୟବହାର କରିଥିବି । ସେସବୁ ଭୁଲି ଯିବ ଓ ମୋତେ କ୍ଷମା ଦେବ ।"

ଦମୟନ୍ତୀ ସୁନନ୍ଦାକୁ ଗାଢ଼ ଆଲିଙ୍ଗନ ପାଶରେ ଆବଦ୍ଧ କରି କାନ୍ଦି କାନ୍ଦି କହିଲେ—"ଭଉଣୀ ! ଏତେ ବଡ଼ ବିପଦରେ ତୁ ହିଁ ମୋତେ ଆଶ୍ରୟ ଦେଇଛୁ । ନୋହିଲେ ମୁଁ ଏବେ ଜୀବନରେ ଥାଆନ୍ତି କି ନାହିଁ ସନ୍ଦେହ ।"

ରାଜମାତା କହିଲେ—"ଝିଅ ! ଏ ଘର ତୋର । ତୁ ଏଇଠି ରହ ।"

ଦମୟନ୍ତୀ କହିଲେ—"ମାଉସୀ ! ମୋର ପିଲା ଦୁଇଟି ବାପାଙ୍କ ପାଖରେ ଅଛନ୍ତି । ବାପା ମଧ୍ୟ ମୋ' ବିଷୟରେ ଖୁବ୍ ଚିନ୍ତିତ ଥିବେ । ତେଣୁ ତୁମେ ମୋତେ ବିଦର୍ଭରେ ପହଞ୍ଚାଇ ଦିଅ ।"

ଦମୟନ୍ତୀଙ୍କ ବ୍ୟାକୁଳତା ଦେଖି ରାଜମାତା ସୁଦେବଙ୍କୁ କହି ଦମୟନ୍ତୀଙ୍କର ବିଦର୍ଭ ଯିବାର ବନ୍ଦୋବସ୍ତ କରିଦେଲେ । ପାଲିଙ୍କିରେ ଦମୟନ୍ତୀଙ୍କୁ ସୁରକ୍ଷା ବାହିନୀ ସାଙ୍ଗରେ ପଠାଇ ରାଜମାତା ଓ ସୁନନ୍ଦା ଅଶ୍ରୁଳ ନୟନରେ ତାଙ୍କୁ ବିଦାୟ ଦେଲେ ।

ଦମୟନ୍ତୀ ବିଦାୟ ନେଇ ବିଦର୍ଭରେ ଯାଇ ପହଞ୍ଚିଲେ । ମହାରାଜ ଭୀମ ଝିଅକୁ ପାଇ ପରମ ସନ୍ତୋଷ ଲାଭ କଲେ । ଦମୟନ୍ତୀ ନିଜର ପିତା ମାତା, ପୁଅ ଝିଅ ଓ ଭାଇଙ୍କୁ ଦେଖି ଖୁସି ହେଲେ । ଶେଷରେ ମା'ଙ୍କ ପାଖକୁ ଯାଇ ଦମୟନ୍ତୀ କହିଲେ—"ମା' ଯେ କୌଣସି ଉପାୟରେ ତାଙ୍କୁ ଖୋଜି ବାହାର କରିବାକୁ ପଡ଼ିବ । ତାଙ୍କୁ ନପାଇ ମୁଁ ବଞ୍ଚି ପାରିବି ନାହିଁ ।"

ରାଣୀଙ୍କଠାରୁ ଏହି କଥା ଶୁଣି ମହାରାଜ ଭୀମ ଜାମାତା ନଳଙ୍କୁ ଖୋଜି ବାହାର କରିବାପାଇଁ ଚତୁର ବ୍ରାହ୍ମଣମାନଙ୍କୁ ନିଯୁକ୍ତ କଲେ । ଦମୟନ୍ତୀ ସେହି ବ୍ରାହ୍ମଣମାନଙ୍କୁ ସଙ୍କେତ ବତାଇବାକୁ ଯାଇ କହିଥିଲେ—"ଯେ ଶାଢ଼ୀକୁ ଅଧା ଚିରି ବଣରେ ନିଜର ପତିବ୍ରତା ପତ୍ନୀକୁ ଛାଡ଼ି ଲୁଚିରହିଛନ୍ତି ତାଙ୍କର ବିରହରେ ତାଙ୍କ ପ୍ରାଣପ୍ରିୟା ଦଗ୍‌ଧିଭୂତ ହେଉଛନ୍ତି । ଏହି କଥା ଅନୁସନ୍ଧାନରେ ଯାଉଥିବା ସମୟେ ସର୍ବତ୍ର କହିବେ । ଏହି ସଙ୍କେତ ନେଇ ବ୍ରାହ୍ମଣମାନେ ଚାରିଆଡ଼କୁ ଚାଲିଲେ । ରାଜଧାନୀମାନଙ୍କରେ ପହଞ୍ଚି ସେମାନେ ନଳଙ୍କୁ ଖୋଜିବାକୁ ଲାଗିଲେ, କିନ୍ତୁ କେହି ନଳଙ୍କ ପତ୍ତା ପାଇଲେ ନାହିଁ ।

ଜନୈକ ବ୍ରାହ୍ମଣ ବୁଲି ବୁଲି ଶେଷରେ ଅଯୋଧ୍ୟାର ମହାରାଜ ଋତୁପର୍ଣ୍ଣଙ୍କ ରାଜସଭାରେ ପହଞ୍ଚିଲେ । ସେଠାରେ ଦମୟନ୍ତୀ କହିଥିବା କଥା କହିଲେ । ତାହା ଶୁଣି କେହି କିଛି କହିଲେ ନାହିଁ । କିନ୍ତୁ ରାଜାଙ୍କଠାରୁ ଆତିଥ୍ୟ ଲାଭ କରି ଯେତେବେଳେ ସେ ଫେରିଯିବାକୁ ବାହାରିଲେ ସେତେବେଳେ ରାଜାଙ୍କ ସାରଥି ବାହୁକ ବ୍ରାହ୍ମଣଙ୍କୁ ଡାକି ପଚାରିଲେ—"ବ୍ରାହ୍ମଣ ! ତୁମେ ସଭାରେ ଯାହା କହିଲ, ଯେ ତୁମକୁ ଏହା କହିଛନ୍ତି ତାଙ୍କୁ ଯାଇ କହିବ—ଆର୍ଯ୍ୟନାରୀମାନେ ପତିଙ୍କ ଅପରାଧ ପ୍ରତି ଧ୍ୟାନ ଦିଅନ୍ତି ନାହିଁ । ତାଙ୍କର ପତି ବାଧ୍ୟ ହୋଇ ତାଙ୍କୁ ଛାଡ଼ିଛନ୍ତି । କିନ୍ତୁ ସେ ସବୁବେଳେ ତାଙ୍କୁ ସ୍ମରଣ କରୁଛନ୍ତି । ତାଙ୍କଠାରୁ ଦୂରେଇ ଯାଇଥିଲେ ମଧ୍ୟ ସେ ମନରେ ଅଛନ୍ତି । ଦୂରତା କେବେହେଲେ ହାର୍ଦ୍ଦିକ ମିଳନରେ ବ୍ୟାଘାତ ସୃଷ୍ଟି କରେ ନାହିଁ । ସମୟ ଆସିଲେ ପତି ସହିତ ତାଙ୍କର ନିଶ୍ଚୟ ମିଳନ ହେବ ।" ଏତିକି କହି ବାହୁକ ଚାଲିଗଲେ ।

ବ୍ରାହ୍ମଣ ବିଦର୍ଭକୁ ଫେରିଯାଇ ଦମୟନ୍ତୀଙ୍କୁ ସବୁକଥା କହିଲେ । ତାହା ଶୁଣି ଦମୟନ୍ତୀ ଖୁସି ହୋଇଗଲେ । ସେ ମା'ଙ୍କଠାରୁ ଅନୁମତି ନେଇ ପିତାଙ୍କୁ ବୁଝାଇ ସୁଦେବ ନାମକ ସେହି ବ୍ରାହ୍ମଣକୁ ଅଯୋଧ୍ୟା ପଠାଇଲେ । ପୂର୍ବରୁ ମହାରାଜ ଋତୁପର୍ଣ୍ଣ ଦମୟନ୍ତୀଙ୍କ ପ୍ରତି ଆସକ୍ତ ଥିଲେ । ଦମୟନ୍ତୀ ସ୍ୱୟମ୍ବରରେ ତାଙ୍କୁ ବରଣ କରିବେ ବୋଲି ସେ ଖୁବ୍ ଆଶାୟୀ ହୋଇପଡ଼ିଥିଲେ । କିନ୍ତୁ ଯେତେବେଳେ ଲୋକପାଳମାନଙ୍କୁ ଛାଡ଼ି ଦମୟନ୍ତୀ ନଳଙ୍କୁ ପତିରୂପେ ବରଣ କଲେ ସେତେବେଳେ ସେ ନିରାଶ ହୋଇଗଲେ । କିନ୍ତୁ ଦମୟନ୍ତୀଙ୍କ ପ୍ରତି ଜାତ ହୋଇଥିବା ଅନୁରାଗ ତାଙ୍କର କମିଲା ନାହିଁ । ଏହା ସ୍ୱୟଂ ଦମୟନ୍ତୀ ଜାଣିଥିଲେ । ରାଜା ନଳଙ୍କୁ ବିଦର୍ଭ ନେଇ ଆସିବା ପାଇଁ ଦମୟନ୍ତୀ ଏକ ଉପାୟ ଚିନ୍ତା କଲେ । ସେ ସୁଦେବ ବ୍ରାହ୍ମଣଙ୍କୁ କହିଲେ—"ତୁମେ ଯେତେ ଶୀଘ୍ର ସମ୍ଭବ ଅଯୋଧ୍ୟା ଚାଲିଯାଅ । ଅଯୋଧ୍ୟାର ରାଜା ଋତୁପର୍ଣ୍ଣଙ୍କୁ କହିବ—ଦମୟନ୍ତୀ ପୁଣି ସ୍ୱୟମ୍ବର କରିବାପାଇଁ ଚାହୁଁଛନ୍ତି । ତାଙ୍କ ପତି ତାଙ୍କୁ ଛାଡ଼ି ଚାଲିଯାଇଛନ୍ତି । ତାଙ୍କର ଖବର କିଛି ମିଳୁନାହିଁ । ସ୍ୱୟମ୍ବର କାଲି ହେବ । ଆପଣ ଗୋଟିଏ ରାତି ମଧ୍ୟରେ ବିଦର୍ଭରେ ପହଞ୍ଚି ପାରିଲେ ସ୍ୱୟମ୍ବରରେ ଯୋଗ ଦେଇପାରିବେ ।"

ଦମୟନ୍ତୀଙ୍କ କଥା ଶୁଣି ସୁଦେବ ଯଥାଶୀଘ୍ର ଯାଇ ଅଯୋଧ୍ୟାରେ ପହଞ୍ଚିଲେ ଓ ରାଜାଙ୍କୁ ଏକାନ୍ତରେ ଭେଟି ସବୁକଥା କହିଲେ । ରାଜା ଖୁସି ହୋଇ ସାରଥି ବାହୁକକୁ ଡାକି କହିଲେ—"ବାହୁକ ! ତୁମେ ଆଜି ଦିନକ ଭିତରେ ଯଦି ମୋତେ ନେଇ ବିଦର୍ଭରେ ପହଞ୍ଚାଇ ଦେବ ତେବେ ମୁଁ ତୁମକୁ ମନବୋଧ ହେଲାଭଳି ପାରିତୋଷିକ ଦେବି । ଶୁଣିଲି, ଭୀମନନ୍ଦିନୀ ଦମୟନ୍ତୀ କାଲି ସକାଳେ ଦ୍ୱିତୀୟବାର ସ୍ୱୟମ୍ବର କରିବେ । ମୁଁ ସେହି ସ୍ୱୟମ୍ବର ସଭାରେ ଯୋଗ ଦେବାପାଇଁ ଚାହୁଁଛି ।"

ଏହା ଶୁଣି ନଳଙ୍କ ହୃଦୟ ବିଦୀର୍ଣ୍ଣ ହୋଇଗଲା । ସେ ଘଟଣାଟିକୁ ଆଦୌ ବିଶ୍ୱାସ କରିପାରିଲେ ନାହିଁ । ଦମୟନ୍ତୀ ତାଙ୍କୁ ନେବାପାଇଁ ଏହି ଉପାୟ ଭାବିଛନ୍ତି ବୋଲି ନଳ ଜାଣିପାରିଲେ । ସେ କହିଲେ—"ମହାରାଜ ! ଆପଣଙ୍କ ଆଦେଶ ଶିରୋଧାର୍ଯ୍ୟ । ମୁଁ ସନ୍ଧ୍ୟାପୂର୍ବରୁ ଆପଣଙ୍କୁ ନେଇ ବିଦର୍ଭରେ ପହଞ୍ଚାଇ ଦେବି ।"

ରାଜା ନଳଙ୍କ ସାରଥି ଦମୟନ୍ତୀଙ୍କ ପୁତ୍ରକୁ ବିଦର୍ଭରେ ଛାଡ଼ି ଆସି ସେହି ଅଯୋଧ୍ୟାରେ ଋତୁପର୍ଣ୍ଣଙ୍କ ସାରଥିଭାବେ ରହିଥିଲା । ନଳ ଓ ତାଙ୍କ ସାରଥି ଏକା ସାଙ୍ଗରେ ରହୁଥିଲେ । କିନ୍ତୁ ନଳଙ୍କୁ କର୍କୋଟକ ଦଂଶନ କରିଥିବାରୁ ସେ ବିରୂପ ହୋଇ

ଯାଇଥିଲେ । ସେଥିପାଇଁ ସାରଥି ତାଙ୍କୁ ଚିହ୍ନିପାରିଲା ନାହିଁ । ବିଦର୍ଭ ଯାତ୍ରା ସମୟରେ ରାଜା ଋତୁପର୍ଣ୍ଣ ନଳଙ୍କ ସାରଥି ବାର୍ଷ୍ଣେୟଙ୍କୁ ମଧ୍ୟ ସାଙ୍ଗରେ ନେଇ ଯାଇଥିଲେ । ବାର୍ଷ୍ଣେୟ ଶୀଘ୍ର ରଥ ଚଲାଇବାରୁ ଘୋଡ଼ାଗୁଡ଼ିକ କ୍ଳାନ୍ତ ହୋଇ-ପଡ଼ିଲେ । ଏହା ଦେଖି ଋତୁପର୍ଣ୍ଣ ଦୁଃଖରେ ଭାଙ୍ଗିପଡ଼ିଲେ । ଗୋଟିଏ ଦିନରେ ଘୋଡ଼ାଗୁଡ଼ିକ ତାଙ୍କୁ ନେଇ ବିଦର୍ଭରେ କିପରି ପହଞ୍ଚାଇବେ ତାହା ସେ ଭାବିବାକୁ ଲାଗିଲେ । ରାଜାଙ୍କ ବ୍ୟଗ୍ରତା ଦେଖି ନଳ ନିଜେ ରଥ ଚାଳନା କଲେ । ନଳ ସାରଥି ସ୍ଥାନରେ ବସିବାମାତ୍ରେ ଘୋଡ଼ାଗୁଡ଼ିକ ପକ୍ଷୀଙ୍କ ପରି ପୃଥିବୀ ପୃଷ୍ଠରେ ଉଡ଼ିବାକୁ ଲାଗିଲେ । ରଥର ତୀବ୍ର ଗତି ଦେଖି ମହାରାଜ ଋତୁପର୍ଣ୍ଣ ସନ୍ଧ୍ୟାସୁଦ୍ଧା କୁଣ୍ଡିନଗରରେ ପହଞ୍ଚି ପାରିବେ ବୋଲି ବିଶ୍ୱାସ କଲେ । ରଥର ଗତି ଓ ଅଶ୍ୱଚାଳନା ରୀତି ଦେଖି ବାର୍ଷ୍ଣେୟର ସନ୍ଦେହ ଜାତ ହେଲା । ସେ ଭାବିଲା, ହୁଏତ ଏ ସାରଥି ଇନ୍ଦ୍ରଙ୍କ ମାତଳି ହୋଇଥିବ ନୋହିଲେ ନିଷଧାଧିପ ମହାରାଜ ନଳ ହୋଇଥିବେ, କାରଣ ପୃଥିବୀରେ ନଳଙ୍କ ବ୍ୟତୀତ ଅନ୍ୟ କେହି ସେ ବିଦ୍ୟା ଜାଣନ୍ତି ନାହିଁ । କିନ୍ତୁ କର୍କୋଟକ ଦଂଶନ କରିଥିବାରୁ ନଳଙ୍କ ଦେହ କଳା ପଡ଼ି ଯାଇଥିଲା । କଳି ତାଙ୍କ ଦେହରେ ପ୍ରବେଶ କରିଥିବାରୁ ତାଙ୍କର ରୂପ, ରଙ୍ଗ, ଗଠନ ବିକୃତ ହୋଇ-ଯାଇଥିଲା, କିନ୍ତୁ ତାଙ୍କର ଗତିବିଧିକୁ ଦେଖି ବାର୍ଷ୍ଣେୟର ସନ୍ଦେହ ଘନୀଭୂତ ହେବାକୁ ଲାଗିଲା ।

ରଥ ଖୁବ୍ ଦ୍ରୁତବେଗରେ ଯାଉଥିବାରୁ ମହାରାଜ ଋତୁପର୍ଣ୍ଣଙ୍କ ଉତ୍ତରୀୟଟି ଉଡ଼ିଗଲା । ରାଜା କହିଲେ ବାହୁକ -- "ରଥ ରଖ, ମୋର ଉତ୍ତରୀୟ ଉଡ଼ିଗଲା । ବାର୍ଷ୍ଣେୟ ଦୌଡ଼ିଯାଇ ତାହା ନେଇଆସିବ ।"

ହସି ହସି ବାହୁକ କହିଲେ—"ରାଜନ୍ ! ଆପଣ ଏତିକି କହିବା ମଧ୍ୟରେ ରଥ ଦୁଇକୋଶ ବାଟ ଆସି ସାରିଲଣି । ଆଉ ଉତ୍ତରୀୟର ଆଶା ରଖନ୍ତୁ ନାହିଁ ।"

ନଳଙ୍କ ଅଶ୍ୱବିଦ୍ୟା ଓ ରଥଚାଳନା ଚାତୁରୀ ଦେଖି ମହାରାଜ ଋତୁପର୍ଣ୍ଣ ଆଶ୍ଚର୍ଯ୍ୟ ହୋଇଗଲେ । ରଥରେ ବସି ରାଜା କହିଲେ—"ବାହୁକ ! ତୁମେ ଅଶ୍ୱବିଦ୍ୟାରେ ଯେପରି ନିପୁଣ ମୁଁ ଗଣନା କରିବାରେ ସେହିପରି ପ୍ରବୀଣ । ଦେଖ ଆଗରେ ଯେଉଁ ବାହାଡ଼ା ଗଛ ଦେଖାଯାଉଛି ତା'ର ଦୁଇଟି ଡାଳ ଓ ଅନ୍ୟାନ୍ୟ ଶାଖାରେ ମୋଟ ପାଞ୍ଚ କୋଟି ପତ୍ର ଓ ଦୁଇ ହଜାର ପଞ୍ଚାନବେ ଫଳ ଅଛି ।"

ଏହା ଶୁଣିବାମାତ୍ରେ ନଳଙ୍କ ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସେ ରଥକୁ ଫେରାଇ ଆଣି ବାହାଡ଼ା ଗଛ ଆଗରେ ରଖିଦେଲେ । ରଥରୁ ଓହ୍ଲାଇ ପଡ଼ି ସେ

କହିଲେ—"ରାଜନ୍ ! ଯେ ପର୍ଯ୍ୟନ୍ତ ମୁଁ ଏ ଗଛର ପତ୍ର ଓ ଫଳ ଗଣି ନିଜର କୁତୂହଳକୁ ଶାନ୍ତ ନ କରିଛି ସେ ପର୍ଯ୍ୟନ୍ତ ଆଉ ଆଗକୁ ଯିବିନାହିଁ ।"

ବାହୁକବେଶୀ ନଳଙ୍କ କଥା ଶୁଣି ମହାରାଜ ଋତୁପର୍ଣ୍ଣ ବିନୀତ ହୋଇ କହିଲେ —"ଭାଇ ! ଦେଖ, ବିଳମ୍ବ ହେଉଛି । ତୁମେ ଜିଦ୍ କରନାହିଁ । ପରେ ମୁଁ ମୋ କଥାର ପରୀକ୍ଷା ଦେବି ।"

ନଳ ଦୃଢ଼ତାର ସହିତ କହିଲେ—"ରାଜନ୍ ! ଆପଣ ଯାହା କରନ୍ତୁ ପଛକେ ମୁଁ ଏ ଗଛର ପତ୍ର ଓ ଫଳ ଗଣିବା ସିଦ୍ଧାନ୍ତ ବଦଳେଇ ପାରିବି ନାହିଁ । ଆପଣଙ୍କର ଶୀଘ୍ର ଯିବାର ଆବଶ୍ୟକତା ଯଦି ଅଛି ତେବେ ବାର୍ଷ୍ଣେୟ ରଥ ନେଇ ଯାଉ । ଏଇ ବାଟ, ସିଧା ବିଦର୍ଭ ଦେଶକୁ ଯାଇଛି ।"

ରାଜା ବିବଶତା ପ୍ରକାଶ ପୂର୍ବକ କହିଲେ—"ବାହୁକ ! ଏହା ବାର୍ଷ୍ଣେୟର ସାମର୍ଥ୍ୟ ବାହାରେ । ଅଶ୍ୱ ବିଦ୍ୟାରେ ତୁମେ ହିଁ ନିପୁଣ । ହଉ, ଏବେ ମୁଁ ତୁମର ଅଧୀନ । ତୁମେ ନିଜର କୁତୂହଳ ଶାନ୍ତ କର ।" ଏହା ଶୁଣି ନଳ ବାହାଡ଼ା ଗଛକୁ ହାଣି ତାର ପତ୍ର ଓ ଫଳ ଛଡ଼େଇ ଗଣିବାକୁ ଲାଗିଲେ । ରାଜାଙ୍କ କହିବା ଅନୁସାରେ ସବୁ ଠିକ୍ ହେଲା । ଏହା ଦେଖି ନଳ ଆଶ୍ଚର୍ଯ୍ୟ ହୋଇ କହିଲେ—"ମହାରାଜ ! ଆପଣ ଯେଉଁ ବିଦ୍ୟାବଳରେ ଏତେ ଶୀଘ୍ର ଗଣନା କରି ପାରୁଛନ୍ତି ତାହା ମୋତେ ଶିଖାଇଦେଲେ ଯାଇ ମୁଁ ରଥଚାଳନା କରିବି ।"

ରାଜା ଋତୁପର୍ଣ୍ଣ କହିଲେ—"ବାହୁକ ! ମୁଁ ଗଣନା କରିବାରେ ଯେପରି ନିପୁଣ ପଶାଖେଳରେ ସେହିପରି ନିପୁଣ । ମୋତେ ତୁମେ ଅଶ୍ୱହୃଦୟ ବିଦ୍ୟା ଶିଖାଇ ଦିଅ ଆଉ ମୁଁ ତୁମକୁ ଅକ୍ଷୟ ହୃଦୟବିଦ୍ୟା ଶିଖାଇଦେବି । ମୁଁ ପ୍ରଥମେ ତୁମକୁ ଅକ୍ଷହୃଦୟ ବିଦ୍ୟା ଦେଉଛି, ତୁମେ ମୋତେ ପରେ ଅଶ୍ୱହୃଦୟ ବିଦ୍ୟା ଶିଖାଇବ । ଏହା କହି ମହାରାଜ ଋତୁପର୍ଣ୍ଣ ବିଧିଅନୁସାରେ ଅକ୍ଷବିଦ୍ୟା ଶିକ୍ଷା ଦେଲେ । ସେହି ବିଦ୍ୟା ଶିକ୍ଷା କରିବା ମାତ୍ରେ ବାହୁକବେଶୀ ମହାରାଜ ନଳଙ୍କ ଦେହରୁ କଳିଯୁଗ ବାହାରି ପଳାଇଲା । ରାଜା କଳିକୁ ଅଭିଶାପ ଦେବା ପାଇଁ ଭାବୁଥିବା ସମୟରେ କଳିଯୁଗ ବରଦାନ କରିବାକୁ ଯାଇ କହିଲା—ମହାରାଜ ! ଯେ ଆପଣଙ୍କ ଚରିତକୁ ଶ୍ରଦ୍ଧାର ସହିତ ଶୁଣିବ ମୁଁ ତାକୁ କେବେହେଲେ ଦୁଃଖ ଦେବିନାହିଁ ।"

କଳିଯୁଗ ରାଜାଙ୍କ ଶରୀରରୁ ବାହାରିଯିବା ପରେ ନଳଙ୍କ ମୁଖମଣ୍ଡଳ ଉଜ୍ଜ୍ୱଳ ହୋଇଉଠିଲା । କଳିଯୁଗ ରାଜାଙ୍କ ଦେହରୁ ଯାଇ ବାହାଡ଼ା ଗଛରେ ପଶିଗଲା । ଏହି

ଘଟଣା ଘଟିବାମାତ୍ରେ ବାହାଡ଼ା ଗଛଟି ଏକ କ୍ଷୁଦ୍ର ବୃକ୍ଷରେ ପରିଣତ ହୋଇଗଲା । ବାହୁକ ନଳ ରଥ ଚଳାଇ ସନ୍ଧ୍ୟା ହେବା ପୂର୍ବରୁ ମହାରାଜ ଋତୁପର୍ଣ୍ଣଙ୍କୁ ନେଇ ବିଦର୍ଭ ଦେଶର କୁଣ୍ଡୀ ନଗରରେ ପହଞ୍ଚାଇ ଦେଲେ । ରଥର ଶବ୍ଦ ଓ ବେଗରେ କୁଣ୍ଡୀନଗର ଘୋଡ଼ାଗୁଡ଼ିକ ଚମକି ପଡ଼ିଲେ । ଦମୟନ୍ତୀ ରଥ ଶବ୍ଦରୁ ମହାରାଜ ନଳ ରଥଚାଳନା କରୁଥିବାର ଜାଣିପାରିଲେ ।

କୁଣ୍ଡୀ ନଗରରେ ସ୍ୱୟମ୍ବରର କୌଣସି ଆୟୋଜନ ହୋଇ ନଥିଲା କି କୌଣସି ରାଜା ବା ରାଜକୁମାର ଆସି ନଥିଲେ । ରାଜପ୍ରାସାଦ ସଜା ହୋଇ ନଥିଲା । ଏସବୁ ଦେଖି ମହାରାଜ ଋତୁପର୍ଣ୍ଣ ଆଶ୍ଚର୍ଯ୍ୟ ହୋଇଗଲେ । ମହାରାଜ ଭୀମ ଅଯୋଧ୍ୟାର ରାଜା ଋତୁପର୍ଣ୍ଣଙ୍କ ଆଗମନ ବାର୍ତ୍ତା ପାଇ ଆନନ୍ଦିତ ହେଲେ । ଅତି ଆଦରରେ ଋତୁପର୍ଣ୍ଣଙ୍କୁ ସ୍ୱାଗତ ଜଣାଇ ମହାରାଜ ଭୀମ ତାଙ୍କୁ ଆସିବାର କାରଣ ପଚାରିଲେ । ମହାରାଜ ଋତୁପର୍ଣ୍ଣ ମଧ୍ୟ ସ୍ୱୟମ୍ବରର କୌଣସି ଆୟୋଜନ ନଦେଖି କହିଲେ— "ଆପଣଙ୍କୁ ସାକ୍ଷାତ କରିବାର ଅନେକ ଦିନପରେ ପୁଣି ଇଚ୍ଛା ହେବାରୁ ଚାଲିଆସିଲି ।"

ମହାରାଜ ଭୀମ କହିଲେ—"ଏହା ମୋର ସୌଭାଗ୍ୟ । ଏ ରାଜ୍ୟ ଆପଣଙ୍କର ଆଉ ମୁଁ ବି ଆପଣଙ୍କର । ମହାରାଜ ଋତୁପର୍ଣ୍ଣ ଏହା ଶୁଣି ଚିନ୍ତାଗ୍ରସ୍ତ ହୋଇପଡ଼ିଲେ । କିନ୍ତୁ ସ୍ୱୟମ୍ବର ବିଷୟରେ କିଏ ଖବର ଦେଲା ଓ କାହିଁକି ଦେଲା । ମହାରାଜ ଭୀମଙ୍କୁ ଏହା ପଚାରିବା ପାଇଁ ତାଙ୍କର ସାହସ ହେଲନାହିଁ । କନ୍ୟାଦାନ ଥରେମାତ୍ର କରାଯାଏ ଏବଂ କୁଳବତୀ କନ୍ୟା ଥରଟିଏ ପତିବରଣ କରେ । ଏହିକଥା ଭାବି ସେ ତୁରନ୍ତ ଫେରିଯିବା ପାଇଁ ଇଚ୍ଛା କଲେ ।"

ମହାରାଜ ଭୀମ କହିଲେ—"ମହାରାଜ ! ଆପଣ ଶହେ ଯୋଜନରୁ ଅଧିକ ଦୂର ଯାତ୍ରା କରିଆସିଛନ୍ତି । ଆପଣ ଆମକୁ ପର ବୋଲି ନଭାବି ଏଠାରେ ସୁଖରେ ରହନ୍ତୁ ।"

ମହାରାଜ ଭୀମଙ୍କ ଆଗ୍ରହକୁ ଋତୁପର୍ଣ୍ଣ ପ୍ରତ୍ୟାଖ୍ୟାନ କରିପାରିଲେ ନାହିଁ । ରାଜମହଲର ଅତିଥିଶାଳାରେ ସେ ରହିଲେ । ବାହୁକ ଅଶ୍ୱଶାଳାରେ ଘୋଡ଼ାଙ୍କୁ ଖୋଲିଦେଇ ସେମାନଙ୍କର ଯଥାଯଥ ଯତ୍ନ ନେଲେ । ସେ ମହାରାଜ ଋତୁପର୍ଣ୍ଣଙ୍କର ଖାଦ୍ୟ ମଧ୍ୟ ପ୍ରସ୍ତୁତ କରିଥିଲେ । ତାଙ୍କ ରନ୍ଧା ଖାଦ୍ୟ ଅଲୌକିକ ସ୍ୱାଦୁଯୁକ୍ତ ହେବ ବୋଲି ସେ ଲୋକପାଳମାନଙ୍କଠାରୁ ବର ପାଇଥିଲେ । ଦମୟନ୍ତୀ ଦୂରରୁ ବାହୁକ ବେଶୀ ରାଜାଙ୍କୁ ଦେଖୁଥିଲେ । ତାଙ୍କର ଚାଲିଚଳଣି, କଥାବାର୍ତ୍ତା, ବ୍ୟବହାର ସବୁକିଛି

ନଳଙ୍କ ପରି ଜଣାପଡ଼ୁଥିଲେ ମଧ୍ୟ ତାଙ୍କର ରୂପ, ରଙ୍ଗ, ଆକାର ବଦଳି ଯାଇଥିବାରୁ ମନରେ ସନ୍ଦେହ ଆସୁଥିଲା । ଦମୟନ୍ତୀ ନିଜର ସଖୀ କେଶିନୀକୁ ନଳଙ୍କ ପାଖକୁ ପଠାଇଲେ । କେଶିନୀ ନଳଙ୍କ ପାଖକୁ ଯାଇ ଅତି ସ୍ନେହରେ ତାଙ୍କର ଖବର ପଚାରିଲା ।

ନଳ କହିଲେ—"ମହାରାଜ ଋତୁପର୍ଣ୍ଣ ଦମୟନ୍ତୀଙ୍କ ସ୍ୱୟମ୍ବର କଥା ଶୁଣି ଆସିଛନ୍ତି । ମୋ' ସହିତ ଥିବା ଦ୍ୱିତୀୟ ସାରଥି ମହାରାଜ ନଳଙ୍କର ବାର୍ଷ୍ଣେୟ ନାମକ ସାରଥି ଏବଂ ମୁଁ ମହାରାଜା ଋତୁପର୍ଣ୍ଣଙ୍କ ପ୍ରଧାନ ସାରଥି ।"

କେଶିନୀ ପଚାରିଲା—"ଆପଣ ବା ବାର୍ଷ୍ଣେୟ, ମହାରାଜ ନଳ ଏବେ କେଉଁଠି ଅଛନ୍ତି, ଜାଣିଛନ୍ତି କି ?"

ନଳ କହିଲେ—"ବାର୍ଷ୍ଣେୟ ତାଙ୍କ ପୁଅ ଓ ଝିଅକୁ ଏଠାରେ ଛାଡ଼ି ଅଯୋଧ୍ୟା ଚାଲିଗଲା ଓ ସେଇଠି ଚାକିରି କଲା । ମହାରାଜ ନଳ ନିଜ ଦେଶ ଛାଡ଼ି ବେଶ ବଦଳାଇ ଏଣେ ତେଣେ ବୁଲୁଛନ୍ତି । ତାଙ୍କୁ କେହି ଚିହ୍ନିପାରୁ ନାହାନ୍ତି ।"

କେଶିନୀ କହିଲା—"ଏଠିକାର ବ୍ରାହ୍ମଣ ସୁଦେବ ଏକ ଗୀତ କହିଥିଲା, ଆପଣ ତା'ର କି ଉତ୍ତର ଦେଇଥିଲେ ?"

ନଳ କହିଲେ—"ମୁଁ କହିଥିଲି, ସତୀ ସାଧ୍ୱୀ ଆର୍ଯ୍ୟଲଲନା କେବେ କୌଣସି ଅବସ୍ଥାରେ ମଧ୍ୟ ପତିଙ୍କ ଉପରେ କ୍ରୋଧ ପ୍ରକାଶ କରନ୍ତି ନାହିଁ ।"

କେଶିନୀ ଫେରିଯାଇ ଦମୟନ୍ତୀଙ୍କୁ ସବୁକଥା କହିଲା । ସବୁ ଶୁଣିବାପରେ ମଧ୍ୟ ଦମୟନ୍ତୀଙ୍କ ମନରୁ ସନ୍ଦେହ ଦୂର ହେଲନାହିଁ । ନଳଙ୍କ ପରିବର୍ତ୍ତିତ ରୂପ ଏହି ସନ୍ଦେହର କାରଣ ଥିଲା । ସେ କେଶିନୀକୁ କହିଲେ —"ତୁ ଗୋପନରେ ରହି ତାଙ୍କର ସମସ୍ତ କାର୍ଯ୍ୟ ଦେଖିଆସି ମୋତେ କହିବୁ ।" ଦମୟନ୍ତୀଙ୍କ ଆଦେଶ ଅନୁସାରେ କେଶିନୀ ନଳଙ୍କର ସମସ୍ତ କାର୍ଯ୍ୟକଳାପ ଅନୁଧ୍ୟାନ ପରେ ଫେରି ଆସି କହିଲା—"ସେ ଜଣେ ଅଲୌକିକ ପୁରୁଷ । ବିନା ଅଗ୍ନିରେ ଅଗ୍ନି ସୃଷ୍ଟି କରୁଛନ୍ତି । ଶୂନ୍ୟ ଜଳପାତ୍ରକୁ ଜଳପୂର୍ଣ୍ଣ କରିଦେଉଛନ୍ତି । ସେ ପାକବିଦ୍ୟାରେ ବିଶେଷ ନିପୁଣ ଅଛନ୍ତି । ଏହିପରି ଅନେକ ପ୍ରକାର ଅସାଧାରଣ ଗୁଣ ତାଙ୍କଠାରେ ପରିଲକ୍ଷିତ ହେଉଛି ।"

ଦମୟନ୍ତୀ କହିଲେ—"ତାଙ୍କ ହାତରନ୍ଧା କିଛି ମାଗି ନେଇଆ ।" କେଶିନୀ କୌଶଳରେ ନଳଙ୍କ ପାଖରୁ କିଛି ରନ୍ଧାଖାଦ୍ୟ ମାଗିଆଣିଲା । ସେହି ଖାଦ୍ୟ ଚାଖି ଦମୟନ୍ତୀ ନିଜ ପତିଙ୍କ ରନ୍ଧା ବୋଲି ନିଃସନ୍ଦେହରେ ଜାଣିପାରିଲେ । ତଥାପି ନଳଙ୍କ ବିକୃତ ରୂପ ଓ କ୍ଷୁଦ୍ରାକାର ଦେହକୁ ଦେଖି ତାଙ୍କର ସନ୍ଦେହ ରହିଲା । ଦମୟନ୍ତୀ

କେଶିନୀ ସହିତ ନଳର ପୁଅ ଓ ଝିଅ ଦୁହିଁଙ୍କୁ ନଳଙ୍କ ପାଖକୁ ପଠାଇଲେ । ସେହି ପିଲାଦୁହିଁଙ୍କୁ ଦେଖି ନଳ ଦୌଡ଼ିଆସି ତାଙ୍କୁ ଛାତିରେ ଜାବୁଡ଼ି ଧରିଲେ ଓ ବାରମ୍ବାର ସେମାନଙ୍କ ମୁଖଚୁମ୍ବନ କଲେ । ସେ ନଳଙ୍କୁ ଓ ନଳର ସ୍ଥିତିକୁ ଭୁଲିଯାଇ କାନ୍ଦିବାକୁ ଲାଗିଲେ । ତାଙ୍କର ଏହି ଆଚରଣକୁ ଦେଖି ସେ ପୁଣ୍ୟଶ୍ଳୋକ ନଳ ମହାରାଜ ବୋଲି କେଶିନୀ ନିଶ୍ଚିତ ହୋଇଗଲା ।

କିଛି ସମୟ ପରେ ସଚେତନ ହୋଇ ଆଖିରୁ ଲୁହ ପୋଛି ନଳ କହିଲେ—"କେଶିନୀ ! ତୁ ବାରମ୍ବାର ଆଉ ମୋ' ପାଖକୁ ଆସିବୁ ନାହିଁ । ଏକାନ୍ତରେ ତୁ ବାରମ୍ବାର ଆସୁଥିବାରୁ ଲୋକେ ତୋତେ ଓ ମୋତେ ସନ୍ଦେହ କରିବେ । ହେ ସୁନ୍ଦରି ! ଏ ପିଲା ଦୁହିଁଙ୍କ ପରି ମୋର ଦୁଇଟି ପିଲା ଥିଲେ । ତାଙ୍କ କଥା ମନେ ପଡ଼ିଯିବାରୁ ମୋର ଏପରି ଅବସ୍ଥା ହେଲା । ତୁ ମନରେ ଆଉ କିଛି ଭାବିବୁ ନାହିଁ ।"

ଏହା କହି ନଳ ନଳର ପୁଅ ଓ ଝିଅକୁ ବିଦାୟ ଦେଲେ । ତାଙ୍କ ଛାତି ଫାଟିଯାଉଥିଲା ଓ ସେ ବ୍ୟାକୁଳ ହେଉଥିଲେ । କେଶିନୀଠାରୁ ସବୁକଥା ଶୁଣି ଦମୟନ୍ତୀଙ୍କର ଆଉ ସନ୍ଦେହ ରହିଲାନାହିଁ । ସେ ମା'ଙ୍କଦ୍ୱାରା ରାଜାଙ୍କୁ କହି ନଳଙ୍କୁ ଅନ୍ତଃପୁରକୁ ଡକାଇ ପଠାଇଲେ । ରାଜାଙ୍କ ଆଦେଶ ପାଇ ବାହୁକ ସାରଥି ବେଶରେ ନଳ ଅନ୍ତଃପୁରକୁ ଗଲେ । ଦମୟନ୍ତୀ ନିଜେ ତାଙ୍କୁ ସ୍ୱାଗତ କଲେ ଓ ଛଳଛଳ ନୟନରେ ତାଙ୍କ ଆଡ଼କୁ ଚାହିଁରହିଲେ । ନିଜର ପ୍ରିୟତମା ପତ୍ନୀର ମଳିନ ବେଶ, ରୁକ୍ଷକେଶ ଦେଖି ମହାରାଜ ନଳ କାନ୍ଦିବାକୁ ଲାଗିଲେ । ଦମୟନ୍ତୀଙ୍କ ମଳିନ ମୁଖ ଓ କୃଶ ଦେହ ଦେଖି ସେ ଧୈର୍ଯ୍ୟହୀନ ହୋଇପଡ଼ିଲେ । ନଳଙ୍କୁ କାନ୍ଦୁଥିବାର ଦେଖି ରାଣୀ ଅଧୀର ହୋଇପଡ଼ିଲେ । ସେ କାନ୍ଦି ଉଠିଲେ ଓ ମୂର୍ଚ୍ଛିତ ହୋଇ ତଳେ ପଡ଼ିଗଲେ । ତଥାପି ନଳ ଦମୟନ୍ତୀଙ୍କୁ ସ୍ପର୍ଶ କଲେ ନାହିଁ । ସଚେତ ହେବା ପରେ ଦମୟନ୍ତୀ ମୁଖ ପ୍ରକ୍ଷାଳନ କରି କହିଲେ—"ବାହୁକ ! ତୁମେ ଏପରି କୌଣସି ନିର୍ଦ୍ଦୟ ପୁରୁଷ ଥିବାର ଜାଣିଛ, ଯେ ନିଜର ପ୍ରାଣପ୍ରିୟା ପତ୍ନୀକୁ ନିର୍ଜନ ବନରେ ରାତିକାଳରେ ଏକାକିନୀ କରି ପଳାଇଯାଇଥିଲେ । ଯେ ନିଜେ ସୁଖରେ ଥାଏ ଓ ଯାହାର ପତ୍ନୀ ବିୟୋଗ ଦୁଃଖରେ ଛଟପଟ ହେଉଥାଏ ସେପରି କୌଣସି ପୁରୁଷକୁ ତୁମେ ଜାଣିଛ କି ?"

ଏହା ଶୁଣି ମହାରାଜ ନଳ ଦ୍ରୁତବେଗରେ ଯାଇ ଦମୟନ୍ତୀଙ୍କୁ ଛାତିରେ ଜାକି ଧରି କହିଲେ—"ପ୍ରିୟେ ! ମୁଁ ତୁମକୁ ନିର୍ଦ୍ଦୟ ହୋଇ ଛାଡ଼ି ଆସି ନାହିଁକି ନିଜ ଇଚ୍ଛାରେ ରାଜଗାଦି ପରିତ୍ୟାଗ କରିନାହିଁ । କଳିଯୁଗ ମୋ' ଶରୀରରେ ପ୍ରବେଶ କରି ମୋ'ବୁଦ୍ଧିକୁ ଭ୍ରଷ୍ଟ କରିଦେଇଥିଲା । ତାହାରି ଯୋଗୁ ମୁଁ ରାଜ୍ୟ ଛାଡ଼ିଲି । ସେହି ମୋତେ

ତୁମଠାରୁ ଅଲଗା କରିଦେଲା । ଯାହା ହୋଇଛି ତାହା ଘଟିବାର ଥିଲା । ବର୍ତ୍ତମାନ କଳିଯୁଗ ମୋ' ଦେହରୁ ବାହାରିଯାଇଛି । ଆମର ପୂର୍ବ ସୁଦିନଗୁଡ଼ିକ ଖୁବ୍ ଶୀଘ୍ର ଫେରିଆସିବ । ଆମେ ପୁଣି ଆମର ଐଶ୍ୱର୍ଯ୍ୟ ଭୋଗକରି ସୁଖରେ ରହିବା ।" ଦୀର୍ଘ ଚାରିବର୍ଷ ପରେ ପତି ପତ୍ନୀଙ୍କର ପୁନର୍ମିଳନ ହେଲା । ସାରାରାତି ପତିପତ୍ନୀ ଦୁଃଖସୁଖ କଥା ହୋଇ କଟାଇଦେଲେ । ସକାଳେ ମହାରାଜ ନଳ ଓ ମହାରାଣୀ ଦମୟନ୍ତୀ ସ୍ନାନ ସାରି ବସ୍ତ୍ର ଆଭୂଷଣରେ ଭୂଷିତ ହୋଇ ମହାରାଜ ଭୀମଙ୍କ ପାଖକୁ ଯାଇ ପ୍ରଣାମ କଲେ । ନିଜ ଝିଅ ସହିତ ଜୋଇଁଙ୍କୁ ଦେଖି ରାଜା ଖୁବ୍ ଆନନ୍ଦିତ ହେଲେ । ସେହି ଅବସରରେ ମହାରାଜ ଭୀମ ଏକ ବଡ଼ଧରଣର ଉତ୍ସବ ପାଳନ କଲେ ଏବଂ ବ୍ରାହ୍ମଣମାନଙ୍କୁ ନାନାପ୍ରକାର ଦାନ ଦିଆଗଲା ।

ମହାରାଜ ଋତୁପର୍ଣ୍ଣ ବାହୁକ ଯେ ମହାରାଜ ନଳ ଏହା ଜାଣିବା ମାତ୍ରେ ତାଙ୍କ ପାଖକୁ ଯାଇ କ୍ଷମା ପ୍ରାର୍ଥନା କଲେ । ନଳ ତାଙ୍କୁ ଅଶ୍ୱହୃଦୟ ବିଦ୍ୟା ଶିଖାଇଦେଲେ । କର୍କୋଟକ ମହାରାଜ ନଳଙ୍କ ଦେହରୁ ବିଷ ପ୍ରତ୍ୟାହାର କରିନେଲା । ଏହାପରେ ମହାରାଜ ନଳଙ୍କ ପୂର୍ବ ସୌନ୍ଦର୍ଯ୍ୟ ଫେରିଆସିଲା । କଳିଯୁଗ ଚାଲିଯିବା ଓ କର୍କୋଟକ ବିଷ ଉଠାଇନେବା ପରେ ମହାରାଜ ନଳ ପୂର୍ବର ରୂପ ଓ ସୌନ୍ଦର୍ଯ୍ୟରେ ଚନ୍ଦ୍ରପରି ସୁଶୋଭିତ ହେଲେ । ମହାରାଜ ଋତୁପର୍ଣ୍ଣ ଭୀମ ଓ ନଳଙ୍କଠାରୁ ଅନୁମତି ଲାଭ କରି ଅଯୋଧ୍ୟା ଫେରିଗଲେ । କିଛିକାଳ କୁଣ୍ଡିନଗରରେ ରହିବା ପରେ ମହାରାଜ ନଳ ପତ୍ନୀ ଦମୟନ୍ତୀଙ୍କ ସହିତ କିଛି ଅର୍ଥ ଓ ସୈନ୍ୟ ସହ ନିଜ ରାଜଧାନୀକୁ ପ୍ରତ୍ୟାବର୍ତ୍ତନ କଲେ । ସେ ପୁଣି ନିଜର ଭାଇ ସହିତ ଜୁଆ ଖେଳିଲେ । ଏଥର ଜୁଆ-ଖେଳରେ ପୁଷ୍କର ନିଜର ସର୍ବସ୍ୱ ହରାଇଲେ । ପୁଷ୍କର ଦମୟନ୍ତୀଙ୍କ ପ୍ରତି ଦେଖାଇଥିବା ପୂର୍ବରଦୁର୍ବ୍ୟବହାର ପାଇଁ ଭୟ କରୁଥିଲେ । ସେ ଭାବିଲେ ମହାରାଜ ମୋତେ ମୃତ୍ୟୁଦଣ୍ଡ ଦେବେ । କିନ୍ତୁ ମହାରାଜ ନଳ ଥିଲେ ଜଣେ ଧାର୍ମିକ ପୁରୁଷ । ସେ କହିଲେ—"ଭାଇ ପୁଷ୍କର ! ଦେଖ, ଭାଗ୍ୟହିଁ ସବୁପ୍ରକାର ସୁଖ ଦୁଃଖ ଦିଏ । କେହି କାହାକୁ ସୁଖ ବା ଦୁଃଖ ଦେଇପାରେ ନାହିଁ । କଳିଯୁଗର ପ୍ରଭାବ ହେତୁ ମୋର ବୁଦ୍ଧି-ଭ୍ରଷ୍ଟ ହୋଇଥିଲା । ସେଥିରେ ତୁମର କୌଣସି ଦୋଷ ନାହିଁ । ତୁମେ ମୋର ସହୋଦର ଭାଇ । ତୁମେ ଆଦୌ ଭୟ କରନାହିଁ । ମୋର ପୂର୍ବ ଅନୁରାଗ, ସ୍ନେହ, ମମତା ତୁମପ୍ରତି ଅତୁଟ ରହିବ । ତୁମର ପୂର୍ବରୁ ଯେତିକ ରାଜ୍ୟ ଓ ଧନସମ୍ପଦ ଥିଲା ତାହା ମୁଁ ଫେରାଇ ଦେଉଛି । ଭଗବାନ୍ ତୁମର ମଙ୍ଗଳ କରନ୍ତୁ । ତୁମେ ଏବେ ନିଜ ନଗରକୁ ଫେରିଯାଇ ସୁଖରେ ରୁହ । ତୁମର ଯେବେ ଯାହା ଆବଶ୍ୟକ ପଡ଼ିବ ମୋତେ ଜଣାଇବ ।"

ମହାରାଜ ନଳଙ୍କ କଥା ଶୁଣି ପୁଷ୍କର ତାଙ୍କ ପାଦତଳେ ପଡ଼ି କାନ୍ଦି କାନ୍ଦି କହିଲେ—" ଭାଇ ! ମୁଁ ବଡ଼ ନୀଚ । ମୋ' ପାଇଁ ଆପଣମାନଙ୍କୁ ବହୁ ଦୁଃଖକଷ୍ଟ

ସନ୍ଧ୍ୟାବାକୁ ପଡ଼ିଲା । ଆଜିଠାରୁ ଆପଣଙ୍କ ଯଶ ସାରା ସଂସାରରେ ପରିବ୍ୟାପ୍ତି ହେବ । ଆପଣଙ୍କ ପବିତ୍ର ଚରିତକୁ ଯେଉଁମାନେ ଶ୍ରଦ୍ଧାର ସହିତ ଶୁଣିବେ କଳିକାଳ ସେମାନଙ୍କର କୌଣସି ପ୍ରକାର ଅନିଷ୍ଟ କରିବ ନାହିଁ ।

ପୁଷ୍କରଙ୍କର କଥା ଶୁଣି ମହାରାଜ ନଳ ତାଙ୍କୁ ବାରମ୍ବାର ଆଲିଙ୍ଗନ କଲେ । ସ୍ନେହରେ ପୁଷ୍କରଙ୍କୁ ସେ ବିଦାୟ ଦେଲେ । ମହାରାଜ ନଳଙ୍କ ପ୍ରତ୍ୟାବର୍ତ୍ତନ ଉପଲକ୍ଷେ ଦେଶର ପ୍ରଜାକୁଳ ଏକ ବଡ଼ଧରଣର ଉତ୍ସବ ପାଳନ କଲେ । ମହାରାଜ ସମସ୍ତଙ୍କୁ ଯଥୋଚିତ ସତ୍କାର କଲେ । ସ୍ୱର୍ଗରେ ଶଚୀଙ୍କ ସହିତ ଦେବରାଜ ଇନ୍ଦ୍ରଙ୍କ ପରି ମହାରାଜ ନଳ ପତ୍ନୀ ଦମୟନ୍ତୀଙ୍କ ସହିତ ନିଜ ରାଜ୍ୟରେ ସୁଖରେ କାଳ ଅତିବାହିତ କଲେ ।

ମହର୍ଷି ସୂତ କହିଲେ--"ମୁନିଗଣ ! ମହାରାଜ ନଳଙ୍କର ପୂର୍ବ ସୁଦିନ ଫେରିଆସିଲା । କିନ୍ତୁ ସେ ଯେଉଁ ସବୁ ବିପଦର ସମ୍ମୁଖୀନ ହୋଇଥିଲେ ସେ ବିପଦ କୌଣସି ଶତ୍ରୁ ଉପରେ ନ ପଡ଼ୁ । ସଂକ୍ଷେପରେ ମହାରାଜ ଋତୁପର୍ଣ୍ଣଙ୍କ ପ୍ରସଙ୍ଗରେ ମୁଁ ପୁଣ୍ୟଶ୍ଳୋକ ମହାରାଜ ନଳ ଓ ଦମୟନ୍ତୀଙ୍କ ଚରିତ କହିଲି । ଯେଉଁମାନେ ମହାରାଜ ଋତୁପର୍ଣ୍ଣ, ନଳ, ଦମୟନ୍ତୀ ପ୍ରଭୃତିଙ୍କ ନାମ ନିମନ୍ତେ ପ୍ରତିଦିନ କୀର୍ତ୍ତନ କରନ୍ତି ସେମାନଙ୍କୁ କଳିକାଳ କୃତ ଦୋଷ ଦୁଃଖ ଦିଏ ନାହିଁ—

କର୍କୋଟକସ୍ୟ ନାଗସ୍ୟ ଦମୟନ୍ତ୍ୟାଃ ନଳସ୍ୟ ଚ ।
ଋତୁପର୍ଣ୍ଣସ୍ୟ ରାଜର୍ଷେଃ କୀର୍ତ୍ତନଂ କଳିନାଶନମ୍ ॥"

ମହର୍ଷି ଶୌନକ ପଚାରିଲେ—"ଭଗବାନ୍ ! ମହାରାଜ ଋତୁପର୍ଣ୍ଣଙ୍କ ପୁତ୍ର କିଏ ହେଲା ? ଦୟାକରି ଋତୁପର୍ଣ୍ଣଙ୍କ ପରେ ଇକ୍ଷ୍ୱାକୁବଂଶୀୟ ମୁଖ୍ୟ ରାଜାମାନଙ୍କ ଚରିତ ଆମକୁ କୁହନ୍ତୁ ।"

ମହର୍ଷି ସୂତ କହିଲେ—"ଠିକ୍ ଅଛି, ମୁଁ ଯଥାକ୍ରମେ ସେହି ପବିତ୍ର ବଂଶୀୟ ରାଜାମାନଙ୍କ କଥା କହୁଛି, ଆପଣମାନେ ସାବଧାନ ହୋଇ ଶୁଣନ୍ତୁ ।"

## ଛପ୍‌ପୟ

ଦମୟନ୍ତୀ ପତି ତଜୀ ଭାଗ୍ୟବଶ ଆଇ ପିତୁ ଘର ।
ପତି ଖୋଜନ ହିତ ରଚେଯୌ ଦୁବାର ମୃଷା ସ୍ୱୟମ୍ବର ॥
ନଳ ଋତୁପର୍ଣ୍ଣ ସମେତ ସସୁର ଗୃହ ରଥ ଲୈ ଆୟେ ।
ନଳଦମୟନ୍ତୀ ମିଲେ ସୁନତ ସବ ଜନ ହରଷାୟେ ॥
କାୟାଁତେଁ କଳିଯୁଗ ଭଗେୟା, ଜବ ନୃପ କେ ବନ ଫିରି ଗୟେ ।
ଗୟୋ ରାଜ ଫିରି ତେଁ ମିଲ୍ୟା, ଜଗ ଯଶ ଭାଗୀ ନଳ ଭୟେ ॥

# ମହାରାଜ ସୌଦାସ ଚରିତ

ତତଃ ସୁଦାସସ୍ତତ୍ପୁତ୍ରୋ ମଦୟନ୍ତୀ ପତିର୍ନୃପ ।
ଆହୁର୍ମିତ୍ରସହଂ ଯଂ ବୈ କଲ୍ମାଷାଂଘ୍ରିମୁତ କ୍ୱଚିତ୍ ।
ବଶିଷ୍ଠଶାପାଦ୍ ରକ୍ଷୋଽଭୂଦନପତ୍ୟଃ ସ୍ୱକର୍ମଣା ॥

(ଶ୍ରୀଭାଗ ୯ସ୍କ-୯ଅ-୧୮ଶ୍ଳୋ)

## ଛପ୍ପୟ

ହୟ ବିଦ୍ୟା ଋତୁପର୍ଣ୍ଣ ନୃପତିବର ନଳତେଁ ଲୀନ୍ହୀ ।
ପାସୋ ଫେକନ କଳା ତିନହୁଁ ବଦଲେମହୁଁ ଦୀନ୍ହୀ ॥
ସର୍ବକାମ ଋତୁପର୍ଣ୍ଣପୁତ୍ର ବଳବାନ୍ ଶୂର ଅତି ।
ସୁତ ସୁଦାସ ତିନ ଭୟେ ସୁରାନୀ ମଦୟନ୍ତୀପତି ॥
ମୃଗୟା ହିତ ବନ ମହଁ ଗୟେ, ହନେଯା ରାକ୍ଷସ ଭୂପ ତହଁ ।
ତିହି ଭ୍ରାତା ଧରି ମୂଦ ବପୁ, କରୈ ରସୋଇ ମହଲମହଁ ॥

ମୁନିମାନଙ୍କର ମଧ ବେଳେବେଳେ ମତିଭ୍ରମ ହୁଏ । ସବୁଙ୍କ ମୁନି ବୁଦ୍ଧି ପ୍ରକାର । କେତେକ ଅଛନ୍ତି, ଯେଉଁମାନେ ଅଖଣ୍ଡ ଜ୍ଞାନର ଅଧିକାରୀ । ସେମାନେ ପ୍ରଥମ ଶ୍ରେଣୀସ୍ଥ । ଦ୍ୱିତୀୟ ଶ୍ରେଣୀସ୍ଥ ମୁନିମାନେ ସାଧାରଣ ବାହ୍ୟ ବ୍ୟବହାରରେ ଲାଗି ରହିଥାନ୍ତି । ସେମାନଙ୍କର ଜ୍ଞାନ ସାଧାରଣ ଲୋକଙ୍କ ପରି, କିନ୍ତୁ ସମାହିତ ଚିତ୍ତରେ ଧ୍ୟାନମଗ୍ନ ହେବାପରେ ସେମାନେ ଭୂତ, ଭବିଷ୍ୟତ ଓ ବର୍ତ୍ତମାନ କଥା ଅବଲୀଳାକ୍ରମେ କହନ୍ତି । ଶାପ ଦେବା, ବରଦେବା ଆଦି କାର୍ଯ୍ୟ ପ୍ରଥମ ଶ୍ରେଣୀସ୍ଥ ମୁନିମାନେ କରନ୍ତି । ପ୍ରକୃତି ଅନୁସାରେ ବୁଦ୍ଧି ହୁଏ, ସେହିପରି ସାଧୁତା ଅନୁସାରେ ଜ୍ଞାନ ହୁଏ । ସବୁଙ୍କ ମୁନିମାନଙ୍କ ମୁହଁରୁ ହଠାତ୍ ଅଭିଶାପ ବାହାରିଯାଏ । ପରେ ଧ୍ୟାନସ୍ଥ ହୋଇ

ସେମାନେ ସେହି ବିଷୟରେ ବିଚାର କରନ୍ତି ଏବଂ ଅଭିଶାପର ସମୟ ଓ ଶାପମୁକ୍ତିର ଉପାୟ ମଧ୍ୟ କହି ଦିଅନ୍ତି । କେହି କାହାକୁ ଅଭିଶାପ ବା ବର ଦିଏ ନାହିଁ କି ଅସମୟରେ ଅନୁଗ୍ରହ ପ୍ରଦର୍ଶନ କରେ ନାହିଁ । ସମୟ ଅନୁସାରେ ଯୋଗାଯୋଗ ଘଟିଯାଏ । ଯାହା ଘଟିବାର କଥା ତାହା ସମୟ ଆସିଲେ ନିଶ୍ଚୟ ଘଟିବ, ଏହି ସତ୍ୟକୁ କେହି ଅନ୍ୟଥା କରିପାରିବ ନାହିଁ ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଏକଥା ତ ମୁଁ ଆଗରୁ କହିଛି ଯେ ଇକ୍ଷ୍ୱାକୁ ବଂଶରେ ଆୟୁତାୟୁଙ୍କ ପୁତ୍ର ନଳଙ୍କ ପ୍ରିୟମିତ୍ର ଋତୁପର୍ଣ୍ଣ ଜନ୍ମ ହୋଇଥିଲେ । ତାଙ୍କ ପୁତ୍ର ହେଲେ ସର୍ବକାମ । ସୁଦାସ ସର୍ବକାମଙ୍କ ପୁତ୍ର ରୂପେ ଜନ୍ମଗ୍ରହଣ କଲେ । ସେ କଲ୍ମାଷ ପାଦ ଓ ମିତ୍ରସହ ନାମରେ ସୁପ୍ରସିଦ୍ଧ ହୋଇଥିଲେ । ମହର୍ଷି ବଶିଷ୍ଠଙ୍କ ଶାପରେ ସେହି ସୁଦାସ ନରଭକ୍ଷକ ରାକ୍ଷସ ପାଲଟି ଯାଇଥିଲେ ।"

ଏହା ଶୁଣି ମହାରାଜ ପରୀକ୍ଷିତ ପଚାରିଲେ—"ବ୍ରହ୍ମନ୍ ! ଧାର୍ମିକ ରାଜା ସୁଦାସ କେଉଁ ଅପରାଧ ହେତୁ ରାକ୍ଷସ ହେଲେ । ସେ ଥିଲେ ମହର୍ଷି ବଶିଷ୍ଠଙ୍କ ଶିଷ୍ୟ । ନିଜର ପ୍ରିୟଶିଷ୍ୟ ସୁଦାସଙ୍କୁ ସର୍ବଜ୍ଞ ଋଷି ବଶିଷ୍ଠ କେଉଁ କାରଣରୁ ଏପରି କଠୋର ଅଭିଶାପ ଦେଲେ ?"

ଶ୍ରୀ ଶୁକଦେବ କହିଲେ—"କେହି କାହାକୁ ସୁଖ ବା ଦୁଃଖ ଦିଏ ନାହିଁ । ଅମୁକ ବ୍ୟକ୍ତି ମୋତେ କଷ୍ଟ ଦେଲା, ଅମୁକ ଲୋକ ହେତୁ ମୋର ଉନ୍ନତି ହେଲା ଏପରି କହିବାରେ କୁବୁଦ୍ଧିର ସୂଚନା ମିଳେ । କାରଣ ସମସ୍ତେ କର୍ମ ବନ୍ଧନରେ ବନ୍ଧା ଥାଇ କର୍ମାନୁରୂପ ହୋଇ କାର୍ଯ୍ୟ କରନ୍ତି । ଦିନେ ପରମ ଯଶସ୍ୱୀ ଧର୍ମପରାୟଣ ରାଜା ସୁଦାସ ବନକୁ ମୃଗୟା ପାଇଁ ଯାଇଥିଲେ । ସେହି ବଣରେ ଦୁଇଟି ରାକ୍ଷସ ସିଂହ ରୂପ ଧରି ବୁଲୁଥିଲେ । ମହାରାଜ ସୁଦାସ ସେଥିରୁ ଗୋଟିକୁ ମାରି ଅନ୍ୟଟିକୁ ଛାଡ଼ିଦେଲେ । ଭାଇ ମରିଯିବାରୁ ଅନ୍ୟ ରାକ୍ଷସ ମନରେ ବଡ଼ ଦୁଃଖ ଆସିଲା । ଯେକୌଣସି ଉପାୟରେ ହେଉ ପଛକେ ରାଜାଙ୍କ ଉପରେ ପ୍ରତିଶୋଧ ନେବା ପାଇଁ ସେ ସ୍ଥିର କଲା ।

କିଛିଦିନ ବିତିଗଲା । ଦିନେ ସେ ରାକ୍ଷସ କୌଶଳ କରି ରାଜାଙ୍କ ରୋଷେଇଆକୁ ଉଠେଇ ନେଇଗଲା ଏବଂ ନିଜେ ବଶିଷ୍ଠଙ୍କ ରୂପ ଧରି ରାଜାଙ୍କ ପାଖକୁ ଯାଇ କହିଲା—ରାଜନ୍ ! ମୁଁ ଆଜି ନରମାଂସ ଖାଇବାକୁ ଇଚ୍ଛା କରୁଛି ।

ନିଜ ଗୁରୁଙ୍କଠାରୁ ଏପରି ଅଧର୍ମପୂର୍ଣ୍ଣ କଥା ଶୁଣି ରାଜା ବିସ୍ମିତ ହୋଇ ଭାବିଲେ, ଗୁରୁଙ୍କର ଆଜି କଣ ହୋଇଛି । ସେ ଏପରି ଅସମ୍ଭବ କଥା କାହିଁକି

କରୁଛନ୍ତି ? ତଥାପି ସେ ପାଚକକୁ ନରମାଂସ ରନ୍ଧନ ପାଇଁ ଆଦେଶ ଦେଲେ । ରାକ୍ଷସ ଏହାପରେ ବଶିଷ୍ଠଙ୍କ ରୂପ ଛାଡ଼ି ପାଚକର ରୂପ ଗ୍ରହଣ କଲା । ସେ ବଧଶାଳାରୁ ଏକ ମୃତ ପୁରୁଷକୁ ନେଇ ତାର ମାଂସ କଟାକଟି କରି ରାନ୍ଧିଲା । ଯେତେବେଳେ ଯଥାର୍ଥରେ ବଶିଷ୍ଠ ଋଷି ଖାଇବାପାଇଁ ଆସି ପହଞ୍ଚିଲେ ସେତେବେଳେ ରାଜା ନିଜେ ଏକ ସୁନା ଥାଳରେ ରନ୍ଧାମାଂସ ସହିତ ଅନ୍ୟାନ୍ୟ ଭୋଜ୍ୟ ଦ୍ରବ୍ୟ ପରିବେଷଣ କଲେ । ବଶିଷ୍ଠ ନରମାଂସର ବ୍ୟଞ୍ଜନ ଦେଖି ଭୀଷଣ ରାଗିଗଲେ । ସେ ଆଉ କିଛି ଭାବି ନ ପାରି ଅତ୍ୟଧିକ କ୍ରୋଧରେ କହିଲେ—"ରେ ଦୁଷ୍ଟ ! ନରମାଂସ ହେଉଛି ରାକ୍ଷସମାନଙ୍କର ଆହାର । ତୁ ମୋତେ ରାକ୍ଷସଙ୍କ ଖାଦ୍ୟ ନରମାଂସ ଖାଇବାକୁ ଦେଇଥିବାରୁ ରାକ୍ଷସ ହୋଇଯା ।"

ରାଜା ମଧ୍ୟ ରାଗିଯାଇ କହିଲେ—"ମହାଶୟ ! ଆପଣ ତ ମୋତେ ଆଦେଶ ଦେଇଥିଲେ ।"

ମୁନି କହିଲେ—"ଏହା ମିଛକଥା । ମୁଁ ତୁମକୁ ନରମାଂସ ଖାଇବା ପାଇଁ କେବେହେଲେ ଆଦେଶ ଦେଇ ନାହିଁ ।"

ରାଜା କହିଲେ—"ଆପଣ ଆଜି ସକାଳେ ଆସି ମୋତେ କହିଲେ ଯେ ନରମାଂସ ଖାଇବା ପାଇଁ ମୋର ଇଚ୍ଛା ହେଉଛି ।"

ମୁନି କହିଲେ—"ମୁଁ ତ ସକାଳେ ତୁମ ପାଖକୁ ଆସି ନାହିଁ ।"

ରାଜା ଦୃଢ଼ତାର ସହ କହିଲେ—"ହଁ, ଆପଣ ଆସିଥିଲେ ଆଉ ନିଜେ ମୋତେ ଆଦେଶ ଦେଇଥିଲେ ।"

ରାଜାଙ୍କର ଦୃଢ଼ତା ଓ ନିର୍ଭୀକତାରେ ପ୍ରଭାବିତ ହୋଇ ବଶିଷ୍ଠ ମୁନି ଧ୍ୟାନରେ ବସିଲେ । ଧ୍ୟାନରେ ସବୁକଥା ଜାଣିପାରି ମୁନି ନମ୍ରତାର ସହିତ କହିଲେ—"ରାଜନ୍ ! ଭୁଲ୍ ହୋଇଗଲା । ଏସବୁ ରାକ୍ଷସର କାମ । ଯେଉଁ ରାକ୍ଷସର ଭାଇକୁ ଆପଣ ମାରିଥିଲେ ସେ ମୋର ରୂପ ଧରି ଆସିଥିଲା । ସେ ପୁଣି ରୋଷେଇଆ ରୂପଧରି ଏହି ଅଭକ୍ଷ୍ୟ ପଦାର୍ଥ ରାନ୍ଧିଥିଲା । କିନ୍ତୁ ମୋର କଥା ତ ଅନ୍ୟଥା ହେବ ନାହିଁ । ତେଣୁ ଆପଣଙ୍କୁ ନରଭକ୍ଷୀ ରାକ୍ଷସ ହେବାକୁ ପଡ଼ିବ, କିନ୍ତୁ ସାରାଜୀବନ ଏହା ଭୋଗ କରିବାକୁ ପଡ଼ିବ ନାହିଁ । ବାରବର୍ଷ ପରେ ଆପଣ ଅଭିଶାପ ମୁକ୍ତ ହେବେ ଓ ପୁଣି ରାଜତ୍ୱ କରିବେ ।"

ଏହା ଶୁଣି ରାଜାଙ୍କ ମନରେ ଭୀଷଣ କ୍ରୋଧ ଜାତ ହେଲା । ଗୁରୁ ଅକାରଣ କୌଣସି କଥା ନ ବୁଝି ମୋତେ ଅଭିଶାପ ଦେଲେ । ଏହା ତାଙ୍କର ଉଚିତ କାର୍ଯ୍ୟ

ହେଲା ନାହିଁ । ରାଜା ଥିଲେ ସତ୍ୟବାଦୀ ଓ ଧାର୍ମିକ ପୁରୁଷ । ତେଣୁ ସେ ବି ହାତରେ ଜଳଧରି ଗୁରୁ ବଶିଷ୍ଠଙ୍କୁ ଅଭିଶାପ ଦେବା ପାଇଁ ଉଦ୍ୟତ ହେଲେ ।

ରାଜା ଗୁରୁଙ୍କୁ ଅଭିଶାପ ଦେବା ପାଇଁ ଉଦ୍ୟତ ଥିବାର ଦେଖି ମହାରାଣୀ ଦେବୀ ମଦୟନ୍ତୀ ସ୍ୱାମୀଙ୍କୁ ଆକଟ କରି କହିଲେ—"ପ୍ରାଣନାଥ ! ଆପଣ ଏ କଣ କରୁଛନ୍ତି । ଏ କାର୍ଯ୍ୟ ଆପଣଙ୍କ ଅନୁରୂପ ହେଉ ନାହିଁ । ଗୁରୁଙ୍କୁ କେବେ ଅଭିଶାପ ଦେବା ଉଚିତ ନୁହେଁ ।

କ୍ରୋଧାନ୍ୱିତ ହୋଇ ରାଜା କହିଲେ—"ପ୍ରିୟେ ! ତୁମେ କିଛି ଜାଣିପାରୁ ନାହଁ । ମୋର ଅପରାଧ ଥିଲେ ଶାପ ଦେବ ଉଚିତ ହୋଇଥାନ୍ତା । ବିନା ଅପରାଧରେ ଯେ ମୋତେ ରାକ୍ଷସ କରି ଦେଉଛି ତାଙ୍କୁ ଶାପ ଦେବା କଣ ଉଚିତ ନୁହେଁ ?"

ମଦୟନ୍ତୀ ଧୈର୍ଯ୍ୟର ସହିତ ମଧୁର ସ୍ୱରରେ କହିଲେ—"ପ୍ରାଣନାଥ ! ମୁଁ ସବୁକଥା ଜାଣିଛି । ଗୁରୁ ମାଡ଼ ଦିଅନ୍ତୁ ବା ତାଡ଼ନା ଦିଅନ୍ତୁ, ଅଭିଶାପ ଦିଅନ୍ତୁ ବା ଅନୁଗ୍ରହ କରନ୍ତୁ ସେ ସର୍ବଦା ସର୍ବଥା ପୂଜନୀୟ । ଆପଣ କୌଣସି ଅବସ୍ଥାରେ ବି ଗୁରୁଙ୍କୁ ଅଭିଶାପ ଦେଇ ନିଜର ବଂଶ ଧ୍ୱଂସ କରିବା ଉଚିତ ନୁହେଁ ।"

ମହାରାଣୀ ମଦୟନ୍ତୀଙ୍କ କଥା ଶୁଣି ମହାରାଜ ଶାନ୍ତ ହୋଇଗଲେ । ସେ କହିଲେ—"ପ୍ରିୟେ ! ମୁଁ କ୍ରୋଧାନ୍ୱିତ ହୋଇ ଯେଉଁ ଜଳ ହାତରେ ଧରିଥିଲି ତାହା ଅମୋଘ ଜଳ । ସେହି ଜଳକୁ କେଉଁଠି ପକାଇବି ?"

ରାଣୀ କହିଲେ—"ଯେ କୌଣସି ଦିଗକୁ ତାହା ଫିଙ୍ଗି ଦିଅ ।"

ରାଜା କହିଲେ—"କେଉଁଠି ପକାଇବି । ଅସଂଖ୍ୟ ଜୀବ ସୃଷ୍ଟିରେ ପରିପୂର୍ଣ୍ଣ । ଜୀବଶୂନ୍ୟ ଏପରି କୌଣସି ସ୍ଥାନ ଦେଖୁ ନାହିଁ ଯେଉଁଠି ଏ ଜଳକୁ ପକାଇ ଦେବି । ଯେଉଁଠି ଏ ଜଳ ପଡ଼ିବ ସେଠାରେ ଯେ ଥିବ ସେ ମରିଯିବ । ତେଣୁ ଏହାକୁ ମୋ' ପାଦ ଉପରେ ପକାଇ ଦେଉଛି । ଏହାକହି ରାଜା ସେହି ଶାପ ଜଳକୁ ନିଜ ପାଦ ଉପରେ ପକାଇ ଦେଲେ । ସେହି ଜଳ ପଡ଼ିବା ମାତ୍ରେ ରାଜାଙ୍କ ପାଦ କଳା ପଡିଗଲା । ସେହି ଦିନଠାରୁ ରାଜା କଲ୍ମାଷ ପାଦ ନାମରେ ଅଭିହିତ ହେଲେ ।

ମହାରାଜ ପରୀକ୍ଷିତ ପଚାରିଲେ—"ଭଗବନ୍ ! ମହାରାଜ ସୁଦାସଙ୍କ କଲ୍ମାଷପାଦ ନାମ ଧାରଣ କରିବାର କାରଣ ଆପଣ କହିଲେ । କିନ୍ତୁ ତାଙ୍କ ନାମ ମିତ୍ରସହ କାହିଁକି ହେଲା । ସେ ବିଷୟରେ ଯଦି କିଛି ଇତିହାସ ଅଛି ଆଉ ତାହା ଯଦି ଗୋପନୀୟ ନୁହେଁ ତେବେ କହନ୍ତୁ ।"

ଏହା ଶୁଣି ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ନିଜର ପ୍ରିୟତମା ପତ୍ନୀ ମଦୟନ୍ତୀଙ୍କ କଥା ମାନିବାରୁ ରାଜା ମହା ବିପଦରୁ ରକ୍ଷା ପାଇଲେ । ପତ୍ନୀ ହେଉଛନ୍ତି ପ୍ରକୃତ ମିତ୍ର । ତେଣୁ ତାଙ୍କର ନାମ ହେଲା ମିତ୍ରସହ । ସ୍ତ୍ରୀଙ୍କ ପରାମର୍ଶ ପାଇ ରାଜା ଗୁରୁଙ୍କୁ ଅଭିଶାପ ଦେଲେ ନାହିଁ । ଏହାପରେ ରାଜା ରାକ୍ଷସ ପାଲଟିଗଲେ । ତାଙ୍କ ଆକୃତିରେ କିଛି ପରିବର୍ତ୍ତନ ହେଲା ନାହିଁ ସତ, କିନ୍ତୁ ସେ ବଣରେ ବୁଲି ବୁଲି ମଣିଷଙ୍କୁ ମାରି ଖାଇବାକୁ ଲାଗିଲେ ଏବଂ ରାକ୍ଷସ ପରି ରହିଲେ । ଶୁଣାଯାଏ ଭଗବାନ୍ ବଶିଷ୍ଠଙ୍କ ପୁତ୍ର ଶକ୍ତିଙ୍କୁ ରାକ୍ଷସରୂପୀ ସୁଦାସ ବିଶ୍ୱାମିତ୍ରଙ୍କ ପରାମର୍ଶ ଅନୁସାରେ ଖାଇଯାଇଥିଲେ । ବଶିଷ୍ଠଙ୍କ ସହିତ ବିଶ୍ୱାମିତ୍ରଙ୍କର ଶତ୍ରୁତା ଥିଲା । ବଶିଷ୍ଠଙ୍କ ଅଭିଶାପରେ ଯେତେବେଳେ ରାଜା ରାକ୍ଷସ ହୋଇଗଲେ ସେତେବେଳେ ସେ ରାଜାଙ୍କୁ ପ୍ରେରଣା ଦେଇ ତାଙ୍କୁ ଶକ୍ତିଙ୍କ ପାଖକୁ ପଠାଇଲେ । ରାଜା ଶକ୍ତିଙ୍କୁ ଖାଇଦେଲେ । ସେତେବେଳେ ଶକ୍ତିଙ୍କ ପତ୍ନୀ ଗର୍ଭବତୀ ଥିଲେ । ସେହି ଗର୍ଭରୁ ମହର୍ଷି ପରାଶର ଜନ୍ମଗ୍ରହଣ କରିଥିଲେ । ପିତାଙ୍କ ହତ୍ୟାର ପ୍ରତିଶୋଧ ନେବା ପାଇଁ ସେହି ପରାଶର ଏକ ରାକ୍ଷସ ଯଜ୍ଞ ଆରମ୍ଭ କରିଥିଲେ । ସେହି ଯଜ୍ଞରେ ବହୁ ରାକ୍ଷସ ମୃତ୍ୟୁବରଣ କରିଥିଲେ । ଏହା ଦେଖି ରାକ୍ଷସମାନଙ୍କର ଜନକ ଭଗବାନ୍ ପୁଲସ୍ତ୍ୟ ଆସି ବଶିଷ୍ଠଙ୍କୁ ସାଙ୍ଗରେ ନେଇ ତାଙ୍କୁ ଅନେକ ପ୍ରକାରେ ବୁଝାଇବା ପରେ ପରାଶର ଶାନ୍ତ ହେଲେ ଓ ଅଭିଚାର ଯଜ୍ଞ ବନ୍ଦ କଲେ । ରାଜା ରାକ୍ଷସ ଭାବାପନ୍ନ ହୋଇ ବହୁ ପାପକାର୍ଯ୍ୟ କଲେ । ବ୍ରହ୍ମହତ୍ୟାଦି ନାନା ପାତକରେ ଲିପ୍ତହେଲେ । ସେହି ସମୟରେ ତାଙ୍କୁ ଅନପତ୍ୟ ହେବାର ଅଭିଶାପ ମିଳିଲା । ଫଳରେ ସେ ସନ୍ତାନସନ୍ତତି ଉତ୍ପନ୍ନ କରିବା ପାଇଁ ଅସମର୍ଥ ହୋଇ ପଡ଼ିଲେ ।"

ଏହା ଶୁଣି ମହାରାଜ ପରୀକ୍ଷିତ ପଚାରିଲେ—"ଭଗବନ୍ ! ମହାରାଜ କଲ୍ମାଷପାଦଙ୍କୁ ନିଃସନ୍ତାନ ହେବା ପାଇଁ କିଏ ଅଭିଶାପ ଦେଲା ? ମହାରାଜ ସୁଦାସ ଏପରି କି ଜଘନ୍ୟ ଅପରାଧ କଲେ ଯେ ତାଙ୍କୁ ଏପରି କଠୋର ଦଣ୍ଡ ଭୋଗ କରିବାକୁ ପଡ଼ିଲା ? ସେସବୁ ଶୁଣିବା ପାଇଁ ମୋର ଉତ୍କଟ ଅଭିଳାଷ ଜାତ ହେଉଛି । ସେହି କଥା ଶୁଣିବା ପାଇଁ ଯଦି ମୁଁ ଯୋଗ୍ୟ ଓ ଯଦି ତାହା କହିବା ଉପଯୋଗୀ କଥା ହୋଇଥିବ ତେବେ ଦୟାକରି କହନ୍ତୁ ।"

ରାଜାଙ୍କ ମୁହଁରୁ ଏହି କଥା ଶୁଣି ଶ୍ରୀ ଶୁକଦେବ କହିବାକୁ ଆରମ୍ଭ କଲେ —"ରାଜନ୍ ! ଆପଣଙ୍କୁ ମହାରାଜ କଲ୍ମାଷପାଦଙ୍କ ରାକ୍ଷସଭାବ କଥା କହୁଛି । ଏବେ

ସେ କପରି ଅନପତ୍ୟ ହେବା ନିମିତ୍ତ ଅଭିଶାପ ପାଇଲେ ସେଇକଥା କହୁଛି ଶୁଣନ୍ତୁ ।”

## ଛପ୍ପୟ

ରଚ୍ୟୌ ନରକୋ ମାଂସ ପରୋସ୍ୟୌ ନୃପତି ପୁରୋହିତ ।
ଦେଖି ଅମେଧ୍ୟ ପଦାର୍ଥ ଭୟୌ ଗୁରୁବର ଅତି କୋପିତ ।।
ଦୟୌ ଶାପ ପୁରୁଷାଦ ବନେ ଭୂପତି ଅତି କୋପ୍ୟୌ ।
ଦୈବେ ଗୁରୁକୁଁ ଶାପ ଚଲ୍ୟୌ ମଦୟନ୍ତୀ ରୋକ୍ୟୌ ।
ଶାପ ନୀର ପୈରନ ଧର୍‌ୟୌ, ଭୟୌ ଭୂପ କଲ୍ମାଷ ପଗ ।
ନରଭକ୍ଷୀ ନୃପ ମିତ୍ର ସହ, ଭୟୌ ଖ୍ୟାତ ସୌଦାସ ଜଗ ।।



## ସୌଦାସ ସୁତ ଅଶ୍ମକ

ତତ ଉର୍ଦ୍ଧ୍ୱଂ ସ ତତ୍ୟାଜ ସ୍ତ୍ରୀ ସୁଖଂ କର୍ମଣାପ୍ରଜା ।
ବସିଷ୍ଠସ୍ତଦନୁଜ୍ଞାତୋ ମଦୟନ୍ତ୍ୟାଂ ପ୍ରଜାମଧାତ୍ ॥
ସା ବୈ ସପ୍ତସମା ଗର୍ଭମବିଭ୍ରନ୍ନ ବ୍ୟଜାୟତ ।
ଜଘ୍ନେଽଶ୍ମନୋଦରଂ ତସ୍ୟାଃ ସୋଽଶ୍ମକସ୍ତେନ କଥ୍ୟତେ ॥

(ଶ୍ରୀଭାଗ—୯-୯୩୮-୩୯)

### ଛପ୍ପୟ

ବୋଲେ ନୃପ ସୌଦାସ ପ୍ରଭୋ ! ଅବ ରକ୍ଷା କୀଜୈ ।
ଚଲେ ଜାସୁ ମନୁ ବଂଶ ପୁତ୍ର ଇକ ଗୁରୁବର ଦୀଜୈ ॥
କୀୟୋ ଗର୍ଭାଧାନ ଭଇ ଅତି ହର୍ଷିତ ରାନୀ ।
ନଷ୍ଟ ବଂଶ ନହିଁ ହୋୟ ବାତ ଜିହି ସବନେ ଜାନୀ ॥
ସାତ ବରଷ ତକ ଉଦରତେଁ, ନହୀଁ ପୁତ୍ର ପୈଦା ଭୟୋ ।
ମଦୟନ୍ତୀ ଅତି ଦୁଃଖିତ ହ୍ୱୈ ବଚନ ପୁରୋହିତ ତେଁ କହ୍ୟୋ ॥

ଦୋଷ ଭାବନାରୁ ଜାତହୁଏ । ଭାବ ଶୁଦ୍ଧହେଲେ, ଶୁଦ୍ଧ ଭାବନାରେ କାର୍ଯ୍ୟ କଲେ ତାହା ଶୁଦ୍ଧହୁଏ । ପୁରାଣରେ ଅନେକ ପ୍ରକାର କଥା ଅଛି । ଜଣେ ଶୁଦ୍ଧହୃଦୟ କାମଜିତ୍ ବ୍ରାହ୍ମଣ ଥିଲେ । ଥରେ ଜଣେ ଧାର୍ମିକ ପୁରୁଷ ତାଙ୍କୁ ବିଶ୍ୱାସ କରି ନିଜର ପତିବ୍ରତା ପତ୍ନୀକୁ ତାଙ୍କ ଘରେ ଛାଡ଼ିଦେଇ ଗଲେ । ସେହି ସ୍ତ୍ରୀ ବ୍ରାହ୍ମଣଙ୍କ ପାଖରେ ଏକ ଶଯ୍ୟାରେ ଶୟନ କରୁଥିଲେ । ବେଳେବେଳେ ବ୍ରାହ୍ମଣ ସହିତ ନାରୀର ଅଙ୍ଗସ୍ପର୍ଶ ଘଟୁଥିଲା । କିନ୍ତୁ ବ୍ରାହ୍ମଣ ଏହାକୁ ଏକ ଅବୋଧ କନ୍ୟାର ସ୍ପର୍ଶବୋଲି ଭାବୁଥିଲେ । ପ୍ରାଚୀନ କାଳରେ ଅଶ୍ୱମେଧ ପ୍ରଭୃତି ଯଜ୍ଞରେ ପଶୁବଳି ଦିଆଯାଉଥିଲା ।

ପତି ଅଯୋଗ୍ୟ ହେଲେ ଦେବରଦ୍ୱାରା ଆପାତ୍କାଳରେ ସନ୍ତାନ ଉତ୍ପାଦନ କରାଯାଉଥିଲା । କ୍ଷତ୍ରିୟମାନଙ୍କର ବିନାଶ ପରେ କୁଳରକ୍ଷା ପାଇଁ ବେଦଜ୍ଞ ବ୍ରାହ୍ମଣମାନଙ୍କଦ୍ୱାରା ଗର୍ଭାଧାନ ଅନୁଷ୍ଠିତ ହେଉଥିଲା । କିନ୍ତୁ ସେ ସମୟରେ ବ୍ରାହ୍ମଣମାନଙ୍କ ହୃଦୟରେ କାମବାସନା ନ ଥିଲା । କେବଳ ସନ୍ତାନୋତ୍ପତ୍ତି ନିମିତ୍ତ ସେମାନେ ନିଜର ଅମୋଘ ବୀର୍ଯ୍ୟ ସ୍ଥାପନ କରୁଥିଲେ । ଏହାପରେ ସେ ସ୍ତ୍ରୀ ସହିତ ତାଙ୍କର କୌଣସି ସମ୍ପର୍କ ରହୁ ନଥିଲା । ମୁନିମାନେ ଭାବିଲେ କଳିଯୁଗରେ ଲୋକେ ଏହି ବ୍ୟବସ୍ଥାର ଦୁରୁପଯୋଗ କରିବେ । କାମାସକ୍ତ ହୋଇ ଏହାକୁ ଧାର୍ମିକ ବ୍ୟବସ୍ଥା ବୋଲି କହିବେ । ସେଥିପାଇଁ କଳିଯୁଗରେ ଅଶ୍ୱମେଧ, ଗୋମେଧ, ବଳି ଦିଆଯାଉଥିବା ଯଜ୍ଞ, ସନ୍ନ୍ୟାସ, ଦେବରଠାରୁ ସନ୍ତାନୋତ୍ପତ୍ତି, ନିଯୋଗ ବ୍ୟବସ୍ଥାକୁ ବର୍ଜିତ କରାଗଲା । କିନ୍ତୁ ପ୍ରାଚୀନକାଳରେ ଏପରି ପ୍ରଥା ଥିଲା ଯେ ବଂଶଲୋପ ହେବାର ସମୟ ଆସିଲେ ସ୍ୱାମୀ ନିଜେ ବିଶୁଦ୍ଧ ବ୍ରାହ୍ମଣଙ୍କଦ୍ୱାରା ପତ୍ନୀଠାରୁ ସନ୍ତାନୋତ୍ପାଦନ କରୁଥିଲେ ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ମହାରାଜ ସୌଦାସ ବାରବର୍ଷ ପର୍ଯ୍ୟନ୍ତ ରାକ୍ଷସ ଭାବରେ ରହିଲେ । ଅଭିଶାପକାଳ ଶେଷହେବା ପରେ ବ୍ରାହ୍ମଣମାନେ ସଂସ୍କାର କରାଇ ପୁଣି ତାଙ୍କୁ ରାଜଗାଦିରେ ବସାଇଲେ । ସେ ପର୍ଯ୍ୟନ୍ତ ତାଙ୍କ ପତ୍ନୀ ମଦୟନ୍ତୀ ମନ୍ତ୍ରୀମାନଙ୍କ ସାହାଯ୍ୟରେ ରାଜ୍ୟ ପରିଚାଳନା କରୁଥିଲେ । ପତି ଆସି ପୁଣି ରାଜ୍ୟଭାର ଗ୍ରହଣ କରିବାରେ ସେ ପରମ ଆନନ୍ଦ ଲାଭ କଲେ । ରାଣୀ ଋତୁସ୍ନାନ କରିବା ପରେ ବୈଦିକ ରୀତିରେ ମହାରାଜ ଗର୍ଭାଧାନ କରିବାକୁ ଯେତେବେଳେ ଇଚ୍ଛା କଲେ ସେତେବେଳେ ପତିବ୍ରତା ମଦୟନ୍ତୀ ସସ୍ନେହରେ କହିଲେ—"ପ୍ରାଣନାଥ ! ଆପଣଙ୍କର ମନେ ନ ଥିବ, ଆପଣ ଯେତେବେଳେ ରାକ୍ଷସଭାବାପନ୍ନ ଥିଲେ ସେତେବେଳେ ଗର୍ଭାଧାନ କରିବାକୁ ଇଚ୍ଛା କରୁଥିବା ଏକ ବ୍ରାହ୍ମଣୀର ପତିକୁ ଆପଣ ଖାଇଯାଇ ଥିଲେ । ବ୍ରାହ୍ମଣୀ ରାଗିଯାଇ ଅଭିଶାପ ଦେଇଥିଲା—"ତୁମେ ଯେବେ ଗର୍ଭାଧାନ ସଂସ୍କାର କରିବାକୁ ଉଦ୍ୟତ ହେବ ସେତେବେଳେ ତୁମର ମୃତ୍ୟୁ ହେବ ।" ତେଣୁ ସେହି ପତିବ୍ରତା ରମଣୀର ଶାପକୁ ଆପଣ ସ୍ମରଣ କରନ୍ତୁ । ଆପଣ ଏବେ ଗର୍ଭାଧାନ କଲେ ବି ମୋର ମନୋରଥ ପୂର୍ଣ୍ଣହେବ ନାହିଁ । ଆପଣ ଗର୍ଭାଧାନ କରାଇବାର ଶକ୍ତି ମଧ୍ୟ ହରାଇଛନ୍ତି । ଆପଣଙ୍କର ଯଦି କିଛି ଦୁର୍ଘଟଣା ଘଟିବ ତେବେ ଆପଣଙ୍କ ବିନା ମୁଁ କ୍ଷଣେମାତ୍ର ଜୀବିତ ରହିପାରିବି ନାହିଁ । ତେଣୁ ଆପଣ ଗର୍ଭାଧାନ କରିବାର ଅଭିଳାଷ ପରିତ୍ୟାଗ କରନ୍ତୁ ।"

ରାଜା କହିଲେ—"ପ୍ରିୟେ ! ତୁମେ ସତ କହିଛ । ମୁଁ ଯଦି ମରିଯିବି ତେବେ ଇକ୍ଷ୍ୱାକୁ ବଂଶ ମୋହରିଠାରୁ ଲୋପ ପାଇଯିବ । ପତିବ୍ରତା ବ୍ରାହ୍ମଣୀର

ଅଭିଶାପ ଅନ୍ୟଥା ହେବ ନାହିଁ । ତେଣୁ ଆଜଠାରୁ ମୁଁ ପ୍ରତିଜ୍ଞା କରୁଛି ଯେ ସାରାଜୀବନ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରିବି । ସ୍ତ୍ରୀ ସୁଖଠାରୁ ସର୍ବଦା ଦୂରେଇ ରହିବି । କିନ୍ତୁ ମୋର କୁଳରକ୍ଷା କିପରି ହେବ ?"

ମହାରାଣୀ କହିଲେ—"ଆମର କୁଳ ପୁରୋହିତ ବଶିଷ୍ଠ ଅଛନ୍ତି । ଆପଣ ତାଙ୍କଠାରେ ଶରଣ ପଶନ୍ତୁ । ସେ ଯାହା କହିବେ ଓ କରିବେ ତାହା ନିଶ୍ଚୟ ଧର୍ମାନୁକୂଳ ହେବ ।"

ଏହା ଶୁଣି ରାଜା ମହର୍ଷି ବଶିଷ୍ଠଙ୍କ ପାଖକୁ ଗଲେ । ମହର୍ଷିଙ୍କୁ ପ୍ରଣାମ କରି ରାଜା ବିନୀତ ଭାବେ କହିଲେ—"ବ୍ରହ୍ମନ୍ ! ମୋର ବଂଶରକ୍ଷା କିପରି ହେବ ସେହି ଉପାୟ କହନ୍ତୁ । ଇକ୍ଷ୍ୱାକୁ କୁଳର ଆପଣ ହେଉଛନ୍ତି ରକ୍ଷକ ଓ ପାଳକ, ଆପଣ ଧର୍ମପୂର୍ବକ ମୋର ପତିବ୍ରତା ପତ୍ନୀଠାରେ ଗର୍ଭାଧାନ ସଂସ୍କାର କରନ୍ତୁ ।"

ରାଜାଙ୍କ ବିନୀତ ପ୍ରାର୍ଥନା ଶୁଣି ଓ କୁଳ ପରମ୍ପରାକୁ ଅକ୍ଷୁର୍ଣ୍ଣ ରଖିବା ନିମିତ୍ତ କୁଳପୁରୋହିତ ପ୍ରସ୍ତାବକୁ ଗ୍ରହଣ କଲେ । ସେ ରାଣୀଙ୍କଠାରେ ବିଧିବତ୍ ଗର୍ଭାଧାନ ସଂସ୍କାର କଲେ । ମହାରାଣୀ ଗର୍ଭବତୀ ହେଲେ । ଦିନକୁ ଦିନ ଗର୍ଭ ବୃଦ୍ଧିଲାଭ କଲା । ଦଶମାସ ପୂର୍ଣ୍ଣହେଲା । କିନ୍ତୁ ପ୍ରସବର କୌଣସି ଲକ୍ଷଣ ଦେଖାଗଲା ନାହିଁ । ଗୋଟିଏ ବର୍ଷ ଗଲା । ଦ୍ୱିତୀୟ ବର୍ଷ ବି ପୂର୍ଣ୍ଣହେଲା । ମହାରାଣୀ ବଡ଼ ଭୟଭ୍ରାନ୍ତ ହୋଇପଡ଼ିଲେ । ସେ ବଶିଷ୍ଠଙ୍କୁ ଡକାଇ ପଚାରିଲେ – "ଭଗବନ୍ ! ଗର୍ଭସ୍ଥ ବାଳକ ବାହାରକୁ ଆସୁ ନାହିଁ । ଏହାର କାରଣ କଣ ?"

ବଶିଷ୍ଠ କହିଲେ—"ଯଥା ସମୟରେ ସବୁ ହେବ । ତୁମେ ଚିନ୍ତା କରୁଛ କାହିଁକି ? କିଛି କଷ୍ଟ ହେଉ ନାହିଁତ ?"

ମଦୟନ୍ତୀ କହିଲେ—ବ୍ରହ୍ମନ୍ ! କଷ୍ଟ କିଛି ହେଉନି, କିନ୍ତୁ ପୁତ୍ର ମୁଖ ଦେଖାଯାଉ ନ ଥିବାରୁ ତାହା ସବୁଠାରୁ ବଳି ଦୁଃଖଦାୟକ ହେଉଛି ।"

ବଶିଷ୍ଠ କହିଲେ—"ତଥାପି ଆଉ କିଛିଦିନ ପ୍ରତୀକ୍ଷା କର ।"

ଏହାଶୁଣି ରାଣୀ ନୀରବ ହେଲେ । ବର୍ଷପରେ ବର୍ଷ କଟିବାକୁ ଲାଗିଲା । ଏହିପରି ସାତବର୍ଷ କଟିଗଲା । ତଥାପି ପ୍ରସବର କୌଣସି ଲକ୍ଷଣ ଦେଖାଗଲା ନାହିଁ । ପ୍ରଜନନ ବାୟୁ ସଞ୍ଚରିତ ହେଲାନାହିଁ କି ପ୍ରସବ ଯନ୍ତ୍ରଣା ହେଲାନାହିଁ । ମହାରାଣୀ ବିରକ୍ତ ହୋଇ ବଶିଷ୍ଠଙ୍କୁ କହିଲେ—"ବ୍ରହ୍ମନ୍ ! ଏ ପେଟରେ ଇଟା, ପଥର କଣ ରଖିଲେ ? ପିଲା ତ ଜନ୍ମ ହେଲାନାହିଁ । ସାରାଜୀବନ କଣ ପେଟରେ ସେ ଏହିପରି ରହିବ ?

ବଶିଷ୍ଠ ଆଉ କଣ ବା କହିବେ । ସେ ଏକ ଗୋଲ ଚିକ୍କଣ ପଥରକୁ ମନ୍ତ୍ରପୂତ କରି ତାହାକୁ ରାଣୀଙ୍କ ପେଟଉପରେ ଧୀରେ ଧୀରେ ଆଘାତ କଲେ । ସେହି

ପଥର ଲାଗିବାମାତ୍ରେ ମନ୍ତ୍ର ପ୍ରଭାବରେ ପିଲା ପ୍ରଜନନ ସ୍ଥାନକୁ ଆସିଲା ଓ ଜନ୍ମଗ୍ରହଣ କଲା । ରାଜା ଓ ରାଣୀ ଖୁବ୍ ଖୁସିହେଲେ । ରାଜ୍ୟରେ ସର୍ବତ୍ର ଆନନ୍ଦ ଉତ୍ସବ ପାଳନ କରାଗଲା । ଅଶ୍ମକ ବା ପଥରର ଆଘାତରେ ଜନ୍ମ ହୋଇଥିବାରୁ ମୁନି ସେହି ପିଲାର ନାମଦେଲେ ଅଶ୍ମକ ।

କୁମାର ନିଜ ପିତାଙ୍କ ପରି ସୁନ୍ଦର ଓ ଗୁଣବାନ ଥିଲେ । ଧୀରେ ଧୀରେ ସେ ବଡ଼ହେବାକୁ ଲାଗିଲେ । ଯୁବକ ହେବାପରେ ମହାରାଜ ସୌଦାସ ରାଜକୁମାରଙ୍କ ବିବାହ କରାଇଦେଲେ । ଶେଷରେ ତାହାଙ୍କ ଉପରେ ରାଜ୍ୟଭାର ସମର୍ପଣ କରି ରାଣୀ ମଦୟନ୍ତୀଙ୍କ ସାଙ୍ଗରେ ନେଇ ବଣକୁ ଚାଲିଗଲେ ଏବଂ ତପସ୍ୟା କରି ସ୍ୱର୍ଗଗାମୀ ହେଲେ ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ପିତା ବନଗମନ କରିବାପରେ ଅଶ୍ମକ ଧର୍ମପୂର୍ବକ ପ୍ରଜାପାଳନ କରିବାକୁ ଲାଗିଲେ । ତାଙ୍କର ଏକମାତ୍ର ପୁତ୍ର ଜନ୍ମହେଲା । ସେ କ୍ଷତ୍ରିୟ କୁଳର ମୂଳ ସନ୍ତାନ ହୋଇଥିବାରୁ ମୂଳକ ନାମରେ ପରିଚିତ ହେଲେ ।"

ମହାରାଜ ପରୀକ୍ଷିତ ପଚାରିଲେ—"ମହାଭାଗ ! କ୍ଷତ୍ରିୟ କୁଳର ମୂଳ ତ ହେଲେ ମନୁ । କିନ୍ତୁ ଅଶ୍ମକଙ୍କ ପୁତ୍ର ମୂଳକ କ୍ଷତ୍ରିୟ କୁଳର ମୂଳରୂପେ ଅଭିହିତ ହେଲେ କାହିଁକି ? ମୋର ଏହି ସନ୍ଦେହ ଦୂର କରନ୍ତୁ ।"

ଶ୍ରୀ ଶୁକଦେବ କହିଲେ—"ହଁ, ଆପଣ ଯାହା ପଚାରିଲେ ତାହା ଠିକ୍ । ମୁଁ ଏହାର କାରଣ କହୁଛି, ଆପଣ ମନଦେଇ ଶୁଣନ୍ତୁ ।"

## ଛପ୍ପୟ

ଭଗବନ୍ ! କା ଭରି ଦୟୋ ଉଦରମହଁ ଜୋ ନହିଁ ନିକସତ ।।
ଅଟକେଯା ଏକ ହୁ ପୌର ତନକ ତହଁ ତେ ନହିଁ ଖିସକତ ।।
ମୁନି ହଁସି ଲୟୋ ଅଶ୍ମ ମନ୍ତ୍ର ପଢ଼ି ଉଦର ଛୁବାୟୋ ।
ମଦୟନ୍ତୀ ନେ ତୁରତ ସୁଘର ସୁତ ଶ୍ୟାମ ବନୁ ଜାୟୋ ।।
ପ୍ରମୁଦିତ ସବହୀ ଜନ ଭୟେ, ରାଜା ରାନୀ ପୁଲକେହିତ ।
ତେଇ ଅଶ୍ମକ ନାମ ତେ, ଭୟେ ଭୂପ ଜଗ ମହଁ ବିଦିତ ।।



# ରାକ୍ଷସଭାବାପନ୍ନ କଲ୍ମାଷପାଦ

ଯସ୍ମାନ୍ମେ ଭକ୍ଷିତଃ ପାପକାମାର୍ତ୍ତାୟା ପତିସ୍ତ୍ୱୟା ।
ତବାପି ମୃତ୍ୟୁରାଧାନାଦକୃତପ୍ରଜ୍ଞ ଦର୍ଶିତଃ ॥
(ଶ୍ରୀଭାଗ— ୯ସ୍କ- ୯ଅ-୩୫ଶ୍ଳୋ)

## ଛପ୍ପୟ

ମୁନି ବଶିଷ୍ଠକୋ ଶାପ ନୃପତି ରାକ୍ଷସ ବନ ବିଚରେଁ ।
ଦ୍ୱିଜ ଦମ୍ପତି ବନ ମାହିଁ ସୁଧିର ସନ୍ତତି ହିତ ବିହରେଁ ॥
ଲଗୀ ବୁଭୁକ୍ଷା ଭୂପ ପକର ଦ୍ୱିଜ ଖାୟୋ ଜବହୀଁ ।
ଦ୍ୱିଜ ପତ୍ନୀ ଅକୃତାର୍ଥ ଶାପ ନୃପ ଦୀହ୍ନୋ ତବହୀଁ ॥
ଗର୍ଭାଧାନ କରୈ ଜବହିଁ, ତବହିଁ ହୋଇଗୀ ମୃତ୍ୟୁ ତବ ।
ବଂଶ ନାଶ କୋ ଶାପ ସୁନି, ଭୟେ ଦୁଃଖିତ ଅତି ସଚିବ ସବ ॥

ଭାବ ହେଉଛି ଭାବନାର କାରଣ । ମଣିଷ ଯେଉଁ ଭାବରେ ଭାବିତ ହୁଏ ସେହି ଭାବନା ଅନୁସାରେ କାମକରେ । ଭାବ ଶୁଦ୍ଧ ଥିଲେ କାର୍ଯ୍ୟ ଶୁଦ୍ଧହୁଏ ଏବଂ ଭାବ ଅଶୁଦ୍ଧ ଥିଲେ କାର୍ଯ୍ୟ ଅଶୁଦ୍ଧ ହୁଏ । ସାତ୍ତ୍ୱିକ ଭାବ ଅଧିକ ହେଲେ ଲୋକ ସାତ୍ତ୍ୱିକ କାର୍ଯ୍ୟକରେ, ତମୋଗୁଣର ଆଧିକ୍ୟ ହେଲେ ତାମସିକ କାର୍ଯ୍ୟ କରେ । ସେଥିପାଇଁ ମୁନିଋଷିମାନେ ଭାବଶୁଦ୍ଧି ବିଷୟରେ ସର୍ବାଧିକ ଗୁରୁତ୍ୱ ଦିଅନ୍ତି । ଯେକୌଣସି ଦେହଟିରେ ଯେ କୌଣସି ଜାତୀୟ ପ୍ରାଣୀର ଅଭିନିବେଶ ଘଟେ । ମଣିଷ ଶରୀରରେ ଭୂତ, ପ୍ରେତ, ପିଶାଚ, ବେତାଳ, ବ୍ରହ୍ମରାକ୍ଷସ ଆଦି ପ୍ରବେଶ କରିଥାନ୍ତି । ଯେଉଁ ପ୍ରାଣୀଦ୍ୱାରା ଶରୀର ଆବିଷ୍ଟ ହୁଏ ଲୋକ ସେହି ଭାବାପନ୍ନ ହୋଇଯାଏ । ସମସ୍ତ ଚେଷ୍ଟା ଆବିଷ୍ଟ ପ୍ରାଣୀମାନଙ୍କ ପରି ପ୍ରକାଶ ପାଏ । ଜୀବନରେ ଯେ ଥରେ ବି ମଦ୍ୟପାନ କରିନାହିଁ ତା' ଶରୀରରେ ଯଦି କୌଣସି ମଦ୍ୟପର ପ୍ରାଣ ପ୍ରବେଶ କରିବ, ସେ ଯଥେଷ୍ଟ ମଦ୍ୟ-

ପାନ କରିପାରିବ । ସେତେବେଳେ ସେ ଯାହା ଯାହା କରେ, ତାହା ନିଜେ କରେ ନାହିଁ, କାରଣ ତା'ର ଦେହରେ ପ୍ରବେଶ କରିଥିବା ପ୍ରାଣୀଦ୍ୱାରା ହିଁ ସେସବୁ କାର୍ଯ୍ୟ ଘଟିଥାଏ ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ବଶିଷ୍ଠଙ୍କଦ୍ୱାରା ଅଭିଶପ୍ତ ହେବାରୁ ସୌଦାସଙ୍କ ଶରୀରରେ ରାକ୍ଷସ ପ୍ରବେଶ କଲା । ଏହାପରେ ତାଙ୍କଠାରେ ରାକ୍ଷସସୁଲଭ ସମସ୍ତ ଚେଷ୍ଟା ପ୍ରକାଶ ପାଇଲା । ସେ ବଣ ଜଙ୍ଗଲରେ ବୁଲିବାକୁ ଲାଗିଲେ । ଯେଉଁଠି ଯେଉଁ ପୁରୁଷକୁ ଦେଖିଲେ ତାକୁ ସାଙ୍ଗେ ସାଙ୍ଗେ ଖାଇଗଲେ । ଦିନେ ସେ କ୍ଷୁଧାରେ ଆତୁର ହୋଇ ଏଣେ ତେଣେ ବୁଲୁଥିଲେ । ଅାହାର ଖୋଜିବାରେ ସାରାଦିନ ଯାଇ ରାତହେଲା । ହଠାତ୍ ସେ ଦେଖିଲେ ଜଣେ ଋଷି ନିଜ ପତ୍ନୀଙ୍କଠାରେ ଗର୍ଭାଧାନ ସଂସ୍କାର କରୁଛନ୍ତି । ସନ୍ତାନ ଅଭିଲାଷରେ ଦ୍ୱିଜପତ୍ନୀ ନିଜ ପତି ସହିତ ସହବାସ କରୁଛି । ଏହି ସମୟରେ ରାକ୍ଷସଭାବାପନ୍ନ ମହାରାଜ କଲ୍ମାଷପାଦଙ୍କୁ ଦେଖି ଦ୍ୱିଜ-ପତ୍ନୀ ଭୟଭୀତା ହୋଇପଡ଼ିଲେ । ରାଜା ପାଖକୁ ଯାଇ ବଳପୂର୍ବକ ଦ୍ୱିଜଙ୍କୁ ଟାଣି ଆଣିଲେ । ସେପର୍ଯ୍ୟନ୍ତ ଦ୍ୱିଜପତ୍ନୀଙ୍କ ମନୋରଥ ପୂର୍ଣ୍ଣ ହୋଇ ନ ଥିଲା । ରାଜା ପତିପତ୍ନୀଙ୍କୁ ପରସ୍ପରଠାରୁ ଜବରଦସ୍ତ ପୃଥକ୍ କରିଦେଲେ ଓ ଦ୍ୱିଜଙ୍କୁ ଧରିରଖି ଦ୍ୱିଜପତ୍ନୀଙ୍କୁ ଛାଡ଼ିଦେଲେ । ରାକ୍ଷସ ମାନେ ସହସା ସ୍ତ୍ରୀଲୋକମାନଙ୍କ ଉପରେ ଆକ୍ରମଣ କରନ୍ତି ନାହିଁ । ତାଙ୍କ ଦୃଷ୍ଟିରେ ସ୍ତ୍ରୀ ଅବଧ୍ୟା । କିନ୍ତୁ ଯାହାର ଅର୍ଦ୍ଧାଙ୍ଗ କାଟି ହୋଇଯିବ ସେ ଜୀବିତ ରହିବା ପାଇଁ ଚାହିଁଲେ ମଧ୍ୟ ସେ ଜୀବନର କି ମୂଲ୍ୟ ଅଛି ?"

ଦ୍ୱିଜପତ୍ନୀ ନମ୍ରତାର ସହିତ କହିଲେ—"ରାଜେନ୍ଦ୍ର ! ଆପଣ ଏପରି ଅନ୍ୟାୟ ଆଚରଣ କାହିଁକି କରୁଛନ୍ତି । ଏହା ଆପଣଙ୍କ ଚରିତ୍ର ଅନୁରୂପ କାର୍ଯ୍ୟ ନୁହେଁ । ହେ ପ୍ରଜାନାଥ ! ଆପଣ ରାକ୍ଷସ ନୁହଁନ୍ତି । ଆପଣ ମନୁବଂଶରେ ଜନ୍ମ ଗ୍ରହଣ କରିଛନ୍ତି । ଆପଣ ଇକ୍ଷ୍ୱାକୁ ବଂଶଭୂଷଣ । ରାଜନ୍ ! ମୁଁ ସନ୍ତାନ କାମନାରେ ପତିଙ୍କ ସହିତ ସହବାସ କରୁଥିଲି । ମୋର ଅଭିଳାଷ ପୂର୍ଣ୍ଣ ହୋଇ ନାହିଁ । ଆପଣ ଏପରି ଅଧର୍ମ କାର୍ଯ୍ୟ କରନ୍ତୁ ନାହିଁ ।"

ରାଜା କହିଲେ—"ଆଗେ ପେଟ, ପରେ ଧର୍ମ । ପେଟ ପୂରି ଥିଲେ ଧର୍ମ ଆସିବ । କ୍ଷୁଧାର୍ତ୍ତ ଲୋକ ଧର୍ମକର୍ମ ସବୁ ଭୁଲିଯାଏ ।"

ଦ୍ୱିଜପତ୍ନୀ କହିଲେ—"ମହାରାଜ ! ଏହା ତ ରାକ୍ଷସ ସୁଲଭ ବିଚାର । ଧର୍ମାତ୍ମା ପୁରୁଷ ପ୍ରାଣପଣେ ଧର୍ମରକ୍ଷା କରନ୍ତି । ମହାରାଜ ! ନରହତ୍ୟା ସବୁଠାରୁ ବଡ଼ ପାପ । ମାନବ ଶରୀର ବାରମ୍ବାର ମିଳେନାହିଁ । ଜୀବନଦାନ ପାଇଁ, ବଞ୍ଚାଇବା ପାଇଁ ଯେ ଅସମର୍ଥ ସେ ଅନ୍ୟର ଜୀବନ ନାଶ କରିବ କିପରି ? ତେଣୁ ଯାହାର ଜୀବନ

ଦେବାର ସାମର୍ଥ୍ୟ ନାହିଁ ତାର ଅନ୍ୟକୁ ମାରିଦେବାର ଅଧିକାର ନାହିଁ । ପୁଣି ଦେବଙ୍କ ବ୍ରାହ୍ମଣ ହତ୍ୟା ମହାପାପ । ଆପଣ ରାଜା । ଅଗ୍ନି ଯେପରି ଜଳର ଜନକ ବ୍ରାହ୍ମଣ ସେହିପରି କ୍ଷତ୍ରିୟର ଜନକ । ସତ୍ପୁତ୍ର କଣ ନିଜ ପିତାକୁ କେବେ ହତ୍ୟା କରିପାରିବ ?"

ଦ୍ୱିଜପତ୍ନୀ ପୁଣି କହିବାକୁ ଲାଗିଲେ । ନରହତ୍ୟା କାର୍ଯ୍ୟ ରାକ୍ଷସର ଧର୍ମ ହୋଇପାରେ, କିନ୍ତୁ ମହାରାଜ ! ଆପଣ ତ ରାକ୍ଷସ ନୁହନ୍ତି । ଆପଣ ମହାରାଜ ସର୍ବକାମଙ୍କ ପୁତ୍ର ଓ ମହାରାଣୀ ମଦୟନ୍ତୀଙ୍କ ପତି । ଆପଣ ଅଯୋଧ୍ୟାର ସ୍ୱାମୀ ପୁଣ୍ୟଶ୍ଳୋକ ରାଜା ସୌଦାସ । ଆପଣ କେବେହେଲେ ଏପରି କ୍ରୂର କାମ କରିବା ଉଚିତ ନୁହେଁ । ସାଧୁସମାଜରେ ଆପଣଙ୍କର ସମ୍ମାନ ଅଛି । ଆପଣ ଦୀନଦରିଦ୍ରଙ୍କ ପ୍ରତି ସର୍ବଦା ଦୟାଶୀଳ । ଗୋରୁ ଓ ବ୍ରାହ୍ମଣମାନଙ୍କର ଆପଣ ଜଣେ ଶ୍ରେଷ୍ଠ ଭକ୍ତ । ଏ ମୋର ସ୍ୱାମୀ ଜଣେ ଧର୍ମଜ୍ଞ ଶ୍ରୋତ୍ରିୟ ବ୍ରାହ୍ମଣ । ଆପଣ ତାଙ୍କୁ ଖାଇବାକୁ ଚାହୁଁଛନ୍ତି କାହିଁକି ? ଯଦି ଆପଣ ମୋର ପତିଙ୍କୁ ଖାଇବାପାଇଁ ସ୍ଥିର କରିଛନ୍ତି ତେବେ ପ୍ରଥମେ ମୋତେ ଖାଆନ୍ତୁ । ତାଙ୍କ ବିନା ମୁଁ ମୁହୂର୍ତ୍ତେ ବି ବଞ୍ଚିପାରିବି ନାହିଁ ।"

ଶ୍ରୀଶୁକଦେବ କହିଲେ—"ରାଜନ୍ ! ବ୍ରାହ୍ମଣ ପତ୍ନୀ ଏହିପରି ରାଜାଙ୍କୁ ନାନା ଉପାୟରେ ବୁଝାଇବାକୁ ଚେଷ୍ଟା କରୁଥାଏ ଓ କାନ୍ଦୁଥାଏ । କିନ୍ତୁ ମହାରାଜ ସୌଦାସ ତ ଶାପବିମୋହିତ ହୋଇପଡ଼ିଥିଲେ । ତେଣୁ ଦ୍ୱିଜପତ୍ନୀର ପଦେ ହେଲେ କଥା ତାଙ୍କ କାନକୁ ଗଲନାହିଁ । ସେ ସେଇଠି ବ୍ରାହ୍ମଣୀ ଆଗରେ ତା'ର ସ୍ୱାମୀକୁ ଖାଇଗଲେ । ନିଜ ଆଖି ଆଗରେ ଏପରି ବର୍ବର କାର୍ଯ୍ୟ ଦେଖି ଦ୍ୱିଜପତ୍ନୀ ଅତ୍ୟନ୍ତ ଦୁଃଖିତା ହେଲେ । କ୍ରୋଧରେ ଅସ୍ଥିର ହୋଇ ସେ ରାଜାଙ୍କୁ ଅଭିଶାପ ଦେବାକୁ ଯାଇ କହିଲେ—"ରେ ପାପୀ, କ୍ରୂର ! ମୋ'ପରି ଅବଳା ପ୍ରତି ତୋର ତିଳେ ହେଲେ ଦୟା ଆସିଲା ନାହିଁ । ସନ୍ତାନ ଅଭିଳାଷିଣୀ ମୋ'ଠାରୁ ପତିଙ୍କୁ ତୁ ବଳପୂର୍ବକ ପୃଥକ କରିଦେଲୁ । ମୋର ଅଭିଳାଷ ପୂର୍ଣ୍ଣ ହେବାକୁ ଦେଲୁ ନାହିଁ । ଏଣୁ ମୁଁ ତୋତେ ଅଭିଶାପ ଦେଉଛି—ତୁ ଯେତେବେଳେ ସ୍ତ୍ରୀ ସହିତ ସହବାସ କରିବୁ ସେତେବେଳେ ତୋର ଏହିପରି ମୃତ୍ୟୁ ଘଟିବ । ତୁ କେବେହେଲେ ସନ୍ତାନ ଉତ୍ପାଦନ କରିପାରିବୁ ନାହିଁ ।"

ମହାରାଜ ଅଭିଶପ୍ତ ହୋଇଥିବାରୁ ବ୍ରାହ୍ମଣୀ ଶାପପ୍ରତି ଆଦୌ ଧ୍ୟାନ ଦେଲେ ନାହିଁ । ସେ ବ୍ରାହ୍ମଣକୁ ଖାଇସାରି ଚାଲିଗଲେ । ସେହି ପତିବ୍ରତା ଦ୍ୱିଜପତ୍ନୀ ବ୍ରାହ୍ମଣର ଅସ୍ଥିଗୁଡ଼ିକୁ ନେଇ ଏକ ଚିତା ପ୍ରସ୍ତୁତ କଲେ ଓ ସେହି ଚିତାଗ୍ନିରେ ଆତ୍ମବିସର୍ଜନ କଲେ । ସେ ପରଲୋକରେ ପହଞ୍ଚି ନିଜ ପତିଙ୍କ ସହିତ ମିଳିତ ହେଲେ । ଏହିପରି

ମହାରାଜ ସୌଦାସ ଅର୍ଣପର୍ଣ୍ୟ ହେବା ପାଇଁ ଦ୍ୱିଜପତ୍ନୀଙ୍କଠାରୁ ଅଭିଶାପ ପାଇଥିଲେ ।

ଏହି କାହାଣୀ ଶୁଣି ମହର୍ଷି ଶୌନକ ପଚାରିଲେ—"ମହାତ୍ମନ୍ ! ରାଜା ସୌଦାସ କଣ ଯେଉଁ ବ୍ରାହ୍ମଣଙ୍କୁ ପାଇଲେ ତାଙ୍କୁ ଖାଇଗଲେ ? ତେବେ ସେ ନିଜର ରାଣୀ, ପରିଜନ ଓ ପୁରବାସୀଙ୍କ ଗହଣରେ ରହୁଥିଲେ କିପରି ?"

ମହର୍ଷି ସୂତ କହିଲେ—"ନାଁ ମହାଭାଗ ! ଦିନର ଷଷ୍ଠ ଭାଗ କାଳରେ ଯେ ତାଙ୍କ ଆଗରେ ପଡ଼ୁଥିଲେ ରାଜା ତାଙ୍କୁହିଁ ଖାଇଯାଉଥିଲେ । ଅନ୍ୟ ସମୟରେ ସେ କାହାରିକୁ କଷ୍ଟ ଦେଉ ନଥିଲେ । ରାକ୍ଷସ ହେଲେ ମଧ୍ୟ ତାଙ୍କର ବ୍ରାହ୍ମଣ ଭକ୍ତି ନ୍ୟୂନ ହୋଇ ନଥିଲା । ଆହାର ପାଇଁ ସେ ବ୍ରାହ୍ମଣମାନଙ୍କୁ ଖାଇଯାଉଥିଲେ କାରଣ ସେହି ବ୍ରାହ୍ମଣ ଅଭିଶାପରେ ରାଜା ରାକ୍ଷସ ହୋଇଥିଲେ । କିନ୍ତୁ ଅନ୍ୟ ସମୟରେ ସେ ଶିଷ୍ଟତା ରକ୍ଷା କରୁ କରୁ, ସାହାଯ୍ୟ ଦେଉଥିଲେ । ସକାଳେ ସେ ବନରେ ରହୁଥିଲେ । ସେ ଭୋଜନ କରିସାରିବା ପରେ ରାଣୀ ଓ ମନ୍ତ୍ରୀମାନେ ଆସି ବନରେ ତାଙ୍କୁ ସାକ୍ଷାତ କରନ୍ତି । ରାକ୍ଷସଭାବାପନ୍ନ ହୋଇ ମଧ୍ୟ ରାଜା ସୌଦାସ ମହର୍ଷି ଉତ୍ତଙ୍କଙ୍କୁ ଦାନ ଦେଇଥିଲେ ଓ ତାଙ୍କ ସହିତ ମିତ୍ରଭାବରେ ଆଳାପ କରିଥିଲେ ।

ଏହା ଶୁଣି ଶୌନକ ପଚାରିଲେ—"ସୂତ ମହାଶୟ ! ମହାମୁନି ଉତ୍ତଙ୍କ ମହାରାଜ ସୌଦାସଙ୍କୁ କଣ ମାଗିଥିଲେ ଏବଂ ସୌଦାସ ତାଙ୍କ ସହିତ ଆଳାପ ମଧ୍ୟରେ କି ଉପଦେଶ ଦେଇଥିଲେ ସେ ସମସ୍ତ ଦୟାକରି ଆମକୁ ଶୁଣାନ୍ତୁ ।"

ମହର୍ଷି ସୂତ କହିଲେ—"ମୁନିଗଣ ! ମହର୍ଷି ଉତ୍ତଙ୍କ ଥିଲେ ଗୌତମଙ୍କ ଶିଷ୍ୟ । ପାଠପଢ଼ା ସରିବା ପରେ ସେ ଗୁରୁଙ୍କୁ ଗୁରୁଦକ୍ଷିଣା ଦେବାପାଇଁ ଆଗ୍ରହ ପ୍ରକାଶ କଲେ ।"

ମହର୍ଷି ଗୌତମ କହିଲେ—"ବାବୁ ! ତୁ ଆନ୍ତରିକତାର ସହିତ ଆମର ବହୁତ ସେବା କରିଛୁ । ସେତକ ଗୁରୁଦକ୍ଷିଣା ରୂପେ ପର୍ଯ୍ୟାପ୍ତ । ମୁଁ ତୁମ ପ୍ରତି ପ୍ରସନ୍ନ ହୋଇଛି । ତୁମର ମଙ୍ଗଳ ହେଉ ।"

ଉତ୍ତଙ୍କ ମୁନି କହିଲେ—"ନାଁ ଭଗବନ୍ ! କିଛି ନ ଦେବା ମୋର ଅନ୍ୟାୟ ହେବ ।"

ଗୌତମ ମୁନି କହିଲେ—"ଠିକ୍ ଅଛି । ତୁମର ଯଦି ଏତେ ଆଗ୍ରହ ଅଛି ତେବେ ମୋର ତ କିଛି ଦରକାର ନାହିଁ, ତୁମେ ଗୁରୁମା'ଙ୍କ ପାଖକୁ ଯାଅ । ସେ ଯାହା ମାଗିବେ ତାହା ଆଣି ଦେଇଦେବ ।"

ଏହା ଶୁଣି ଉତ୍ତଙ୍କ ଗୁରୁମା ଅହଲ୍ୟାଙ୍କ ପାଖକୁ ଯାଇ କହିଲେ—"ମା' ମୁଁ ପାଠ ପଢ଼ିସାରି ଏବେ ଘରକୁ ଫେରିଯାଉଛି । ମୁଁ କିଛି ଗୁରୁଦକ୍ଷିଣା ଦେବାକୁ ଚାହୁଁଛି । ଗୁରୁଦେବ ମୋତେ ଆପଣଙ୍କ ପାଖକୁ ପଠାଇଲେ । ଆପଣଙ୍କର କଣ ଇଚ୍ଛା ଅଛି କହନ୍ତୁ ମୁଁ ତାହା ପୂର୍ଣ୍ଣ କରିବ ।"

ମୁନିମାନଙ୍କୁ ସମ୍ବୋଧନ କରି ମହର୍ଷି ସୂତ କହିଲେ—"ଋଷିଗଣ ! ସ୍ତ୍ରୀଲୋକମାନଙ୍କୁ ତାଙ୍କ ମନକଥା ପଚାରିଲେ ସେମାନେ କୌଣସି ଏକ ଅଳଙ୍କାର କଥା ହିଁ କହିବେ । ବିବାହ, ମେଳା ମହୋତ୍ସବ ଯୁଆଡ଼େ ଗଲେ ତାଙ୍କର ପ୍ରଥମ ଦୃଷ୍ଟି ଅଳଙ୍କାର, ବେଶଭୂଷା ଉପରେ ପଡ଼େ । କାହାର କାନଫୁଲ ସୁନ୍ଦର ତ କାହାର ହାର ଚକ୍ ଚକ୍ ଦେଖାଯାଏ । କାହାର ଅଳଙ୍କାର କିପରି, କିଏ କିପ୍ରକାର ପିନ୍ଧିଛି ଏସବୁ ସେମାନଙ୍କ ଦୃଷ୍ଟିରେ ସହଜରେ ପଡ଼େ । ଯେଉଁ ଜିନିଷ ଉପରେ ତାଙ୍କର ମନ ଲାଗିଯାଏ ତାହାକୁ ବାରମ୍ବାର ଦେଖନ୍ତି । ତାହାର ମୂଲ୍ୟ, ମିଳିବାର ଠିକଣା ପଚାରନ୍ତି । ଅବସର ପାଇଲେ ସେହି ଅଳଙ୍କାର ପାଇଁ ସ୍ୱାମୀଙ୍କୁ କହନ୍ତି । ଅଳଙ୍କାର କେବେ ନ ପିନ୍ଧିଲେ ବା ବାକ୍ସରେ ସାଇତି ରଖିଲେ ମଧ୍ୟ ସେଥିପାଇଁ ଆଗ୍ରହ ପ୍ରକାଶ କରନ୍ତି । ଗୌତମଙ୍କ ପତ୍ନୀ କେବେ ଥରେ ଅଯୋଧ୍ୟା ଯାଇଥିଲେ । ରାଜମହଲରେ ସୌଦାସଙ୍କ ପତ୍ନୀ ମଦୟନ୍ତୀ ଏକ ଦିବ୍ୟକୁଣ୍ଡଳ ପିନ୍ଧିଥିବାର ଦେଖିଥିଲେ । ସେ ପ୍ରକାର କୁଣ୍ଡଳ ପାଇବା ପାଇଁ ତାଙ୍କର ଇଚ୍ଛା ହୋଇଥିଲା । ଏକଥା ତ ସ୍ୱାମୀଙ୍କୁ କହିପାରିବେ ନାହିଁ । ଯେତେବେଳେ ଶିଷ୍ୟ ଆସି ପଚାରିଲା ସେତେବେଳେ ସ୍ନେହରେ ସେ କହିଲେ - ବାବୁ ! ତୁ ଯଦି ମୋର ଇଚ୍ଛାପୂର୍ଣ୍ଣ କରିବାପାଇଁ ଚାହୁଁଛୁ ତେବେ ମୋର ଏକ ଅଭିଳାଷ ଅଛି । ଯଦି ତାହା ପୂର୍ଣ୍ଣ କରିପାରିବୁ ତେବେ ମୁଁ ଖୁବ ଖୁସି ହେବି ।"

ଉତ୍ତଙ୍କ ମୁନି ପଚାରିଲେ—"ମା ଆପଣଙ୍କ ଇଚ୍ଛା କଣ ମୋତେ କୁହନ୍ତୁ । ଯେତେବଡ଼ ଅସମ୍ଭବ କଥା ହେଲେବି ମୁଁ ତାହା ପୂରଣ କରିବି ।"

ଅହଲ୍ୟା କହିଲେ—"ବାବୁ ! ରାଜା ସୌଦାସଙ୍କ ପତିବ୍ରତା ପତ୍ନୀଙ୍କ ନାମ ମଦୟନ୍ତୀ । ସେ ତାଙ୍କ କାନରେ ଦିବ୍ୟକୁଣ୍ଡଳ ପିନ୍ଧିଛନ୍ତି । ରାତିରେ ସେହି କୁଣ୍ଡଳରୁ ସ୍ୱର୍ଣ୍ଣବୃଷ୍ଟି ହୁଏ । ରାତିର ତାରାମାନଙ୍କର ପ୍ରଭା ସେ କୁଣ୍ଡଳ ଆଗରେ ମଳିନ ପଡ଼ିଯାଏ । ସେହି କୁଣ୍ଡଳ ପିନ୍ଧିଲେ କ୍ଷୁଧା ତୃଷା ଲାଗେ ନାହିଁ । ଯେ ସେହି କୁଣ୍ଡଳ ପିନ୍ଧନ୍ତି ବିଷ, ଅଗ୍ନି ତଥା ଅନ୍ୟାନ୍ୟ ହିଂସ୍ରଜନ୍ତୁଙ୍କ ଭୟ ତାଙ୍କୁ ଲାଗେନାହିଁ । ବାଳକ ତାକୁ ପିନ୍ଧିଲେ ଛୋଟ ହୋଇଯାଏ ଏବଂ ବଡ଼ ମଣିଷ ପିନ୍ଧିଲେ ବଡ଼ ହୋଇଯାଏ । ଯଦି ତୁ

କୌଣସିମତେ କାଲି ସୁଦ୍ଧା ସୌଦାସ ପତ୍ନୀଙ୍କଠାରୁ ସେହି କୁଣ୍ଡଳ ଆଣି ମୋତେ ଦେଇପାରିବୁ ତେବେ ମୁଁ ଖୁସିହେବି ।”

ଉତ୍ତଙ୍କ କହିଲେ—“ମା’ ଆପଣଙ୍କ ପାଇଁ ଯେ କୌଣସି ଉପାୟରେ ହେଉ ପଛକେ ସୌଦାସ ପତ୍ନୀ ମହାରାଣୀ ମଦୟନ୍ତୀଙ୍କ ପାଖରୁ ସେହି ଦିବ୍ୟକୁଣ୍ଡଳ ମାଗି ଆଣିବି ।” ଏହାକହି ମୁନି ଉତ୍ତଙ୍କ ମହାରାଜ ସୌଦାସଙ୍କ ପାଖକୁ ଚାଲିଗଲେ ।

ମହାରାଜ ସୌଦାସ ଜଙ୍ଗଲରେ ରହୁଥିଲେ । ଦିବସର ଷଷ୍ଠଭାଗରେ ଯେଉଁ ପୁରୁଷ ତାଙ୍କ ଆଗକୁ ଆସୁଥିଲା ତାକୁ ସେ ଖାଇ ଯାଉଥିଲେ । ସଂଯୋଗବଶତଃ ମହାମୁନି ଉତ୍ତଙ୍କ ସେହି କାଳବେଳାରେ ଯାଇ ସୌଦାସଙ୍କୁ ସାକ୍ଷାତ କଲେ । ତାଙ୍କର ବିକୃତ ରୂପ, ଲାଲ୍ ଲାଲ୍ ନଖଦାଢ଼ୀ ଦେଖି ମଧ୍ୟ ନିର୍ଭୟରେ ମୁନି ପାଖକୁ ଯାଇ କହିଲେ—“ରାଜନ୍ ! ମୁଁ ଜଣେ ବିଦ୍ୟାର୍ଥୀ । ଆପଣଙ୍କୁ କିଛି ମାଗିବା ପାଇଁ ଆସିଛି ।”

ରାଜା କହିଲେ—“ଧନ୍ୟବାଦ । ଆପଣ ଦିନର ଷଷ୍ଠ ଭାଗରେ ଆସିଛନ୍ତି । ଏହି ସମୟରେ ଯେ ମୋ ପାଖକୁ ଆସେ ମୁଁ ତାକୁ ଖାଇଯାଏ । ଏବେ ମୁଁ ଆପଣଙ୍କୁ ଖାଇ କ୍ଷୁଧା ଶାନ୍ତକରିବି ।”

ଉତ୍ତଙ୍କ ମୁନି କହିଲେ—“ରାଜନ୍ ! ସ୍ତ୍ରୀଲୋକ, ଦୂତ ଓ ଯେ ଗୁରୁଦକ୍ଷିଣା ପାଇଁ ଯତ୍ନଶୀଳ ସେମାନେ ଅବଧ୍ୟ । ତେଣୁ ମୋତେ ମାରି ଖାଇବା ଅଭିଳାଷ ପରିତ୍ୟାଗ କରନ୍ତୁ ।”

ରାଜା ସୌଦାସ କହିଲେ—“ବ୍ରହ୍ମନ୍ ! ମୁଁ ଏକ ରାକ୍ଷସ । ଦିନର ଷଷ୍ଠଭାଗ ଅତିବାହିତ ହୋଇଗଲା । ମୋତେ ଭୋକ ଲାଗୁଛି ଅଥଚ ଆପଣ ମୋତେ ଧର୍ମଶିକ୍ଷା ଦେଉଛନ୍ତି । ନିଆଁରେ ଘିଅ ଢାଳିଲା ପରି ଆପଣଙ୍କ ଧର୍ମ ଉପଦେଶ ମୋର କ୍ଷୁଧାକୁ ଦ୍ୱିଗୁଣିତ କରୁଛି । ଦ୍ୱିଜବର ! ଏବେ ଆପଣଙ୍କୁ ନ ଖାଇ ଛାଡ଼ିବି ନାହିଁ ।”

ଉତ୍ତଙ୍କ ମୁନି କହିଲେ—“ରାଜନ୍ ! ମୋର ମରିବା ପାଇଁ ଟିକିଏ ହେଲେ ବି ଭୟ ନାହିଁ । କିନ୍ତୁ ଗୁରୁଦକ୍ଷିଣା ବିଷୟରେ ମୁଁ ବିଶେଷ ଚିନ୍ତିତ । ଆପଣ ଯଦି ମୋତେ ଖାଇବା ସ୍ଥିରକରି ସାରିଛନ୍ତି ତେବେ ପ୍ରଥମେ ମୋର ଅଭିଳଷିତ ବସ୍ତୁ ଦିଅନ୍ତୁ । ତାହା ଗୁରୁଙ୍କୁ ଦେଇ ଋଣମୁକ୍ତ ହୋଇ ମୁଁ ପୁଣି ଆପଣଙ୍କ ପାଖକୁ ଚାଲି-ଆସିବି । ସେତେବେଳେ ଆପଣ ମୋତେ ଖାଇବେ ।”

ରାଜା ସୌଦାସ କହିଲେ—“ବ୍ରହ୍ମନ୍ ! ମୁଁ ପିଲାଟିଏ ନୁହେଁ । ଆପଣ ମୋତେ ଭୁଲେଇଦେଇ ପାରିବେ ନାହିଁ । ରାକ୍ଷସ ମୁହଁରୁ ବାହାରି ଯାଇ ପୁଣି କେହି କେବେ ଫେରିଆସେ କି ?”

ଉତ୍ତଙ୍କ ମୁନି ଉତ୍ତେଜିତ ହୋଇ କହିଲେ—"ରାଜନ୍ ! ଆପଣ ମୋତେ ମିଥ୍ୟାବାଦୀ ବୋଲି ଭାବନ୍ତୁ ନାହିଁ । ମୁଁ ନିଶ୍ଚୟ ଆସିବି ।"

ରାଜା କହିଲେ—ଠିକ୍ ଅଛି । ମାଗନ୍ତୁ, ଆପଣ କଣ ଚାହୁଁଛନ୍ତି । ଆପଣଙ୍କ ପ୍ରାର୍ଥୀତ ବସ୍ତୁ ମୋର ଅଧୀନ ହୋଇଥିଲେ ନିଶ୍ଚୟ ମିଳିବ ଏଥିରେ ସନ୍ଦେହ ନାହିଁ ।"

ଉତ୍ତଙ୍କ ମୁନି କହିଲେ—"ରାଜନ୍ ! ଆପଣଙ୍କ ପତିବ୍ରତା ପତ୍ନୀଙ୍କ କାନରେ ଯେଉଁ ଦିବ୍ୟକୁଣ୍ଡଳ ଅଛି ତାହା ମୋତେ ଦିଅନ୍ତୁ । ମୋର ଗୁରୁମାଙ୍କୁ ଦକ୍ଷିଣାସ୍ୱରୂପ ସେହି କୁଣ୍ଡଳ ଦେବାପାଇଁ ପ୍ରତିଶ୍ରୁତିବଦ୍ଧ ହୋଇଛି ।"

ରାଜା କହିଲେ—"ସେ କୁଣ୍ଡଳ ତ ରାଣୀଙ୍କ ପାଖରେ । ଆପଣ ତାଙ୍କୁ ଯାଇ ମାଗନ୍ତୁ ।"

ଉତ୍ତଙ୍କ କହିଲେ—"ପତିପତ୍ନୀ ଦୁଇଜଣ ହେଲେ ବି ଏକକ ରୂପେ ଅଭିହିତ । ପତ୍ନୀଙ୍କର ନିଜର ବୋଲି କିଛି ନାହିଁ । ସେ ନିଜର ଶରୀର, ବସ୍ତ୍ର, ଭୂଷଣ ଏପରିକି କୁଳ ଗୋତ୍ର ମଧ୍ୟ ପତିଙ୍କୁ ସମର୍ପଣ କରିଥାନ୍ତି । ତେଣୁ ଆପଣଙ୍କ ଆଦେଶ ବିନା ସେ ମୋତେ କୁଣ୍ଡଳ କିପରି ଦେଇପାରିବେ ।"

ରାଜା କହିଲେ—ବ୍ରହ୍ମନ୍ ! ଆପଣ ସତ କହୁଛନ୍ତି । ପତିବ୍ରତା କୌଣସି ବସ୍ତୁକୁ ଏକାନ୍ତ ଆପଣାର ବୋଲି ଭାବେନାହିଁ । ସେ ନିଜର ସର୍ବସ୍ୱ ପତିଙ୍କୁ ସମର୍ପଣ କରିଥାଏ । ମୋର ପତ୍ନୀ ପତିବ୍ରତା । ସେ ଦିନର ଷଷ୍ଠଭାଗ ପରେ ମୋତେ ସାକ୍ଷାତ କରିବାପାଇଁ ଏଇ ବନକୁ ଆସନ୍ତି । ଏଣୁ ଆପଣ ନିକଟରେ ଥିବା ନିର୍ଝରିଣୀ କୂଳରେ ତାଙ୍କ ସାକ୍ଷାତ ଲାଭ କରିବେ ।"

ଏହାଶୁଣି ଉତ୍ତଙ୍କ ମୁନି ରାଜାଙ୍କ ନିର୍ଦ୍ଦେଶିତ ଝରଣାକୂଳକୁ ଚାଲିଗଲେ । ପତିବ୍ରତା ମଦୟନ୍ତୀ ସେଠାରେ ଉପସ୍ଥିତ ଥିଲେ । ଉତ୍ତଙ୍କ ମୁନି ରାଣୀଙ୍କୁ ଆଶୀର୍ବାଦ ଦେଇ କୁଣ୍ଡଳ ପ୍ରାର୍ଥନା କଲେ ଏବଂ ସେଥିପାଇଁ ରାଜାଙ୍କ ଆଦେଶ ମଧ୍ୟ ଜଣାଇଦେଲେ ।

ମହାରାଣୀ ବ୍ରାହ୍ମଣଙ୍କୁ ପ୍ରଣାମ ଜଣାଇ କହିଲେ—"ବ୍ରହ୍ମନ୍ ! ଆପଣ ଦାନ ଗ୍ରହଣ ପାଇଁ ଯୋଗ୍ୟପାତ୍ର । କୁଣ୍ଡଳ ଦେବା ବିଷୟରେ ମଧ୍ୟ ମୋର କୌଣସି ଆପତ୍ତି ନାହିଁ । କିନ୍ତୁ ଏହା ଦେଇଦେବା ପାଇଁ ରାଜା ଆଦେଶ ଦେଇଛନ୍ତି ତାହା ମୁଁ କିପରି ବିଶ୍ୱାସ କରିବି ? ଆପଣ ରାଜାଙ୍କ ପାଖରୁ ସେହିଭଳି କୌଣସି ଅଭିଜ୍ଞାନ ଆଣିଲେ ମୁଁ କୁଣ୍ଡଳ ଦେଇଦେବି ।"

ମୁନି ଉତ୍ତଙ୍କ ପୁଣି ସୌଦାସଙ୍କ ପାଖକୁ ଫେରିଯାଇ ରାଣୀ ରଖୁଥିବା ନିଦର୍ଶନ ବିଷୟ କହିବାରୁ ରାଜା କହିଲେ—"ଏହି ରାକ୍ଷସ ଯୋନି ରୂପକ ଗର୍ତ୍ତ ମୋତେ ସୁଖକର ଲାଗୁନାହିଁ । ମୋର ଅଭିପ୍ରାୟକୁ ବୁଝି ବ୍ରାହ୍ମଣଙ୍କୁ କୁଣ୍ଡଳ ଦାନ କର ।

ଉତ୍ତଙ୍କ ରାଣୀଙ୍କ ପାଖକୁ ଯାଇ ରାଜା ଯାହା କହିଥିଲେ ତାହା ଅନୁରୂପେ କହିଗଲେ । ଏହା ଶୁଣି ରାଣୀ ସାଙ୍ଗେ ସାଙ୍ଗେ କାନରୁ କୁଣ୍ଡଳ ବାହାର କରି ବ୍ରାହ୍ମଣଙ୍କୁ ଦେଇଦେଲେ ଓ କହିଲେ-"ବ୍ରହ୍ମନ୍ ! ଏପରି ଦିବ୍ୟକୁଣ୍ଡଳ ତିନି ଲୋକରେ କେଉଁଠି ହେଲେ ନାହିଁ । ଏହାକୁ ଭୂଲ୍‌ରେ କେବେ ମାଟି ଉପରେ ରଖିବ ନାହିଁ । ମାଟି ଉପରେ ରଖିବାମାତ୍ରେ ନାଗ, ଦେବ ବା ଦାନବ ଯେ କେହି ତାକୁ ନେଇଯିବ ।"

ରାଣୀଙ୍କ କଥା ଶୁଣି ତାଙ୍କୁ ଆଶୀର୍ବାଦ ଜଣାଇ ଉତ୍ତଙ୍କ ମୁନି କୁଣ୍ଡଳକୁ ମୃଗଚର୍ମରେ ବାନ୍ଧି ବିଦାୟ ନେଲେ । ସେ ପୁଣି ଥରେ ରାଜାଙ୍କ ପାଖକୁ ଯାଇ କହିଲେ—"ରାଜନ୍ ! ଆପଣଙ୍କର ମଙ୍ଗଳ ହେଉ । ଆପଣ ରାଣୀଙ୍କୁ ଯେଉଁ ସଙ୍କେତ ବାକ୍ୟ କହିଲେ ତାହାର ଅର୍ଥ କଣ ?"

ରାଜା କହିଲେ-"ବ୍ରହ୍ମନ୍ ! ମୁଁ ସାରାଜୀବନ ବ୍ରାହ୍ମଣମାନଙ୍କର ଯେଉଁ ସେବା କରି ଆସିଥିଲି ତାହାରି ଫଳରେ ମୋତେ ରାକ୍ଷସ ହେବାକୁ ପଡ଼ିଲା । ପୁଣି ଅବୋଧ ବାଳକର ମା' ବ୍ୟତୀତ ଯେପରି ଅନ୍ୟ କେହି ରକ୍ଷାକର୍ତ୍ତା ନାହିଁ ସେହିପରି ବ୍ରାହ୍ମଣଙ୍କ ବ୍ୟତୀତ ମୋତେ ଆଉ କେହି ମୁକ୍ତି ଦେଇ ପାରିବେ ନାହିଁ । ସେଥିପାଇଁ ରାକ୍ଷସଭାବରେ ଥାଇ ମଧ୍ୟ ମୁଁ ଆପଣଙ୍କ ଅଭିଳାଷ ପୂରଣ କଲି । ମୋର ପ୍ରତିଜ୍ଞା ପୂର୍ଣ୍ଣ ହେଲା । ବର୍ତ୍ତମାନ ତୁମେ ତୁମର ପ୍ରତିଜ୍ଞା ରକ୍ଷା କରୁଛ କି ନାହିଁ ମୋତେ ଦେଖିବାକୁ ହେବ ।"

ଏହା ଶୁଣି ଉତ୍ତଙ୍କ ମୁନି କହିଲେ—"ରାଜନ୍ ! ଆପଣଙ୍କୁ ବନ୍ଧୁ ଭାବରେ ମୁଁ ଏକ ପ୍ରଶ୍ନ ପଚାରୁଛି । ଆପଣ ମିତ୍ର ଭାବରେ ତା'ର ଉତ୍ତର ଦେବେ । କାରଣ ସଜ୍ଜନ ପୁରୁଷ ଯାହା ସହିତ ଥରେ କଥା ହୁଅନ୍ତି ତା' ସହିତ ମିତ୍ରତା ସ୍ଥାପନ କରନ୍ତି । ଏଣୁ ଆପଣ ମୋର ମିତ୍ର । ଆପଣ ରାକ୍ଷସ ଭାବରେ ନୁହେଁ ମିତ୍ର ଭାବରେ ମୋତେ ଉତ୍ତର ଦେବେ ।"

ରାଜା କହିଲେ—"ହଉ, ଆପଣ ଯାହା ପଚାରିବାର କଥା ପଚାରନ୍ତୁ । ମୁଁ ମିତ୍ର ଭାବରେ ତାର ଯଥାର୍ଥ ଉତ୍ତର ଦେବି ।"

ଉତ୍ତଙ୍କ ମୁନି କହିଲେ—"ମୁଁ ପଚାରୁଛି ଯେ, ଆପଣଙ୍କ ପାଖକୁ ଫେରି-ଆସିବା ପାଇଁ ଯେଉଁ ପ୍ରତିଜ୍ଞା କରିଛି ସେ ଅନୁସାରେ ଫେରି ଆସିବି କି ନାହିଁ ?"

ଏହା ଶୁଣି ରାକ୍ଷସଭାବଗ୍ରସ୍ତ ମହାରାଜ ସୌଦାସ ଅଟ୍ଟହାସ୍ୟ କରି କହିଲେ—"ବ୍ରହ୍ମନ୍ ! ଆପଣ ତ ମୋତେ କଥାରେ ବାନ୍ଧି ପକାଇଛନ୍ତି । ତଥାପି ମୈତ୍ରୀ ଭାବରେ ଆପଣଙ୍କୁ ଆପଣଙ୍କ କର୍ତ୍ତବ୍ୟ କଥା କହୁଛି । ଆପଣ କେବେବି ମୋ' ପାଖକୁ ଆଉ ଫେରି ଆସିବେ ନାହିଁ । କାରଣ ଆପଣ ଯଦି ଫେରି ଆସିବେ ତେବେ ମୁଁ ନିଶ୍ଚୟ ଆପଣଙ୍କୁ ଖାଇବି । ଆପଣଙ୍କ କାର୍ଯ୍ୟ ସଫଳ ହେଲା । ସୁଖରେ ଫେରିଯାନ୍ତୁ ଓ ଆନନ୍ଦରେ ରହନ୍ତୁ । କାମୁକ ଓ ରାକ୍ଷସ ଆଗରେ କରିଥିବା ପ୍ରତିଜ୍ଞାର କିଛି ମହତ୍ତ୍ୱ ନାହିଁ ।"

ରାଜାଙ୍କ ଯୁକ୍ତି ଯୁକ୍ତ କଥା ଶୁଣି କୁଣ୍ଡଳ ନେଇ ଉତ୍ତଙ୍କ ମୁନି ଗୁରୁମା ଅହଲ୍ୟାଙ୍କ ପାଖକୁ ବାହାରିଲେ । ବାଟରେ ନାନାପ୍ରକାର ବିଘ୍ନ ତାଙ୍କୁ ଅତିକ୍ରମ କରିବାକୁ ପଡ଼ିଲା । ଶେଷରେ ସେ ଗୁରୁ ଗୃହରେ ପହଞ୍ଚି ଗୁରୁମାଙ୍କୁ କୁଣ୍ଡଳ ଦେଲେ । ଗୁରୁ ଓ ଗୁରୁମାଙ୍କ ଆଶୀର୍ବାଦ ଲାଭକରି ଏବଂ ଗୁରୁଙ୍କ କନ୍ୟାକୁ ବିବାହ କରି ଉତ୍ତଙ୍କ ସୁଖରେ କାଳ ଅତିବାହିତ କରିବାକୁ ଲାଗିଲେ ।

ମହର୍ଷି ସୂତ କହିଲେ—"ମୁନିଗଣ ! ଏହିପରି ରାକ୍ଷସ ଭାବରେ ରହି ମଧ୍ୟ ମହାରାଜ ସୌଦାସ ଦାନ ଦେଇଥିଲେ, ବ୍ରାହ୍ମଣଙ୍କୁ ସ୍ୱାଗତ କରିଥିଲେ ଏବଂ ମିତ୍ରଦ୍ରୋହୀ ନ ହେଲାଭଳି ବିଶୁଦ୍ଧ ଗୁଣର ଅଧିକାରୀ ଥିଲେ ।ପ୍ରାରବ୍ଧବଶତଃ ତାଙ୍କୁ ରାକ୍ଷସ ଯୋନିର ଭୟଙ୍କର ଯନ୍ତ୍ରଣା ଭୋଗ କରିବାକୁ ପଡ଼ିଲା । ବାରବର୍ଷ ପରେ ତାଙ୍କର ରାକ୍ଷସଭାବ ଦୂର ହୋଇଗଲା । ସେ ପୁଣି ରାଜ ସିଂହାସନରେ ଅଭିଷିକ୍ତ ହୋଇଥିଲେ ।"

ରାଜା ନିଃସନ୍ତାନ ହେବେ ବୋଲି ଅଭିଶାପ ପାଇଥିବାରୁ ତାଙ୍କର ବଂଶରକ୍ଷା କିପରି ହେଲା ବୋଲି ଶୌନକ ଋଷି ପଚାରିବାରୁ ମହର୍ଷି ସୂତ କହିଲେ—"ମୁନିଗଣ ! ମୁଁ ଏବେ ସୌଦାସ ଅଶ୍ମକଙ୍କ ଚରିତ କହୁଛି, ଆପଣମାନେ ମନ ଦେଇ ଶୁଣନ୍ତୁ ।"

## ଛପ୍‌ପୟ

ବୀତେ ବାରହ ବରଷ ଶାପ ଉଦ୍ଧାର ଭୟେ ଜବ ।
କରତେ ଗର୍ଭାଧାନ ଭୟେ ଉଦ୍ୟତ ଭୂପତି ତବ ॥
ବରଜେ ରାନୀ ନୃପତି ଶାପ କୀ ୟାଦ ଦିଲାଇ ।
ମହଷୀ ସନ୍ତତି ବିନା ବହୁତ ରୋଇ ଘବରାଇ ॥
ବଂଶ ନାଶ କୋ ଭୟ ସମୁଝି, ଲଖେ୍ୟା ନ ଅନ୍ୟ ଉପାୟ ଜବ ।
ଗୁରୁ ବଶିଷ୍ଠ ତେଁ ବିନୟ କରି, ଭୂପ ପ୍ରାର୍ଥନା କରି ତବ ॥



# ମୂଳକ ପରବର୍ତ୍ତୀ ସୂର୍ଯ୍ୟବଂଶୀ ରାଜା

ଅଶ୍ମକାନ୍ ମୂଳକୋ ଜଜ୍ଞେ ଯଃ ସ୍ତ୍ରୀଭିଃ ପରିରକ୍ଷିତଃ ।
ନାରୀକବଚ ଇତ୍ୟୁକ୍ତୋ ନିଃକ୍ଷତ୍ରେ ମୂଳକୋଽଭବତ୍ ॥
(ଶ୍ରୀଭାଗ ୯ସ୍କ-୯ଅ-୪୦ଶ୍ଳୋ)

**ଛପ୍ପୟ**

ଅଶ୍ମକ କେ ସୁତ ଭୟେ ରାଜକୁଳ କେ ଜୋ ମୂଳକ ।
ତବଇ ପ୍ରକଟେ ପରଶୁରାମ କ୍ଷତ୍ରିୟ କୁଳ ଶୂଳକ ॥
ନାରିନ କବଚ ବନାଇ ବଚାୟେ ମନୁକୁଳ ତ୍ରାତା ।
ନାରୀକବଚ କହାୟ ଭୟେ ଜଗମହଁ ବିଖ୍ୟାତା ।
ମୂଳକ ସୁତ ଦଶରଥ ଭୟେ, ଏଡ଼ବଡ଼ହୁ ସୁତ ତାସୁ କେ ।
ପୁତ୍ର ଏଡ଼ବଡ଼ ବିଶ୍ୱସହ ଖଟ୍ୱାଙ୍ଗହୁ ନୃପ ଜାସୁ କେ ॥

ନିଜ ବଂଶର ରକ୍ଷା ପାଇଁ, ଧନସମ୍ପନ୍ନ ଗାର୍ହସ୍ଥ୍ୟ ଜୀବନ ପରିଚାଳନା ପାଇଁ ନିରୂପାୟ ହୋଇ ଯଦି କେହି କିଛି ଅନୁଚିତ କାର୍ଯ୍ୟ କରେ ତାହା କ୍ଷମଣୀୟ ହୋଇଯାଏ । ଧର୍ମର ଗତି ଅତି ସୂକ୍ଷ୍ମ । କେବେ କେବେ ଅଧର୍ମ ପ୍ରତୀତ ହେଉଥିବା କାର୍ଯ୍ୟ ଧର୍ମକାର୍ଯ୍ୟ ରୂପେ ଗୃହୀତ ହୁଏ ତ ଧର୍ମକାର୍ଯ୍ୟ ବୋଲି ମନେ ହେଉଥିବା କାର୍ଯ୍ୟ ଅଧର୍ମ ବୋଲି ବିଚାର କରାଯାଏ । କିନ୍ତୁ ଯେଉଁମାନେ ସର୍ବଜ୍ଞ ସେମାନେ ଧର୍ମର ମର୍ମକୁ ଭଲ ଭାବରେ ଜାଣିପାରନ୍ତି ।"

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ମହାରାଜ ଅଶ୍ମକଙ୍କ ପୁତ୍ର ମନୁ କୁଳର ମୂଳ କିପରି ହେଲେ ମୁଁ ସେଇ କଥା କହୁଛି, ଆପଣ ଶୁଣନ୍ତୁ । ମହାରାଜ ଅଶ୍ମକ ବହୁକାଳ ପର୍ଯ୍ୟନ୍ତ ରାଜ୍ୟ ପାଳନ କଲେ । ବହୁ ଯାଗଯଜ୍ଞ କରିବା ପରେ ସେ

ମୂଳକଙ୍କୁ ରାଜସିଂହାସନରେ ଅଭିଷିକ୍ତ କରାଇ ତପସ୍ୟା କରିବାକୁ ବନଗମନ କଲେ ।

ମହାରାଜ ମୂଳକଙ୍କ ରାଜତ୍ୱ କାଳରେ ଜମଦଗ୍ନିଙ୍କ ପୁତ୍ର ଭଗବାନଙ୍କ ଅଂଶାବତାର ପରଶୁରାମଙ୍କ ଆବିର୍ଭାବ ଘଟିଲା । ଜମଦଗ୍ନିଙ୍କୁ ହୈହୟ କୁଳର କ୍ଷତ୍ରିୟମାନେ ମାରିପକାଇଲେ । ତେଣୁ ମହର୍ଷି ପରଶୁରାମ କ୍ରୋଧାନ୍ୱିତ ହୋଇ ପରଶୁ ଧରି ପ୍ରତିଜ୍ଞା କଲେ ଯେ, ମୁଁ ପୃଥିବୀରେ ଜଣେ ହେଲେ କ୍ଷତ୍ରିୟଙ୍କୁ ଜୀବନରେ ରଖିବି ନାହିଁ । ଏହିପରି ପ୍ରତିଜ୍ଞା କରି ସେ କ୍ଷତ୍ରିୟକୁଳ ସଂହାର କରିବା ଆରମ୍ଭ କଲେ । ଶିଶୁ, ଯୁବ, ବୃଦ୍ଧ ନିର୍ବିଶେଷରେ ଯେ କେହି କ୍ଷତ୍ରିୟ ତାଙ୍କ ଆଗରେ ପଡ଼ିଲା ସେ ତାକୁ ହତ୍ୟା କଲେ । କ୍ଷତ୍ରିୟ ସଂହାର କାର୍ଯ୍ୟ ଚଲାଇ ସେ ଆସି ଅଯୋଧ୍ୟାରେ ପହଞ୍ଚିଲେ ।

ମହାରାଜ ମୂଳକ ଯେତେବେଳେ ଜାଣିଲେ କ୍ଷତ୍ରିୟକୁଳ ବିଧ୍ୱଂସୀ ମହର୍ଷି ପରଶୁରାମ ଅଯୋଧ୍ୟା ଆସୁଛନ୍ତି, ସେତେବେଳେ ସେ ଭାବିଲେ—ଭଗବାନଙ୍କର ଅଂଶାବତାର ରୂପେ ଅବତୀର୍ଣ୍ଣ ପରଶୁରାମଙ୍କୁ ମୁଁ ଯୁଦ୍ଧରେ ଜୟ କରିପାରିବି ନାହିଁ । ତେଣୁ ସେ ଅନ୍ତଃପୁରକୁ ଯାଇ ରାଣୀଙ୍କ ଗହଣରେ ଲୁଚି ରହିଲେ । ରାଣୀମାନେ ତାଙ୍କୁ ଚାରିପାଖରୁ ଘେରି ରହିଲେ ଓ ରାଜାଙ୍କୁ ଚୁଡ଼ି ପିନ୍ଧାଇ ଦେଲେ । ପରଶୁରାମ ଆସି ପହଞ୍ଚି ରାଜାଙ୍କୁ ଚାରିଆଡ଼େ ଖୋଜିଲେ । ଅନ୍ତଃପୁରରେ ଦେଖିଲେ କେବଳ ରାଣୀମାନେ ଅଛନ୍ତି । ସ୍ତ୍ରୀ ଲୋକମାନଙ୍କୁ ହତ୍ୟା କରିବାର ଅଭିପ୍ରାୟ ତାଙ୍କର ନଥିଲା । କାରଣ ସେମାନେ ଅବଧ୍ୟା । ତେଣୁ ପରଶୁରାମ, ରାଜା ପଳାଇ ଯାଇଛନ୍ତି ବୋଲି ସେଠାରୁ ଫେରିଗଲେ ।

ମହର୍ଷି ଫେରିଯିବା ପରେ ମଧ୍ୟ ରାଜା ବହୁଦିନ ପର୍ଯ୍ୟନ୍ତ ରାଣୀମାନଙ୍କ ମଧ୍ୟରେ ଲୁଚି ରହିଲେ । ପରଶୁରାମ ଏକୋଇଶ ବାର ଚାରିଆଡ଼େ ବୁଲି ବୁଲି କ୍ଷତ୍ରିୟମାନଙ୍କୁ ସଂହାର କଲେ । କ୍ଷତ୍ରିୟମାନଙ୍କୁ ବିନାଶ କରିସାରିବା ପରେ ସେ ଯୁଦ୍ଧରୁ ବିରତ ହେଲେ । ସେ ଅସ୍ତ୍ରଶସ୍ତ୍ର ପରିତ୍ୟାଗ କରି ତପସ୍ୟା କରିବାକୁ ଚାଲିଗଲେ । କ୍ଷତ୍ରିୟ କୁଳର ସମସ୍ତେ ମୃତ୍ୟୁବରଣ କରିଥିଲେ ମଧ୍ୟ କେବଳ ମୂଳକ ଜୀବିତ ଥିଲେ । ସେ ହେଲେ ମନୁ ବଂଶର ଶେଷ ଦାୟାଦ । ତାଙ୍କଠାରୁ କ୍ଷତ୍ରିୟ ବଂଶ ପୁଣି ବିସ୍ତାର ଲାଭ କରିଥିଲା । ତେଣୁ କୁଳର ମୂଳ ହୋଇଥିବାରୁ ତାଙ୍କୁ ମୂଳକ କୁହାଗଲା । ସ୍ତ୍ରୀମାନେ କବଚ ରୂପରେ ତାଙ୍କୁ ରକ୍ଷା କରିଥିବାରୁ ସେ ନାରୀକବଚ ନାମରେ ମଧ୍ୟ ଅଭିହିତ ହୋଇଥିଲେ ।"

ଏହା ଶୁଣି ମହାରାଜ ପରୀକ୍ଷିତ ପଚାରିଲେ—"ବ୍ରହ୍ମନ୍ ! ପରଶୁରାମ ଏପରି କ୍ରୂରକର୍ମ କାହିଁକି କଲେ ? ସେ କ୍ଷତ୍ରିୟ କୁଳକୁ କାହିଁକି ବିନାଶ କଲେ ?"

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ସେସବୁ ପ୍ରଶ୍ନର ଉତ୍ତର ମୁଁ ପରଶୁରାମ ଚରିତ ବର୍ଣ୍ଣନା କଲାବେଳେ କହିବି । ବର୍ତ୍ତମାନ ଆପଣ ଇକ୍ଷ୍ୱାକୁ ବଂଶୀୟ ରାଜାମାନଙ୍କ କଥା ଶୁଣନ୍ତୁ ।"

ମହାରାଜ ପରୀକ୍ଷିତ ପଚାରିଲେ—"ଭଗବନ୍ ! ମନୁବଂଶକୁ ମହାରାଜ ମୂଳକଙ୍କ ପରେ କେଉଁ ରାଜାମାନେ ଅଳଙ୍କୃତ କଲେ ସେହିମାନଙ୍କ କଥା କହନ୍ତୁ । ମୂଳକଙ୍କ ପୁତ୍ର କିଏ ହେଲେ ?"

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ମୂଳକଙ୍କ ପୁତ୍ର ହେଲେ ଦଶରଥ । ସେ 'ପ୍ରଥମ ଦଶରଥ' ନାମରେ ଅଭିହିତ । ଜାନକୀ ଜୀବନ ସକେତ ବିହାରୀ ଶ୍ରୀ ରାମଚନ୍ଦ୍ର ଯାହାର ପୁତ୍ର ରୂପେ ଅବତୀର୍ଣ୍ଣ ହୋଇଥିଲେ ସେ ଥିଲେ 'ଦ୍ୱିତୀୟ ଦଶରଥ' । ପୂର୍ବୋକ୍ତ ମହାରାଜ ଦଶରଥଙ୍କଠାରୁ ଏଡ଼ବିଡ଼ ଓ ତାଙ୍କଠାରୁ ବିଶ୍ୱସହ ଜନ୍ମ ହେଲେ । ସେହି ବିଶ୍ୱସହଙ୍କ ପୁତ୍ର ହେଲେ ପୁଣ୍ୟଶ୍ଳୋକ ଖଟ୍ୱାଙ୍ଗ । ସେ ଦେବାସୁର ସଂଗ୍ରାମରେ ଦେବତାମାନଙ୍କ ପକ୍ଷରେ ଥାଇ ରାକ୍ଷସମାନଙ୍କ ବିରୁଦ୍ଧରେ ଯୁଦ୍ଧ କରିଥିଲେ ଓ ଦୈତ୍ୟମାନଙ୍କୁ ପରାଜିତ କରିଥିଲେ ।

ଦୈତ୍ୟମାନେ ଦେବତାମାନଙ୍କ ଉପରେ ଆକ୍ରମଣ କଲେ । ବହୁଦିନ ଧରି ଯୁଦ୍ଧକଲେ ମଧ୍ୟ ଦେବତାମାନେ ଦୈତ୍ୟମାନଙ୍କୁ ହରାଇପାରିଲେ ନାହିଁ । ସବୁ ଦିଗରୁ ଯେତେବେଳେ ସେମାନେ ଅଳପଡ଼ିଲେ ସେତେବେଳେ ପୃଥିବୀକୁ ପଳାଇ ଆସିଲେ । ସେତେବେଳେ ମହାରାଜ ଖଟ୍ୱାଙ୍ଗ ପୃଥିବୀ ଶାସନ କରୁଥିଲେ । ସେ ଥିଲେ ଇନ୍ଦ୍ରଙ୍କ ପରି ପରାକ୍ରମଶାଳୀ । ଦେବତାମାନେ ତାଙ୍କ ପାଖକୁ ଯାଇ ପ୍ରାର୍ଥନା କଲେ—ରାଜନ୍ ! ଆପଣ ଆମ ପକ୍ଷରେ ରହି ଅସୁରମାନଙ୍କ ସହିତ ଯୁଦ୍ଧ କରନ୍ତୁ । ଦେବତାମାନଙ୍କ ନିବେଦନ ଅନୁସାରେ ମହାରାଜ ଖଟ୍ୱାଙ୍ଗ ଦିବ୍ୟ ରଥରେ ବସି ସ୍ୱର୍ଗକୁ ଗଲେ ଓ ଯୁଦ୍ଧରେ ଅସୁରମାନଙ୍କୁ ସଂହାର କଲେ । ଫଳରେ ଦେବତାମାନେ ବିଜୟୀ ହେଲେ ।"

ବିଜୟଲାଭ ପରେ ଦେବତାମାନେ କହିଲେ—"ରାଜନ୍ ! ଆପଣ ବହୁତ ଶ୍ରମ କରିଛନ୍ତି । ଆପଣ ମୁକ୍ତି ବ୍ୟତୀତ ଆଉ ଯାହା ଇଚ୍ଛା ହେଉଛି ସେଥିପାଇଁ ବର ମାଗନ୍ତୁ । କାରଣ କେବଳ ମଧୁସୂଦନ ଆପଣଙ୍କୁ ମୁକ୍ତି ଦେଇପାରିବେ । ସେ ମୁକ୍ତିଦାତା ।"

ମହାରାଜ ଖଟ୍ୱାଙ୍ଗ କହିଲେ—'ହେ ଦେବଗଣ ! ମୁଁ ପ୍ରଥମେ ମୋର ଆୟୁ ଆଉ କେତେ ଅଛି ତାହା ଜାଣିବା ପାଇଁ ଇଚ୍ଛା କରୁଛି ।"

ଦେବତାମାନେ କହିଲେ—"ରାଜନ୍ ! ଆୟୁ ବିଷୟରେ ପଚାରୁଛନ୍ତି କଣ ? ଆପଣଙ୍କର ଆୟୁ ଖୁବ୍ ଅଳ୍ପସମୟ ପାଇଁ ଅଛି । ଆଉ ମୁହୂର୍ତ୍ତେକାଳ ଆପଣ ରହିବେ ।"

ରାଜା କହିଲେ—"ତେବେ ବର୍ତ୍ତମାନ ମୋର କୌଣସି ବର ଦରକାର ନାହିଁ । ମୋ' ଆୟୁର ଶେଷ ମୁହୂର୍ତ୍ତିଟି ମୁଁ ସଦୁପଯୋଗ କରିବା ପାଇଁ ଚାହୁଁଛି । ଏହି ମୁହୂର୍ତ୍ତିକ ମଧ୍ୟରେ ମୁଁ ମାଧବଙ୍କ ପାଦପଦ୍ମରେ ମନଲଗାଇ ପରମଗତି ପାଇବାପାଇଁ ଆଶା କରୁଛି । ମୋତେ ମୋର ନଗରବାସୀ ବ୍ରାହ୍ମଣମାନଙ୍କ ପାଖକୁ ଯିବାପାଇଁ ଅନୁମତି ଦିଅନ୍ତୁ । ଆପଣମାନେ ସତ୍ତ୍ୱପ୍ରଧାନ ହୋଇ ମଧ୍ୟ ସ୍ୱର୍ଗର ଦିବ୍ୟ ବିଷୟ ଭୋଗରେ ଲିପ୍ତ ଥିବାରୁ ଅନ୍ତଃକରଣରେ ବିରାଜମାନ ସନାତନ ଆତ୍ମା ଶ୍ରୀହରିଙ୍କୁ ଜାଣିପାରୁ ନାହାନ୍ତି ।"

ଏହା କହି ମହାରାଜ ଶୀଘ୍ର ସ୍ୱର୍ଗରୁ ପୃଥିବୀକୁ ଫେରଆସିଲେ । ପ୍ରଭୁ ଶ୍ରୀହରିଙ୍କ ଚରଣରେ ମନଲଗାଇ ସେ ମର୍ମସ୍ପର୍ଶୀ ବାଣୀରେ କହିବାକୁ ଲାଗିଲେ— "ଏମାନେ ମୋର ବଂଶର ଦେବତା ସ୍ୱରୂପ ବିପ୍ରବୃନ୍ଦ । ଏ ମୋର ଗୁରୁ ଜୀବନଦାତା, ଭୟଦାତା ଓ ସତ୍ ଶିକ୍ଷାଦାତା । ଏମାନଙ୍କଠାରୁ ବଳି ରାଜ୍ୟ ମୋର ପ୍ରିୟ ନୁହେଁ କି ପତ୍ନୀ, ପୁତ୍ର, ସ୍ୱଜନ, ବନ୍ଧୁବାନ୍ଧବ ଏପରିକି ନିଜ ପ୍ରାଣ ମଧ୍ୟ ପ୍ରିୟ ନୁହେଁ । ମୁଁ ବ୍ରାହ୍ମଣମାନଙ୍କ ଆଶ୍ରୟରେ ଅଛି । ସେମାନଙ୍କ ଅନୁଗ୍ରହରୁ ଅଚ୍ୟୁତଙ୍କ ଚରଣରେ ମୋର ଅଚଳା ଭକ୍ତି ଜାତହେବ । ମୋର ଜୀବନ ହେବା ଦିନଠାରୁ ମୁଁ ଭଗବାନଙ୍କୁ ଛାଡ଼ି ଅନ୍ୟ କାହାକୁ ଚାହିଁନାହିଁ । ସର୍ବତ୍ର ତାଙ୍କୁ ମୁଁ ଦେଖିଆସିଛି । ମୋର ମନ କେବେହେଲେ ଅଧର୍ମ କାର୍ଯ୍ୟପ୍ରତି ଆକୃଷ୍ଟ ହୋଇନାହିଁ । ମୁଁ ସର୍ବଦା ଶ୍ରୀହରିଙ୍କ ସାହାଯ୍ୟ ନେଇଆସିଛି ।

ଦେବତାମାନେ ଆଗ୍ରହରେ ମୁଁ ଯାହା ଚାହେଁ ତାହା ମାଗିନେବା ପାଇଁ କହୁଥିଲେ । କିନ୍ତୁ ମୁଁ କିଛି ମାଗିଲି ନାହିଁ । ମାଗିଅଣି କଣ କରିଥାନ୍ତି ? ନଶ୍ୱର ଭୋଗବିଳାସ ପାଇଁ ଲାଭ କଣ ହୋଇଥାନ୍ତା । ମନ ଓ ଇନ୍ଦ୍ରିୟ ଅତି ଚଞ୍ଚଳ । ଭୋଗରେ କେବେ ସେମାନଙ୍କର ତୃପ୍ତି ଆସେନାହିଁ । ତେଣୁ ସେ ଭୋଗବିଳାସ କରିବାର ଅଭିଳାଷ ମୋର ନାହିଁ । ଆଉ ସେ ମାୟାଜାଲରେ ପଶିବି ନାହିଁ । ଗନ୍ଧର୍ବ ନଗର ତୁଲ୍ୟ ଦୃଶ୍ୟମାନ ରାଜତ୍ୱରେ ମୁଁ ଆଉ ପ୍ରଭାବିତ ହେବନାହିଁ । ତ୍ୟାଗର ଆଶ୍ରୟ ନେଇ ଜଗଦୀଶଙ୍କ ଭାବନାରେ ମନ ଲଗାଇବି ।"

ମହାରାଜ ପରୀକ୍ଷିତ ପଚାରିଲେ—"ଭଗବନ୍ ! ଏକ ମୁହୂର୍ତ୍ତ ମଧ୍ୟରେ ମହାରାଜ ଖଟ୍ୱାଙ୍ଗ କିପରି ପରମପଦ ଲାଭ କରିପାରିଲେ । ଏ ବିଷୟରେ ମୋର ସନ୍ଦେହ ହେଉଛି ।"

ଭାବାବେଶରେ ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଏଥିରେ ଆଶ୍ଚର୍ଯ୍ୟ ହେବାର ବା ସନ୍ଦେହ କରିବାର କିଛି ନାହିଁ । ମୁଁ ତ ଆପଣଙ୍କୁ ଆରମ୍ଭରୁ କହିଛି ଯେ ମହାରାଜ ଖଟ୍ୱାଙ୍ଗ ମୁହୂର୍ତ୍ତିକ ମଧ୍ୟରେ ତରିଗଲେ । ତୁମର ତ ସାତଦିନ ସମୟ ଅଛି । ଶେଷ ସମୟରେ ମନ ଯଦି ମୁହୂର୍ତ୍ତିକ ପାଇଁ ଭଲଭାବରେ ଭଗବାନଙ୍କଠାରେ ଲାଗିଯିବ ତେବେ ମୁକ୍ତି ନିଶ୍ଚିତ ବୋଲି ଜାଣ । ଯେତେବେଳେ ରାଜାଙ୍କୁ ଦୃଶ୍ୟମାନ ପ୍ରପଞ୍ଚ ମିଥ୍ୟା ଓ ସ୍ୱପ୍ନବୋଲି ପ୍ରତୀତ ହେଲା ସେତେବେଳେ ଦେହାଦି ଆଶ୍ରିତ ଆତ୍ମବୁଦ୍ଧି ରୂପକ ଅଜ୍ଞାନକୁ ତ୍ୟାଗ କରି ସେ ଆପେ ଆପେ ସ୍ଥିର ହୋଇଗଲେ । ତାଙ୍କର ସମସ୍ତ ଅସ୍ତିତ୍ୱ ଲୋପ ପାଇଗଲା ଆଉ ସେ ବାସୁଦେବମୟ ହୋଇଗଲେ । ଯେଉଁ ବାସୁଦେବ ସତ୍ୟସ୍ୱରୂପ, ପରଂବ୍ରହ୍ମ, ଅତିସୂକ୍ଷ୍ମ ଓ ସ୍ଥୂଳ ସେ ସର୍ବାନ୍ତର୍ଯ୍ୟାମୀ ଓ ସଂସାରର ସର୍ବତ୍ର ପରିବ୍ୟାପ୍ତ ।

ରାଜନ୍ ! ମହାରାଜ ଖଟ୍ୱାଙ୍ଗ ପରମପଦ ଲାଭକରିବା ପରେ ତାଙ୍କ ପୁତ୍ର ମହାରାଜ ଦୀର୍ଘବାହୁ ରାଜା ହେଲେ । ସେହି ଦୀର୍ଘବାହୁଙ୍କର ଅନ୍ୟନାମ ହେଉଛି ଦିଲୀପ । ଦିଲୀପଙ୍କଠାରୁ ରାଜର୍ଷି ରଘୁ ଜନ୍ମ ହୋଇଥିଲେ । ସେ ଏପରି ପ୍ରତାପଶାଳୀ ରାଜା ଥିଲେ ଯେ ତାଙ୍କପରେ ଇକ୍ଷ୍ୱାକୁ ବଂଶ ରଘୁବଂଶ ନାମରେ ନାମିତ ହେଲା ।"

ମହାରାଜ ପରୀକ୍ଷିତ ପଚାରିଲେ—"ଭଗବନ୍ ! ମହାରାଜ ରଘୁ ଓ ତାଙ୍କ ବଂଶର ମୁଖ୍ୟ ମୁଖ୍ୟ ରାଜାମାନଙ୍କ ଚରିତ ମୋତେ କୁହନ୍ତୁ ।"

ଏହାଶୁଣି ଶ୍ରୀ ଶୁକଦେବ ଆଖି ଛଳଛଳ କରି କହିଲେ—"ରାଜନ୍ ! ମୁଁ ରଘୁବଂଶ କଥା ବର୍ଣ୍ଣନା କରୁଛି, ଆପଣ ଶ୍ରଦ୍ଧାର ସହିତ ଶୁଣନ୍ତୁ ।"

## ଛପ୍‌ପୟ

ଜାନୀ ଏକ ମୁହୂର୍ତ୍ତ ଆୟୁ ସବ ଜଗ ବସରାୟୌ ।
କରିକେ ଧ୍ୟାନ ଅଖଣ୍ଡ ପରମ ପଦ ନୃପ ନେ ପାୟୌ ॥
ତିନକେ ପୁତ୍ର ଦିଲୀପ ଯଶସ୍ୱୀ ଦୀର୍ଘବାହୁ ବର ।
ସନ୍ତନ ବନ୍ଧୁ ଅତି ହୁଷିତ ଗୟେ ନବସେଁ କହଁ ଗୁରୁବର ॥
ମହିଷୀ ସଙ୍ଗ ସୁଦକ୍ଷିଣା, ଲୟେ ଜାୟ ଗୁରୁ ପଦ ଗହେ ।
ଆଶିଷ ଦୈ ନିଜ ଶିଷ୍ୟ ତେଁ ବଚନ ମୁଦିତ ମନ ଗୁରୁ କହେ ॥



# ରଘୁବଂଶ କଥା

ଖଟ୍ୱାଙ୍ଗାଦ୍ଦୀର୍ଘବାହୁଶ୍ଚ ରଘୁସ୍ତସ୍ମାତ୍ ପୃଥୁଶ୍ରବାଃ ।
ଅଜସ୍ତତୋ ମହାରାଜସ୍ତସ୍ମାଦ୍ଦଶରଥୋଽଭବତ୍ ।।

(ଭାଗ—୯ସ୍କ-୧୦ଅ-୧ଶ୍ଳୋ)

## ଛପ୍ପୟ

ଗୌ ସେବା ତେଁ ପୁତ୍ର ହୋହିଁ ଯହ ସୈନେ ଜାନୀ ।
କର ସାଦର ସ୍ୱୀକାର ନନ୍ଦିନୀ ସେବା ଠାନୀ ।।
କୃପା ନନ୍ଦିନୀ କରି ଭୟେ ରଘୁ ରବିକୁଲ ଭୂଷନ ।
ରଘୁ କେ ଅଜ ସୁତ ଭୟେ ତିନକ ଜିନମହଁ ନହିଁ ଦୂଷନ ।।
ଅଜ ଅତି ଅନୁପମ ନୃପ ଭୟେ, ଇନ୍ଦୁମତୀ ନେ ଜୋ ବରେ ।
ଏକ ଛତ୍ର ଜଗମହଁ ନୃପତି, ଅଗଣିତ ମଖ ଜିନନେ କରେ ।।

ଏହି ପୃଥିବୀରେ କେତେ ବଂଶର ଉଦୟ ହୋଇଛି, କେତେ ବଂଶ ଲୋପ ପାଇଛି, ତାହା କିଏ କହିପାରିବ ? କିନ୍ତୁ ଯେଉଁ ବଂଶ ପ୍ରଶଂସନୀୟ, ପୂଜନୀୟ ଓ ବନ୍ଦନୀୟ, ଯେଉଁ ବଂଶରେ ପୁରାଣ ପୁରୁଷ ଅବତୀର୍ଣ୍ଣ ହୋଇ ମାନବଲୀଳା ପ୍ରଦର୍ଶନ କରିଛନ୍ତି, ଯେଉଁ ବଂଶର ପୁରୁଷଙ୍କୁ ପ୍ରଭୁ ପିତା, ପିତାମହ, ପ୍ରପିତାମହ, ପୁତ୍ର, ପୌତ୍ର ତଥା ପ୍ରପୌତ୍ରରୂପେ ଗ୍ରହଣ କରିଛନ୍ତି, ସେହି ବଂଶ ଚିରସ୍ମରଣୀୟ । ପ୍ରଭୁ ତ ଜଗତର ପିତା, ତାଙ୍କର ପୁଣି ପିତା କିଏ, ପିତାମହ କିଏ ? ସେ ସମସ୍ତଙ୍କର ଜନକ । କିନ୍ତୁ ସେ ସମ୍ବନ୍ଧ ସ୍ଥାପନ କରି ନଥିଲେ ସଂସାରରେ ସରସତା ଆସନ୍ତା କେଉଁଠୁ ? ସଂସାରର ଅଧିକାଂଶ ଲୋକ ନିର୍ଗୁଣ, ନିରାକାରଙ୍କ ଧ୍ୟାନ ଏହି ଦେହଧାରୀ ପ୍ରାଣୀ କିପରି କରିପାରିବ ? ଦେହଧାରୀ ଦେହଧାରୀଙ୍କୁ ହିଁ ପ୍ରେମ କରିପାରିବ । ସମାନ ଯୋନିରେ ହିଁ ପ୍ରେମ ଜାତହୁଏ । କିନ୍ତୁ ସମ୍ବନ୍ଧ ସବୁ ଜାତି ମଧ୍ୟରେ ଥାଏ ।

ଯେ ପର୍ଯ୍ୟନ୍ତ ଭଗବାନଙ୍କ ସହିତ ସମ୍ପର୍କ ସ୍ଥାପିତ ହୋଇନଥିବ, ବ୍ରହ୍ମ ସମ୍ବନ୍ଧୀଙ୍କ ସଂସ୍କାର ଦୀକ୍ଷା ମିଳି ନଥିବ ସେପର୍ଯ୍ୟନ୍ତ ହୃଦୟରେ ଭକ୍ତିଭାବ ଜାଗ୍ରତ ହେବନାହିଁ । ଭଗବାନ ଆମ ମଧ୍ୟରେ ଅବତୀର୍ଣ୍ଣ ହେଲେହିଁ ସମ୍ବନ୍ଧ ସ୍ଥାପିତ ହେବ ଓ ଭକ୍ତିଭାବ ପ୍ରକାଶ ପାଇବ ।

ଯେଉଁ ବଂଶ ବିଶୁଦ୍ଧ ସେହି ବଂଶରେ ଭଗବାନ ଅବତୀର୍ଣ୍ଣ ହୁଅନ୍ତି । ଯେଉଁ ବଂଶର ଲୋକେ ପରମାର୍ଥେ ଜୀବନ ଉତ୍ସର୍ଗ କରିବାକୁ ପ୍ରସ୍ତୁତ ସେହି ବଂଶରେ ପ୍ରଭୁଙ୍କ ଆବିର୍ଭାବ ଘଟେ । ସେପରି ବିଶୁଦ୍ଧ ବଂଶ ହେଉଛି ସୂର୍ଯ୍ୟବଂଶ । ପୁଣ୍ୟଶ୍ଳୋକ ମହାରାଜ ରଘୁଙ୍କ ଜନ୍ମପରେ ସେହି ସୂର୍ଯ୍ୟବଂଶ ରଘୁବଂଶ ନାମରେ ନାମିତ ହେଲା । ପବିତ୍ର ରଘୁବଂଶରେ ପ୍ରଭୁ ରଘୁନାଥ, ରଘୁବର, ରଘୁନନ୍ଦନ, ରାଘବ, ରଘୁକୁଳତିଳକ ରାଘବେନ୍ଦ୍ର, ଜାନକୀଜୀବନ ଶ୍ରୀରାମଚନ୍ଦ୍ର ଜନ୍ମଗ୍ରହଣ କରିଥିଲେ ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ପୁଣ୍ୟଶ୍ଳୋକ ରାଜର୍ଷି ଖଟ୍ୱାଙ୍ଗଙ୍କ ପୁତ୍ର ପରମ ଯଶସ୍ୱୀ ଦୀର୍ଘବାହୁ ଦିଲ୍ଲୀପ ନାମରେ ସୁବିଦିତ । ମଗଧନନ୍ଦିନୀ ସୁଦକ୍ଷିଣା ଦେବୀଙ୍କ ସହିତ ମହାରାଜ ଦିଲ୍ଲୀପଙ୍କର ବିବାହ ହୋଇଥିଲା । ଯଜ୍ଞରେ ପୁରୋଧା ହୋଇଥିବା ବ୍ରାହ୍ମଣ ପ୍ରଚୁର ଦକ୍ଷିଣା ପାଇଲେ ଯେପରି ଆନନ୍ଦିତ ହୁଅନ୍ତି ସେହିପରି ସୁଦକ୍ଷିଣାଙ୍କୁ ପାଇ ଦିଲ୍ଲୀପ ଖୁବ୍ ଖୁସି ହୋଇଥିଲେ । ମହାରାଣୀ ସୁଦକ୍ଷିଣା ଯେପରି ସୁନ୍ଦରୀ ଓ ସୁକୁମାରୀ ସେହିପରି ସାଧ୍ୱୀ ଓ ସରଳହୃଦୟା ଥିଲେ । ସେ ଦିଲୀପଙ୍କୁ ନିଜର ପ୍ରାଣଠାରୁ ବଳି ଅଧିକ ଆଦର କରୁଥିଲେ । ନିଜର ମନଲାଖି ପ୍ରାଣପ୍ରିୟା ପତ୍ନୀ ସୁଦକ୍ଷିଣାଙ୍କୁ ପାଇ ଦିଲୀପ ପ୍ରସନ୍ନ ହୋଇଥିଲେ । ସେ ଥିଲେ ସପ୍ତଦ୍ୱୀପା ବସୁମତୀର ସ୍ୱାମୀ । ତାଙ୍କ ରାଜ୍ୟରେ ବର୍ଷା ଯଥାକାଳରେ ହେଉଥିଲା । ବ୍ରାହ୍ମଣମାନେ ବିଧିପୂର୍ବକ ଯଜ୍ଞାଦି କାର୍ଯ୍ୟ କରୁଥିଲେ । ଚାରି ବର୍ଣ୍ଣର ଲୋକେ ଯଥାବିଧି ସ୍ୱଧର୍ମ ପାଳନ କରି ସନ୍ତୋଷରେ ଥିଲେ । ଗାଈଗୋରୁ ପର୍ଯ୍ୟାପ୍ତ କ୍ଷୀର ଦେଉଥିଲେ । ସ୍ତ୍ରୀମାନେ ପତିପରାୟଣା ଥିଲେ । ସେମାନେ ଭୁଲ୍‌ରେ ବି ପରପୁରୁଷ କଥା ମନରେ ଭାବୁ ନଥିଲେ । ପୁତ୍ର ପିତାଙ୍କର ଓ ଶିଷ୍ୟ ଆଚାର୍ଯ୍ୟଙ୍କର ବଶୀଭୂତ ଥିଲେ । ତାଙ୍କ ରାଜ୍ୟରେ ବିଧବା ନଥିଲେ କି କେହି ଅକାଳରେ ମୃତ୍ୟୁବରଣ କରୁ ନଥିଲେ ।

ରାଜକର୍ମଚାରୀମାନେ ଚତୁର ଓ ସ୍ୱାମୀଭକ୍ତ ଥିଲେ । ମନ୍ତ୍ରୀମାନେ ସର୍ବଦା ରାଜ୍ୟର କଲ୍ୟାଣ କାମନା କରୁଥିଲେ । ମହାରାଜଙ୍କ କୋଷ ଅକ୍ଷୟ ଥିଲା । କେହି ତାଙ୍କର ଶତ୍ରୁ ନଥିଲେ । ସମସ୍ତେ ତାଙ୍କର ଅଧୀନତା ସ୍ୱୀକାର କରୁଥିଲେ । ଏତେ ସୁଖ ସମ୍ଭୋଗ ଓ ସନ୍ତୋଷ ଭିତରେ ଥାଇ ମଧ୍ୟ ମହାରାଜ ଦିଲୀପଙ୍କ ମନରେ ସୁଖ ନଥିଲା । କୌଣସି ସନ୍ତାନ ସନ୍ତତି ନ ଥିବାରୁ ମନୁବଂଶର ପରମ୍ପରା କପର

ସୁରକ୍ଷିତ ହେବ ତାହାହିଁ ସେ ସର୍ବଦା ଚିନ୍ତା କରୁଥିଲେ । ଇକ୍ଷ୍ୱାକୁ କୁଳ କଣ ତାଙ୍କଠାରୁ ଶେଷ ହୋଇଯିବ, ଏହି ଚିନ୍ତାରେ ସେ ବ୍ୟଥିତ ଥିଲେ । ତାଙ୍କ ପତ୍ନୀ ସୁଦକ୍ଷିଣା ଶୁଭଲକ୍ଷଣଯୁକ୍ତା ଥିଲେ । ତାଙ୍କର ବନ୍ଧ୍ୟା ହେବାର କୌଣସି କାରଣ ନଥିଲା । ତଥାପି ବିବାହର ଦୀର୍ଘକାଳ ପରେ ମଧ୍ୟ କୌଣସି ସନ୍ତାନ ହେଲେନାହିଁ । ସେଥିପାଇଁ ସୁଦକ୍ଷିଣାଙ୍କ ମୁଖକମଳ ସର୍ବଦା ମ୍ଳାନ ଦେଖାଯାଉଥିଲା ।

ସ୍ୱାମୀ ଓ ସ୍ତ୍ରୀ ଉଭୟେ ପରସ୍ପରର ଭାବ ଅନୁଭବ କରୁଥିଲେ । ଦିନେ ରାଜା କହିଲେ—"ପ୍ରିୟେ ! ଏପର୍ଯ୍ୟନ୍ତ ଆମର ବଂଶରକ୍ଷାକାରୀ ପୁତ୍ର ଜନ୍ମହେଲା ନାହିଁ । ଆମେ କୁଳଗୁରୁ ବଶିଷ୍ଠଙ୍କ ପାଖକୁ ଏହାର କାରଣ ପଚାରିବା ଏବଂ ସେ ଏଥିପାଇଁ ଯେଉଁ କାର୍ଯ୍ୟ କରିବାକୁ ଆଦେଶ ଦେବେ ତାହା କରିବା ।"

ରାଜାଙ୍କ କଥାକୁ ଅନୁମୋଦନ କରି ରାଣୀ କହିଲେ—"ପ୍ରାଣନାଥ ! ମୁଁ ବହୁତ ଦିନ ହେଲା ସେଇକଥା ଭାବୁଥିଲି । କିନ୍ତୁ ଲଜ୍ଜାବଶତଃ କିଛି କହିପାରି ନାହିଁ ।"

ନିଜ ପତ୍ନୀଙ୍କର ଅନୁରୂପ ମନୋଭାବ ବୁଝିପାରି ରାଜା ରଥ ପ୍ରସ୍ତୁତ କରିବା ପାଇଁ ଆଦେଶ ଦେଲେ ଏବଂ ରାଣୀଙ୍କୁ ସାଙ୍ଗରେ ନେଇ ବଶିଷ୍ଠଙ୍କୁ ସାକ୍ଷାତ କରିବା ନିମିତ୍ତ ବାହାରି ପଡ଼ିଲେ । ରାଜା ଓ ରାଣୀଙ୍କ ସୁରକ୍ଷା ରଥ ଆଗରେ ଓ ପଛରେ ବହୁ ସୈନ୍ୟସାମନ୍ତ ଚଳିଲେ । ରାଜା ସେମାନଙ୍କୁ ସମ୍ବୋଧନ କରି କହିଲେ—"ଆଜି ମୋର ସୈନ୍ୟସାମନ୍ତଙ୍କର ଆବଶ୍ୟକତା ନାହିଁ । ଆମର ଗୁରୁଦେବଙ୍କ ଆଶ୍ରମକୁ ମୁଁ ଯାଉଛି । ସେଠାକୁ ମୁଁ ଏକା ଯିବି । ରାଜାଙ୍କ ଆଦେଶ ପାଇ ସେବକ, ସୈନ୍ୟସାମନ୍ତ ଫେରି ଆସିଲେ । ରାଣୀଙ୍କ ସହିତ ହସି ଖେଳି, ଖୁସିଗପ କରି ନାନାପ୍ରକାର ବୃକ୍ଷଲତା, ଫଳ ଫୁଲ ଦେଖି ଦେଖି ରାଜା ଯାଇ ମୁନିଙ୍କ ଆଶ୍ରମ ପାଖରେ ପହଞ୍ଚିଲେ । ରଥ ଶବ୍ଦ ଶୁଣି ଆଶ୍ରମର ମୁନିକୁମାରମାନେ ଆସି ରଥ ଚାରିପାଖରେ ଘେରିଗଲେ । ମୟୂର ମେଘଗର୍ଜନ ବୋଲି ଭାବି ନାଚିବାକୁ ଲାଗିଲା । ଆଶ୍ରମର ମୃଗମାନେ ଚକିତ ହୋଇ ଚାହିଁରହିଲେ । ଗଛଲତାରେ ବସିଥିବା ପକ୍ଷୀମାନେ କଳରବ କରିବାକୁ ଲାଗିଲେ । ରାଜା ପ୍ରଥମେ ନିଜେ ତଳକୁ ଆସି ରାଣୀଙ୍କୁ ରଥରୁ ଓହ୍ଲାଇ ଆଣିଲେ । ରାଜା ଆଶ୍ରମରେ ଥିବା କୁଡ଼ିଆ ଘରଗୁଡ଼ିକୁ ଦେଖି ଦେଖି ଯଜ୍ଞ ଭୂମିର ଧୂଆଁକୁ ଲକ୍ଷ୍ୟକରି ଚାଲିବାକୁ ଲାଗିଲେ ଏବଂ ତାଙ୍କ ପଛରେ ସନ୍ଧ୍ୟାକାଳୀନ ଜ୍ୟୋତ୍ସ୍ନାପରି ସୁଦକ୍ଷିଣା ସଂଯତ ବେଶଭୂଷାରେ ଅନୁଗମନ କରୁଥିଲେ ।

ଗୁରୁଦେବ ବଶିଷ୍ଠ ଯଜ୍ଞକାର୍ଯ୍ୟ ସାରି ନିଜର ଶିଷ୍ୟମାନଙ୍କ ମଧ୍ୟରେ ଏକ ଗହଳିଆ ଗଛ ଛାଇରେ ବସିଥିଲେ । ରାଜା ନିଜର ବିଶାଳ ବାହୁ ପ୍ରସାରିତ କରି

ଗୁରୁଙ୍କ ପାଦତଳେ ପ୍ରଣାମ କଲେ । ରାଜାଙ୍କ ମଣିମୟ ମୁକୁଟ ପ୍ରଭାରେ ଗୁରୁଙ୍କ ପାଦ ନଖପଂକ୍ତି ଚକ୍‌ମକ୍‌ ହେବାର ଦେଖାଗଲା । କୁଳଗୁରୁ ବଶିଷ୍ଠ ଉଠିପଡ଼ି ମହାରାଜ ଦଲୀପଙ୍କୁ ଆଲିଙ୍ଗନ କଲେ ଓ କୁଶଳପ୍ରଶ୍ନ ପଚାରିଲେ । ଏହାପରେ ଲଜ୍ଜାବତୀ ମହାରାଣୀ ସୁଦକ୍ଷିଣା ମୁନିଙ୍କ ଚରଣରେ ପ୍ରଣାମ କଲେ ଓ ଅରୁନ୍ଧତୀଙ୍କ ପାଦବନ୍ଦନା କରି ତାଙ୍କରି ପାଖରେ ବସିଲେ ।

କୁଳଗୁରୁ ବଶିଷ୍ଠ ରାଜ୍ୟର ମନ୍ତ୍ରୀ, ପୁରୋହିତ ତଥା ପ୍ରଜାଙ୍କ କୁଶଳ କଥା ପଚାରି ବୁଝିବାପରେ ରାଜାଙ୍କ ଆଗମନର ଉଦ୍ଦେଶ୍ୟ କଣ ବୋଲି ପଚାରିଲେ । ରାଜା ନିଜର କୁଶଳ କଥା କହି ମୁନିମାନଙ୍କ ତପସ୍ୟା, ଆଶ୍ରମ, ମୃଗ, ପକ୍ଷୀ, ଅଗ୍ନି, ବୃକ୍ଷଲତାଦିର ଭଲମନ୍ଦ ବୁଝିସାରି ନିଜେ ଆସିଥିବାର କାରଣ ଜଣାଇଲେ । ମୁନି ବଶିଷ୍ଠ ସବୁ ଶୁଣିସାରିବା ପରେ କିଛିସମୟ ଧ୍ୟାନମଗ୍ନ ହୋଇ ରହିଲେ । ଧ୍ୟାନ ସରିବା ପରେ ମୁନି କହିଲେ—"ରାଜନ୍‌ ! ମୁଁ ତୁମକୁ ପୁତ୍ରଦେଇ ପାରିବି ନାହିଁ । ଯଦି ମୋର ଗାଈ ନନ୍ଦିନୀ ରାଜିହିବ ତେବେ ତାହାରି କରୁଣାରୁ ତୁମର ପୁତ୍ରହେବ ।"

ରାଜା ଗୁରୁଙ୍କ କଥା ଶୁଣି ଉଦାସୀନ ହୋଇଗଲେ । ଏହି ସମୟରେ ଚରିବୁଲି ସାରି ନନ୍ଦିନୀ ଆଶ୍ରମକୁ ଫେରିଆସିଲା । ରାଜା ଉଠିଯାଇ ନନ୍ଦିନୀଙ୍କୁ ପ୍ରଣାମ କଲେ । ନନ୍ଦିନୀ ଦୌଡ଼ି ଦୌଡ଼ି ନିଜ ବାଛୁରି ପାଖକୁ ଚାଲିଗଲା ।

ମୁନି କହିଲେ—"ରାଜନ୍‌ ! ଆପଣ ଧେନୁସେବା ବ୍ରତପାଳନ କରନ୍ତୁ । ନିରନ୍ତର ଧେନୁର ଅନୁଗମନ କରନ୍ତୁ । ଧେନୁ ଇଚ୍ଛା ଓ ପରିଚର୍ଯ୍ୟା ସହିତ ନିଜର ଇଚ୍ଛା ଓ ଚର୍ଯ୍ୟାକୁ ମିଶାଇ ଦିଅନ୍ତୁ । ସେ ତୁମର ମନୋରଥ ପୂର୍ଣ୍ଣ କରିପାରିବ ।"

ଗୁରୁଙ୍କ ଆଦେଶ ଅନୁସାରେ ରାଜା ଓ ରାଣୀ ନନ୍ଦିନୀଙ୍କ ସେବାରେ ଲାଗି-ପଡ଼ିଲେ । ସକାଳେ ଗୋ-ଦୋହନ ପରେ ରାଜା ନନ୍ଦିନୀଙ୍କ ପଛେ ପଛେ ଅରଣ୍ୟକୁ ଗଲେ । କେବେହେଲେ ତା'ର ଗତିପଥର ବିରୋଧ ନକରି ସେ ଯେଉଁଆଡ଼େ ଯାଉଥିଲା ରାଜା ଦଲୀପ ତା' ପଛେ ପଛେ ସେଇଆଡ଼େ ଯାଉଥିଲେ । ସେ ଠିଆହୋଇ ରହିଲେ ଦଲୀପ ଠିଆ ହେଉଥିଲେ । ସେ ଶୋଇଲେ ଦଲୀପ ତ କୁ ଆଉଁସି ଦେଉ-ଥିଲେ । କଅଁଳିଆ ଦୂବଘାସ ଉପାଡ଼ି ତାକୁ ଖୁଆଉଥିଲେ । ଚରିବୁଲି ସାରି ଯେତେବେଳେ ସନ୍ଧ୍ୟାରେ ସେ ଆଶ୍ରମକୁ ଫେରୁଥିଲା ଦଲୀପ ଫେରି ଆସୁଥିଲେ । ଖଣ୍ଡିଏ ବସ୍ତ୍ର ଧରି ସେ ନନ୍ଦିନୀ ଦେହରୁ ମାଛିମଶା ଘଉଡ଼ାଇ ଦେଉଥିଲେ ।

ଦିନେ ନନ୍ଦିନୀ ଚରିବାକୁ ଯାଇ ଏକ ଗୁମ୍ଫା ଭିତରକୁ ଚାଲିଗଲା । ସେଠାରେ ଥିବା ଏକ ସିଂହ ନନ୍ଦିନୀକୁ ମାଡ଼ି ବସିଲା । ରାଜା ସିଂହକୁ ମାରିବା ପାଇଁ ଧନୁରେ

ବାଣ ଚଢ଼ାଇଲେ । କିନ୍ତୁ ତାଙ୍କର ଚେଷ୍ଟା ବିଫଳ ହେଲା । ହାତ ତାଙ୍କର ସ୍ତମ୍ଭିତ ହୋଇଗଲା । ସିଂହ ହସି ହସି ରାଜାଙ୍କୁ ମଣିଷ ସ୍ୱରରେ ନିଜର ପରିଚୟ ଦେଇ କହିଲା—"ମୁଁ ଗୌରୀ ଦେବୀଙ୍କ ମାନସ ପୁତ୍ର । ତାଙ୍କର ଗଛ ପତ୍ର ରକ୍ଷା କରିବା ପାଇଁ ନିଯୁକ୍ତ ହୋଇଛି । ଯେ ଏଠାକୁ ଆସେ ସେ ମୋର ଆହାର ହୁଏ । ଏବେ ଏ ଗାଈକୁ ମୁଁ ଆଉ ଛାଡ଼ିବି ନାହିଁ ।"

ରାଜା ସିଂହକୁ ବହୁ ଅନୁନୟ ବିନୟ କଲେ ମଧ୍ୟ ଯେତେବେଳେ ସିଂହ କିଛି ଶୁଣିଲା ନାହିଁ ସେତେବେଳେ ସେ କହିଲେ—"ତୁମେ ଗାଈକୁ ଛାଡ଼ିଦିଅ ଆଉ ମୋତେ ଖାଅ ।"

ସିଂହ ରାଜାଙ୍କ କଥାରେ ସମ୍ମତ ହୋଇ ନନ୍ଦିନୀଙ୍କୁ ଛାଡ଼ିଦେଲା । ରାଜା ସିଂହ ଆଗରେ ଯେତେବେଳେ ଶୋଇପଡ଼ିଲେ ସେତେବେଳେ ନନ୍ଦିନୀ ହସି ଦେଲା । ରାଜା ଦେଖିଲେ ସିଂହ ନାହିଁ କି କୁମ୍ଭ ନାହିଁ । ନନ୍ଦିନୀ କେବଳ ଠିଆ ହୋଇଛନ୍ତି । ରାଜା ଆଶ୍ଚର୍ଯ୍ୟାନ୍ୱିତ ହେବାର ଦେଖି ନନ୍ଦିନୀ କହିଲେ—"ରାଜନ୍ ! ଆଜିଠାରୁ ଆପଣ ଶାପମୁକ୍ତ ହେଲେ । ଥରେ ଆପଣ ସ୍ୱର୍ଗରୁ ନିଜ ରାଜଧାନୀକୁ ଆସୁଥିଲେ । ମୋର ମା' କାମଧେନୁ କଳ୍ପବୃକ୍ଷ ତଳେ ଶୋଇ ପାକୁଳି କରୁଥିଲା । ତୁମେ ପତ୍ନୀ ସୁଦକ୍ଷିଣାଙ୍କ ଋତୁକାଳ ଚିନ୍ତାରେ ମଗ୍ନ ଥିଲ । ସୁଦକ୍ଷିଣାଙ୍କ ଋତୁରକ୍ଷା କିପରି ହେବ ସେଇ ଚିନ୍ତାରେ ବ୍ୟସ୍ତ ଥାଇ ତୁମେ ମୋର ମା'ଙ୍କୁ ପ୍ରଦକ୍ଷିଣ କଲ ନାହିଁ କି ପ୍ରଣାମ ମଧ୍ୟ କଲ ନାହିଁ । ସେଥିପାଇଁ ସେ ତୁମକୁ ଅଭିଶାପ ଦେଇଥିଲା— ଯେ ପର୍ଯ୍ୟନ୍ତ ତୁମେ ଗୋବଂଶର ସେବା ନ କରିବ ସେ ପର୍ଯ୍ୟନ୍ତ ତୁମର ସନ୍ତାନ ସନ୍ତତି ହେବେ ନାହିଁ । ତୁମେ ପ୍ରାଣପଣେ ମୋତେ ରକ୍ଷା କଲ । ମୁଁ ଆଶୀର୍ବାଦ ଦେଉଛି, ତୁମର ବିଶ୍ୱବିଜୟୀ ଧର୍ମାତ୍ମା ତ୍ରିଲୋକ ବିଖ୍ୟାତ ଯଶସ୍ୱୀ ପୁତ୍ର ଜନ୍ମ ହେବ ।"

ନନ୍ଦିନୀଙ୍କ ଆଶୀର୍ବାଦ ଲାଭ କରି ରାଜା ଆନନ୍ଦିତ ହେଲେ । ନନ୍ଦିନୀଙ୍କ ସହିତ ଆଶ୍ରମକୁ ଫେରିବା ପରେ ରାଜାଙ୍କ ଠାରୁ ମୁନି ବଶିଷ୍ଠ ସବୁ କଥା ବୁଝିପାରିଲେ । ବିଧିବଦ୍ଧ ଯଜ୍ଞ କରାଇ ରାଜା ଓ ରାଣୀ ଆଶ୍ରମବାସୀଙ୍କୁ ଭୋଜି ଦେଇ ସନ୍ତୁଷ୍ଟ କଲେ । ଗୁରୁଙ୍କଠାରୁ ଅନୁମତି ନେଇ ଅଗ୍ନି, ଅରୁନ୍ଧତୀ ଓ ନନ୍ଦିନୀଙ୍କୁ ପ୍ରଣାମ କରି ରାଜା ଓ ରାଣୀ ରାଜଧାନୀ ଫେରି ଆସିଲେ । ଯଥା ସମୟରେ ସୁଦକ୍ଷିଣା ଗର୍ଭବତୀ ହେଲେ ଓ ଦଶମ ମାସରେ ପୁଅଟିଏ ଜନ୍ମ କଲେ । ଗୁରୁ ବଶିଷ୍ଠ ସେହି ପୁଅର ନାମ ଦେଲେ ରଘୁ । ତାଙ୍କର ନାମ ଅନୁସାରେ ଇକ୍ଷ୍ୱାକୁ ବଂଶ ରଘୁବଂଶ ନାମରେ ବିଖ୍ୟାତ ହେଲା ।

ମହାରାଜ ଦିଲୀପ ବହୁ ଯଜ୍ଞ କଲେ । ସବୁପ୍ରକାର ଦାନ ଦେଇ ଗୁରୁଜନ-ମାନଙ୍କୁ ସମ୍ମାନିତ କଲେ । ଶେଷରେ ରଘୁଙ୍କ ହାତରେ ରାଜ୍ୟଭାର ସମର୍ପଣ କରି ବନକୁ

ପତ୍ନୀ ପତିଙ୍କୁ ପ୍ରେମ ଓ ସେବାରେ ବାନ୍ଧି ପକାଇଲା ପରି ମହାରାଜ ରଘୁ ନିଜ ଗୁଣରେ ପ୍ରଜାଙ୍କୁ ବାନ୍ଧି ରଖିଲେ । ରାଜାଙ୍କର ପରୋପକାରିତା ଦେଖି ପରୋପକାରୀ ସାଧୁ ମଧ୍ୟ ଲଜ୍ଜିତ ହେଉଥିଲେ । ସେ ଏପରି ପଣ୍ଡିତ ଥିଲେ ଯେ ଦେବବ୍ରତ ବ୍ରାହ୍ମଣମାନେ ତାଙ୍କ ପାଖକୁ ପରାମର୍ଶ କରିବା ପାଇଁ ଆସୁଥିଲେ । ତାଙ୍କର ସୌନ୍ଦର୍ଯ୍ୟ ଓ ତେଜ ପାଖରେ ଚନ୍ଦ୍ର ସୂର୍ଯ୍ୟ ମଳିନ ପଡ଼ିଯାଉଥିଲେ । ତାଙ୍କର ଧର୍ମପ୍ରାଣତାରେ ବଡ଼ ବଡ଼ ମୁନିଋଷି ନତମସ୍ତକ ହୋଇ ଯାଉଥିଲେ । ସେ କୁବେରଙ୍କଠାରୁ ବଳି ଉଦାର ଥିଲେ । ଏତେ ଯଜ୍ଞ କରୁଥିଲେ ଯେ ଅଗ୍ନି ଘୃତଭୋଜନ କରି କରି ଅଗ୍ନିମାନ୍ଦ୍ୟ ରୋଗାକ୍ରାନ୍ତ ହୋଇ ପଡ଼ିଲେ । ତାଙ୍କୁ ଚିକିତ୍ସା କରିବାରେ ଅଶ୍ୱିନୀ କୁମାରଙ୍କର ସମସ୍ତ ଔଷଧ ଶେଷ ହୋଇଗଲା । ସର୍ବସ୍ୱ ଦାନ କରିଦେଲେ ମଧ୍ୟ ଦାନବୀର ରଘୁଙ୍କର ମନ ସନ୍ତୁଷ୍ଟ ହେଉ ନ ଥିଲା ।

ମହାରାଜ ରଘୁଙ୍କର ଦାନଦେବା ସମ୍ପର୍କରେ ଏକ କାହାଣୀ ଅଛି । ମହାରାଜ ରଘୁ ଅଯୋଧ୍ୟାରେ ରାଜତ୍ୱ କରୁଥିବା ସମୟରେ ବରତନ୍ତୁ ନାମକ ଋଷି ବଣରେ ରହି ଯାଗଯଜ୍ଞ କରୁଥିଲେ । ମହର୍ଷିଙ୍କ ପାଖରେ ରହି ଅନେକ ଶିଷ୍ୟ ବିଦ୍ୟା ଅଧ୍ୟୟନ କରୁଥିଲେ । ସେହି ଶିଷ୍ୟମାନଙ୍କ ମଧ୍ୟରେ କୌତ୍ସ ନାମରେ ଜଣେ ଶିଷ୍ୟ ଥିଲା । କୌତ୍ସ ମୁନି ଥିଲେ ସଦାଚାରଯୁକ୍ତ, ଗୁରୁଭକ୍ତ ଓ ସନ୍ତ ସ୍ୱଭାବସମ୍ପନ୍ନ । ତାଙ୍କ ସେବାରେ ମହର୍ଷି ବରତନ୍ତୁ ସନ୍ତୁଷ୍ଟ ଥିଲେ । ବିଦ୍ୟା ଅଧ୍ୟୟନ ଶେଷ ହେବା ପରେ ସେ ଗୁରୁଙ୍କୁ ଗୁରୁଦକ୍ଷିଣା ନେବାପାଇଁ ପ୍ରାର୍ଥନା କଲେ ।

ଗୁରୁ ବରତନ୍ତୁ କହିଲେ—"ବାବୁ ! ତୁ ମୋର ବହୁତ ସେବା କରିଛୁ । ସେହି ସେବାକୁ ମୁଁ ଗୁରୁଦକ୍ଷିଣା ରୂପେ ଗ୍ରହଣ କଲି । ନିୟମ ଅନୁସାରେ ଚାଲିଯାଇ ଦେଇ ତୁ ବିବାହ ହୋଇ ଗାର୍ହସ୍ଥ୍ୟ ଧର୍ମ ପାଳନ କର । ଆଉ ସ୍ୱତନ୍ତ୍ର ଭାବେ ଗୁରୁଦକ୍ଷିଣା ଆବଶ୍ୟକ ନାହିଁ ।"

କୌତ୍ସ କହିଲେ—"ନାଁ ଗୁରୁଦେବ ! ତାହା କିମିତି ହେବ । ମୁଁ ଆପଣଙ୍କର ବିଶେଷ କିଛି ସେବା କରିବା ପାଇଁ ଇଚ୍ଛୁକ । ଆପଣଙ୍କଠାରୁ ମୁଁ ଚତୁର୍ଦ୍ଦଶ ବିଦ୍ୟା ଅଧ୍ୟୟନ କରିଛି । ତେଣୁ ମୋତେ ଉପଯୁକ୍ତ ଗୁରୁଦକ୍ଷିଣା ଦେବାକୁ ପଡ଼ିବ । ଆପଣ ଦୟାକରି ଆଦେଶ ଦିଅନ୍ତୁ ।"

ଗୁରୁ କହିଲେ—"ବାବୁ ! ସେବାଠାରୁ ବଳି ଆଉ ଶ୍ରେଷ୍ଠ ବସ୍ତୁ କିଛି ନାହିଁ । ଧନ ଆଦି ଅତ୍ୟନ୍ତ ତୁଚ୍ଛ ଓ ନଶ୍ୱର ପଦାର୍ଥ । ଗୁରୁଦକ୍ଷିଣାର ଅର୍ଥ ହେଉଛି, ଗୁରୁ ସନ୍ତୁଷ୍ଟ ହୋଇ ବିଦ୍ୟା ଫଳବତୀ ହେଉ ବୋଲି ଶିଷ୍ୟକୁ ଆଶୀର୍ବାଦ ଦେବେ । ତେଣୁ ତୁମ ସେବାରେ ସନ୍ତୁଷ୍ଟ ହୋଇ ମୁଁ ତୁମକୁ ଆଶୀର୍ବାଦ ଦେଉଛି ।"

କିନ୍ତୁ କୌତ୍ସ ସନ୍ତୁଷ୍ଟ ହୋଇ ପାରିଲେ ନାହିଁ । ସେ ଆଗ୍ରହର ସହିତ କହିଲେ—"ନାଁ ଗୁରୁଦେବ ! ଆପଣ ଦକ୍ଷିଣା ସ୍ୱରୂପ କଣ ନେବେ କୁହନ୍ତୁ ।"

ଶିଷ୍ୟର ବାରମ୍ବାର ଅନୁରୋଧରେ ଗୁରୁ ବିରକ୍ତ ଓ କ୍ରୋଧାନ୍ୱିତ ହୋଇ କହିଲେ—"ଆଚ୍ଛା ଠିକ୍ ଅଛି । ତୁ ମୋ' ପାଖରୁ ଚଉଦ ବିଦ୍ୟା ଶିଖିଛୁ । ଯା, ଚଉଦ କୋଟି ସୁବର୍ଣ୍ଣ ମୁଦ୍ରା ଆଣି ମୋତେ ଦେବୁ ।"

ଗୁରୁଙ୍କ ଆଦେଶ ଶୁଣି କୌତ୍ସ ତାଙ୍କ ପାଦତଳେ ପ୍ରଣାମ ଜଣାଇ ମୁଦ୍ରା ସଂଗ୍ରହ ପାଇଁ ଚାଲିଗଲେ ।

ମହର୍ଷି ସୂତ କହିଲେ—"ମୁନିଗଣ ! ମୁଁ ଯେଉଁ ସମୟର କଥା କହୁଛି ସେତେବେଳେ ଗୁରୁଙ୍କୁ ଦକ୍ଷିଣା ଦେବାପାଇଁ ଆସୁଥିବା ସ୍ନାତକ, ବ୍ରହ୍ମଚାରୀ ଓ କନ୍ୟା-ଦାନ ପାଇଁ ଆସୁଥିବା ପିତା ଯାହାକୁ ଯାହା ମାଗୁଥିଲେ ସେଠାରୁ ବିଫଳ ହୋଇ ଫେରୁ ନଥିଲେ । ସମସ୍ତେ ଶକ୍ତି ଅନୁସାରେ ଯାଚକଙ୍କୁ ସମ୍ମାନ ଦେଉଥିଲେ ଓ ତା'ର ପ୍ରାର୍ଥନା ପୂରଣ କରୁଥିଲେ । କୌତ୍ସ ମୁନି ଭାବିଲେ ଚଉଦକୋଟି ସ୍ୱର୍ଣ୍ଣମୁଦ୍ରା ଅଯୋଧ୍ୟାର ଅଧିପତି ମହାରାଜ ରଘୁଙ୍କ ବ୍ୟତୀତ ଅନ୍ୟ କେହି ଦେଇପାରିବେ ନାହିଁ । ଏହାଭାବି ସେ ଅଯୋଧ୍ୟାକୁ ଗଲେ ।

ସେହି ସମୟରେ ମହାରାଜ ରଘୁ ବିଶ୍ୱଜିତ୍ ନାମରେ ଏକ ଯଜ୍ଞ କରୁଥିଲେ । ସେଥିରେ ସେ ସର୍ବସ୍ୱ ଦାନକରି ଦେଇଥିଲେ । ଏପରିକି ନିଜର ବସ୍ତ୍ର, ଭୂଷଣ, ଧାତୁପାତ୍ର ବ୍ରାହ୍ମଣଙ୍କୁ ଦାନକରି ଦେଇଥିଲେ । ସେତେବେଳେ ସେ ମାଟି-ପାତ୍ରରେ ଖାଉଥିଲେ । ଭୂମିରେ ଶୋଉଥିଲେ । ଯେତେବେଳେ କୌତ୍ସମୁନି ପହଞ୍ଚିଲେ ସେତେବେଳେ ରାଜା ମାଟିପାତ୍ରରେ ଜଳ ଆଣି ତାଙ୍କ ପାଦ ଧୋଇଦେଲେ ଆଉ କୁଶ ଆସନରେ ବସାଇ ସତ୍କାର କଲେ ।

ରାଜା ପଚାରିଲେ—"ବ୍ରହ୍ମନ୍ ! ଆପଣ କେଉଁଠୁ ଆସିଲେ ?"

କୌତ୍ସ କହିଲେ—"ରାଜନ୍ ! ମୁଁ ମହର୍ଷି ବରତନ୍ତୁଙ୍କ ଆଶ୍ରମରୁ ଆସିଛି । ମୁଁ ତାଙ୍କର ଶିଷ୍ୟ ।"

ଆନନ୍ଦିତ ହୋଇ ରାଜା କହିଲେ—"ବ୍ରହ୍ମନ୍ ! ମୋର ବଡ଼ ସୌଭାଗ୍ୟ ଆଜି । ଭଗବାନ୍ ବରତନ୍ତୁଙ୍କର ମୋ' ପ୍ରତି ବଡ଼ ଦୟା । ଆଶ୍ରମରେ ସବୁ କୁଶଳତ ? ଆପଣଙ୍କ ଆଖପାଖରେ ହେଉଥିବା ନୀବାର ଶସ୍ୟ ଅତ୍ୟନ୍ତ ଉପାଦେୟ । ତା'ର ସ୍ୱାଦୁ ଅବର୍ଣ୍ଣନୀୟ । ବିନା କର୍ଷଣରେ ତାହା ଉତ୍ପାଦିତ ହୁଏ । ଯେଉଁ ମୁନିମାନଙ୍କର ସନ୍ତାନ ସନ୍ତତି ନଥାନ୍ତି ସେମାନେ ବୃକ୍ଷଗୁଡ଼ିକୁ ପୁତ୍ରପରି ପାଳନ କରନ୍ତି । ମହର୍ଷି

ବରତନ୍ତୁଙ୍କ ଆଶ୍ରମ ମୁଁ ଦେଖିଛି । ସେ ଅନେକ ଗଛ ଲଗାଇଥିଲେ । ସେ ସବୁ ବଡ଼ହୋଇ ଫୁଲ ଫଳ ଧରି ସାରିଥିବ । ଆଶ୍ରମରେ ମୃଗମାନେ ସ୍ୱଚ୍ଛନ୍ଦରେ ବୁଲୁଥିବେ । ଆଶ୍ରମରେ ଅନେକ ଗହଳିଆ ବଡ଼ ଗଛ ଅଛି । ଜଳର ଅଭାବ ନାହିଁ, କାରଣ ଗଙ୍ଗାର ଧାରା ଆଶ୍ରମ ନିକଟରେ ପ୍ରବାହିତ ହେଉଛି । ବରତନ୍ତୁଙ୍କ ଆଶ୍ରମରୁ କେହି ବିଫଳ ମନୋରଥ ହୋଇ ଫେରନ୍ତି ନାହିଁ । କୁହନ୍ତୁ, ଭଗବାନ୍ ବରତନ୍ତୁ ମୋତେ କିଣ ଆଦେଶ ଦେଇଛନ୍ତି କି ? ଆପଣ ସେହି ଖବର ନେଇ ଆସିଛନ୍ତି ନା ମୋତେ ଦର୍ଶନ ଦେଇ କୃତାର୍ଥ କରିବାପାଇଁ ଆସିଛନ୍ତି ? ଅପଣ ଯଦି କିଛି ପ୍ରୟୋଜନ ପାଇଁ ଆସିଛନ୍ତି ତେବେ ବିନା ଦ୍ୱିଧାରେ ତାହା ପ୍ରକାଶ କରନ୍ତୁ ।''

କୌତ୍ସ କହିଲେ - ''ରାଜନ୍ ! ମୋର ଗୁରୁଦେବ ମୋତେ ଆପଣଙ୍କ ପାଖକୁ ପଠାଇନାହାନ୍ତି । ମୁଁ ନିଜେ ଆସିଛି । ମୋର ପାଠପଢ଼ା ଶେଷ ହୋଇଛି । ମୁଁ ଏବେ ଗୃହସ୍ଥ ହେବାପାଇଁ ଇଚ୍ଛା କରୁଛି ।''

ମହାରାଜ ରଘୁ ଆନନ୍ଦିତ ହୋଇ କହିଲେ—''ହଁ ବ୍ରହ୍ମନ୍ ! ଏବେ ଆପଣଙ୍କର ଗୃହସ୍ଥ ହେବାର ସମୟ ଆସିଛି । ଯେଉଁ ଗାର୍ହସ୍ଥ୍ୟାଶ୍ରମରେ ସବୁ ପ୍ରାଣୀଙ୍କର ଉପକାର ହୁଏ ସେହି ଆଶ୍ରମକୁ ଆପଣଙ୍କ ପରି ବିଦ୍ୱାନ୍ ନ ଆସିଲେ ତାହା ବିଷୟବାସନାର କେନ୍ଦ୍ର ପାଲଟିଯିବ । ଗୁରୁ ସେଥିପାଇଁ ଅନୁମତି ଦେଇଛନ୍ତି, ଏହା ବଡ଼ ଆନନ୍ଦର ବିଷୟ । ମୁଁ ଆପଣଙ୍କୁ କିପରିଭାବେ ସାହାଯ୍ୟ କରିପାରିବି, କୁହନ୍ତୁ ।''

ଟିକିଏ ସଙ୍କୁଚିତ ହୋଇ କୌତ୍ସ କହିଲେ—''ରାଜନ୍ ! ମୋତେ ଗୁରୁଦକ୍ଷିଣା ଦେବାକୁ ପଡ଼ିବ । ମୁଁ କିଛି ମାଗିବାପାଇଁ ଆପଣଙ୍କ ପାଖକୁ ଆସିଛି । କିନ୍ତୁ ଦୁର୍ଭାଗ୍ୟବଶତଃ ମୋର ଆସିବାରେ ବିଳମ୍ବ ହେଲା । ଆପଣ ନିଜର ସର୍ବସ୍ୱ ଦାନ କରି ସାରିଛନ୍ତି । ନିଜେ ମାଟିପାତ୍ର ବ୍ୟବହାର କରୁଛନ୍ତି । ତେଣୁ ପୁନା ଆଉ କେଉଁଠୁ ପାଇବେ । ଏବେ ମୋତେ ଅନ୍ୟ କୌଣସି ଧନିକର ଦ୍ୱାରସ୍ଥ ହେବାକୁ ପଡ଼ିବ । ଏହା କହି କୌତ୍ସ ଯିବାପାଇଁ ଠିଆହେଲେ ।''

ଏହା ଦେଖି ରାଜା ମୁନିଙ୍କୁ ଅଟକାଇ କହିଲେ—''ବ୍ରହ୍ମନ୍ ! ଏପରି ହେବା ଉଚିତ ନୁହେଁ । ରଘୁଙ୍କ ଦୁଆରୁ କେହି ନିରାଶ ହୋଇ ଫେରି ଯାଇପାରିବ ନାହିଁ । ରଘୁଙ୍କ ପାଖକୁ ଆସିଥିବା ଯାଚକ ଫେରିଯାଇ ଅନ୍ୟତ୍ର ପ୍ରାର୍ଥୀ ହେବାର ଆବଶ୍ୟକତା ନାହିଁ ।''

କୌତ୍ସ ଆଶ୍ଚର୍ଯ୍ୟ ହୋଇ କହିଲେ—''ରାଜନ୍ ! ଆପଣ ଏତେ ମୁଦ୍ରା କେଉଁଠୁ ଆଣିବେ ?''

ରାଜା କହିଲେ—"ଯେଉଁଠୁ ଯେତେ ଶୀଘ୍ର ମିଳିବ ଆଣିଦେବି ।"

କୌତ୍ସ କହିଲେ –"ଏତେ ସୁବର୍ଣ୍ଣ ମୁଦ୍ରା କେବଳ କୁବେରଙ୍କ ପାଖରୁ ଶୀଘ୍ର ମିଳିପାରିବ ।"

ରାଜା କହିଲେ—"ଠିକ୍ ଅଛି । ମୁଁ ଯାଇ କୁବେରଙ୍କ ଘର ଆକ୍ରମଣ କରିବି । ଆପଣ ଉନେମାନ ଏଇଠି ବିଶ୍ରାମ କରନ୍ତୁ ।"

ରାଜାଙ୍କ ଆଗ୍ରହ ନୁ ମୁନି କୌତ୍ସ ଏଡ଼ାଇଦେଇ ପାରିଲେ ନାହିଁ । ସେ ଅଗ୍ନିହୋତ୍ରଶାଳାରେ ଯଥାବିଧି ସତ୍କୃତ ହୋଇ ସୁଖରେ ରହିଲେ । ରାଜା କୁବେରଙ୍କ ଉପରେ ଆକ୍ରମଣ କରିବା ସ୍ଥିରକଲେ । ରଘୁଙ୍କ ଯଶ ଓ ପରାକ୍ରମରେ କୁବେର ଆଗରୁ ଶଙ୍କିତ ହୋଇ ପଡ଼ିଥିଲେ । ରାଜାଙ୍କ ସିଦ୍ଧାନ୍ତ ଜାଣି କୁବେର ଡରିଗଲେ । ସେ ରାତି ଭିତରେ ରାଜାଙ୍କ ଭଣ୍ଡାରକୁ ସୁବର୍ଣ୍ଣରେ ପୂର୍ଣ୍ଣ କରିଦେଲେ । ସକାଳେ ଅଳକାପୁରୀ ଯାତ୍ରାପାଇଁ ରାଜା ରଥ ବାହାର କରିବାକୁ ଯେତେବେଳେ ଆଦେଶ ଦେଲେ ସେତେବେଳେ ଅର୍ଥମନ୍ତ୍ରୀ ଆସି ଜଣାଇଲେ ଯେ ଭଣ୍ଡାରର ସମସ୍ତ ଅଂଶ ସୁବର୍ଣ୍ଣରେ ପୂର୍ଣ୍ଣହୋଇ ରହିଛି । ରାଜା ଏହା ଦେଖି ଖୁସିହେଲେ ଏବଂ ସବୁ ସୁନା ଓଟ ପିଠିରେ ଲଦି ମୁନିଙ୍କ ସହିତ ପଠାଇ ଦେବାକୁ ଆଦେଶ ଦେଲେ ।

ମୁନି କୌତ୍ସ ଏତେ ସୁନା ଦେଖି କହିଲେ—ରାଜନ୍ ! ମୁଁ ଏଇ ସୁନା ସବୁ ନେଇ କଣ କରିବି ? ମୋର ମାତ୍ର ଚଉଦ କୋଟି ସୁବର୍ଣ୍ଣ ମୁଦ୍ରା ଆବଶ୍ୟକ ।

ମହାରାଜ ରଘୁ କହିଲେ – "ବ୍ରହ୍ମନ୍ ! ଏତକ ଆପଣଙ୍କ ପାଇଁ ଉଦ୍ଦିଷ୍ଟ । ଏଥିରୁ ପଇସାଟିଏ ବି ମୁଁ ଅନ୍ୟ କାର୍ଯ୍ୟପାଇଁ ବ୍ୟୟ କରିପାରିବି ନାହିଁ ।"

ମହର୍ଷି ସୂତ କହିଲେ—"ମୁନିଗଣ ! ଏହାହିଁ ପ୍ରକୃତ ଉଦାରତା । ରଘୁଙ୍କ ପରି ଦାତା ବିରଳ ଓ କୌତ୍ସଙ୍କ ପରି ସନ୍ତୁଷ୍ଟ ବ୍ରାହ୍ମଣ ମଧ୍ୟ ବିରଳ । ଦାନ ଗ୍ରହଣ କରି କୌତ୍ସମୁନି ରାଜାଙ୍କୁ ଆଶୀର୍ବାଦ ଦେଇ କହିଲେ—ରାଜନ୍ ! ଆପଣଙ୍କର ପିତାମହଙ୍କ ବ୍ରହ୍ମାଙ୍କ ସମାନ ପୁତ୍ରଟିଏ ଜାତହେଉ । ମୁନିଙ୍କ ଆଶୀର୍ବାଦ ବାଣୀ ସଫଳ ହେଲା । ରଘୁଙ୍କ ପତ୍ନୀ ଦଶମ ମାସରେ ପୁଅଟିଏ ଜନ୍ମକଲେ । ସେହି ପୁଅ ଅଜ ନାମରେ ଅଭିହିତ ।

କୁମାର ଅଜ ଖୁବ୍ ସୁନ୍ଦର ଥିଲେ । ସଂସାରର ସମସ୍ତ ସୌନ୍ଦର୍ଯ୍ୟ ତାଙ୍କ ପାଖରେ ଠୁଳହୋଇ ରହିଛି ପରି ମନେ ହେଉଥିଲା । କୁମାର ଅଜ, ବିଦର୍ଭ ରାଜା ଦେଶର ଭୋଜଙ୍କ ଭଉଣୀ ଇନ୍ଦୁମତୀଙ୍କ ସ୍ୱୟମ୍ବରରେ ଯେତେବେଳେ ଯୋଗଦେଲେ

ସେତେବେଳେ ସମବେତ ରାଜନ୍ୟବର୍ଗଙ୍କର ଇନ୍ଦୁମତୀଙ୍କୁ ପାଇବାର ଆଶା ମଉଳି ଗଲା । ଇନ୍ଦୁମତୀ ବରଣମାଳା ଧରି ଚାଲି ଆସି ଯେତେବେଳେ ଅଜଙ୍କ ଆଗରେ ପହଞ୍ଚିଲେ, ସେତେବେଳେ ଚକୋରୀ ଚନ୍ଦ୍ରଙ୍କୁ ଦେଖିଲା ପରି ସ୍ଥିର ହୋଇ ରହିଗଲେ । ଯେପରି ମୁକୁଳିତ ଆମ୍ର କାନନକୁ ଛାଡ଼ି ଭ୍ରମର, ଅଗାଧ ଜଳକୁ ଛାଡ଼ି ମତ୍ସ୍ୟ, ଧନକୁ ଛାଡ଼ି କୃପଣ ଯାଇପାରେ ନାହିଁ, ସେହିପରି ଇନ୍ଦୁମତୀ ଅଜଙ୍କୁ ଛାଡ଼ି ଅନ୍ୟତ୍ର ଯାଇ ପାରିଲେ ନାହିଁ । ଗପ କହୁଥିବା ଲୋକକୁ ଯେପରି ଶୁଣିବା ଲୋକେ ଅନିମେଷ ଦୃଷ୍ଟିରେ ଚାହିଁ ରହନ୍ତି ସେହିପରି ଇନ୍ଦୁମତୀଙ୍କ ଦୃଷ୍ଟି ଅଜଙ୍କ ରୂପ ବିଭବରେ ଲୀନ ହୋଇଗଲା । ଇନ୍ଦୁମତୀଙ୍କର ଆଗ୍ରହ ଦେଖି ଅଜଙ୍କ ବ୍ୟତୀତ ଅନ୍ୟ ରାଜାମାନେ ଦୁଃଖିତ ହେଲେ । କିନ୍ତୁ କେହି କିଛି କରିପାରିଲେ ନାହିଁ । ହିମାଳୟରେ ଶିବପାର୍ବତୀଙ୍କ ମିଳନ ପରି ଅଜ ଓ ଇନ୍ଦୁମତୀଙ୍କ ମିଳନ ହେଲା ।

ଇନ୍ଦୁମତୀ ଅଜଙ୍କ ଗଳାରେ ବରଣମାଳା ଲମ୍ବାଇଦେଲେ । ଦୁବା ଓ ପୁଷ୍ପରେ ମଣ୍ଡିତ ବରଣମାଳା ଅଜଙ୍କ ହୃଦୟର କମ୍ପନ ସହିତ ସମତାଳରେ ଦୋଳାୟିତ ହେଉଥିଲା । ଇନ୍ଦୁମତୀଙ୍କ ସହିତ ଯାଉଥିବାବେଳେ ଅଜ ଲଜ୍ଜାସହିତ କାମଦେବ ବିଜୟୀ କଳ୍ପପରି ଶୋଭା ପାଉଥିଲେ । ଇନ୍ଦୁମତୀ ଏପରି ଅପୂର୍ବ ସୁନ୍ଦରୀ ଥିଲେ ଯେ, ଅଜ ନିଜର ସର୍ବସ୍ୱ ତାଙ୍କୁ ଅର୍ପଣ କରି ଦେଇଥିଲେ । ସୁରସୁନ୍ଦରୀମାନେ ଇନ୍ଦୁମତୀଙ୍କ ରୂପବିଭବ ଦେଖି ଲଜ୍ଜିତା ହେଉଥିଲେ । ପତିପତ୍ନୀ ପରସ୍ପର ପ୍ରତି ଏତେ ଅନୁରକ୍ତ ହୋଇ ପଡ଼ିଥିଲେ ଯେ କେହି କାହାକୁ ଛାଡ଼ି କ୍ଷଣେମାତ୍ର ରହିପାରୁ ନଥିଲେ ।

ବିବାହପରେ ଇନ୍ଦୁମତୀଙ୍କୁ ସାଙ୍ଗରେ ନେଇ ଅଜ ଯେତେବେଳେ ମହାରାଜ ରଘୁଙ୍କୁ ପ୍ରଣାମ କଲେ, ସେତେବେଳେ ମହାରାଜ ଇନ୍ଦୁମତୀଙ୍କୁ ପୁତ୍ରବତୀ ହୁଅବୋଲି ଆଶୀର୍ବାଦ ଦେବା ସଙ୍ଗେ ସଙ୍ଗେ ନିଜର ସର୍ବସ୍ୱ ଦାନକରି ଦେଲେ । ପୁତ୍ର ଓ ପୁତ୍ର ବଧୂକୁ ରାଜ୍ୟଭାର ଦେଇ ମହାରାଜ ରଘୁ ତପସ୍ୟା କରିବା ପାଇଁ ବନକୁ ଚାଲିଗଲେ ।

ଇନ୍ଦୁମତୀ ସ୍ୱାମୀ ଅଜଙ୍କୁ କହିଲେ—"ଭରଣ ପୋଷଣ କରୁଥିବାରୁ ପତି ଭର୍ତ୍ତା ନାମରେ ଅଭିହିତ । ଆପଣ ଯେପରି ମୋତେ ଭରଣ ପୋଷଣ କରୁଛନ୍ତି ସେହିପରି ମୋର ସଖୀ ସ୍ୱରୂପା ଏହି ପୃଥିବୀକୁ ପାଳନ କରନ୍ତୁ । ମୋର ନିଜର ବୋଲି କିଛି ନାହିଁ । ଆପଣହିଁ ମୋର ସର୍ବସ୍ୱ ।"

ମହାରାଜ ଅଜ କହିଲେ—"ପ୍ରିୟେ ! ପୃଥିବୀ ପାଳନ ବିଷୟରେ ମୋର ଅଜଣା ନାହିଁ କି ସାଂସାରିକ ଭୋଗ ବିଳାସ ପ୍ରତି ମୋର ଅନୁରାଗ ନାହିଁ । ତୁମେ ହିଁ

ମୋର ଏକମାତ୍ର ପ୍ରିୟା । ତୁମର ଆନନ୍ଦ ପାଇଁ ମୁଁ ପୃଥ୍ୱୀ ପାଳନ କରିବି । ତୁମକୁ ଖୁସି କରିବା ପାଇଁ ମୁଁ ସବୁକିଛି କରିପାରେ ।" ଏହାପରେ ଭାବରେ କହି ମହାରାଜ ଅଜ ପ୍ରାଣପ୍ରିୟା ଇନ୍ଦୁମତୀଙ୍କୁ ନିଜ ପାଖରେ ସିଂହାସନରେ ବସାଇ ରାଜ୍ୟ ଶାସନ କରିବାକୁ ଲାଗିଲେ । ସେ ଇନ୍ଦୁମତୀଙ୍କୁ ସାଙ୍ଗରେ ନେଇ ବନ, ଉପବନ, ପାହାଡ଼, ପର୍ବତ, ଗିରିଗହ୍ୱର, ଝରଣା, ନଦୀକୂଳରେ ବୁଲିବାକୁ ଲାଗିଲେ ଓ ନାନା ଉପାୟରେ ଇନ୍ଦୁମତୀଙ୍କ ଚିତ୍ତବିନୋଦନ କଲେ ।

ଇନ୍ଦୁମତୀ ଶ୍ରାନ୍ତ କ୍ଲାନ୍ତ ହୋଇ ଯେତେବେଳେ ଅଜଙ୍କ କୋଳରେ ମୁଣ୍ଡରଖି ଆଖିବୁଜି ଶୋଇ ପଡ଼ୁଥିଲେ ସେତେବେଳେ ମହାରାଜ ଆନନ୍ଦରେ ଆତ୍ମବିସ୍ମୃତ ହୋଇ ଯାଉଥିଲେ । ଧନ ଲୋକର ସୁଖ ତାଙ୍କୁ ତୁଚ୍ଛ ମନେ ହେଉଥିଲା । ଇନ୍ଦୁମତୀଙ୍କ ରୂପଲାବଣ୍ୟକୁ ନିର୍ନିମେଷ ନୟନରେ ସେ ପିଇଯାଉଥିଲେ । ତାଙ୍କର ଶ୍ୱାସ ଆଘ୍ରାଣ କରି ମହାରାଜ ଅଜ ମଦୋନ୍ମତ୍ତ ହୋଇ ଯାଉଥିଲେ । ଯଥା ସମୟରେ ପିତାଙ୍କ ଆଶୀର୍ବାଦ ସଫଳ ହେଲା । ଇନ୍ଦୁମତୀ ଗର୍ଭବତୀ ହେଲେ । କଣ କଲେ, କେଉଁ କେଉଁ ଜିନଷ ପାଇଲେ ଇନ୍ଦୁମତୀ ଖୁସି ହେବେ କେବଳ ସେହିକଥା ମହାରାଜ ଅଜ ଚିନ୍ତା କରିବାକୁ ଲାଗିଲେ । ଗର୍ଭର ଅଭିବୃଦ୍ଧି ସହିତ ଉଦର ଓ ସ୍ତନଭାର ବଢ଼ିଯିବାରୁ ଇନ୍ଦୁମତୀ ସ୍ୱଚ୍ଛନ୍ଦରେ ବୁଲିବୁଲି ପାରିଲେ ନାହିଁ । ଦଶମ ମାସରେ ସେ ପୁଅଟିଏ ଜନ୍ମ କଲେ । ଗୁରୁ ବଶିଷ୍ଠ ସେହି ପୁଅର ନାମ ରଖିଲେ ଦଶରଥ । ସେହି ଦଶରଥ ପୁରୁଷୋତ୍ତମ ଶ୍ରୀରାମଚନ୍ଦ୍ରଙ୍କ ଜନକ ହେବାର ସୌଭାଗ୍ୟ ଲାଭ କରିଥିଲେ ।

ଦଶରଥ ଜନ୍ମ ହେବାମାତ୍ରେ ଅଜ, ଇନ୍ଦୁମତୀ ଓ ରାଜ୍ୟବାସୀଙ୍କ ଆନନ୍ଦର ସୀମା ରହିଲା ନାହିଁ । ରାଜା ଓ ରାଣୀଙ୍କ ପାରସ୍ପରିକ ପ୍ରେମ ଦଶରଥଙ୍କଠାରେ ନ୍ୟସ୍ତ ହୋଇଥିଲେ ମଧ୍ୟ ଅଜ ଓ ଇନ୍ଦୁମତୀଙ୍କ ପ୍ରେମରେ କୌଣସି ପ୍ରକାର ଅଭାବ ସୃଷ୍ଟି ହୋଇ ନ ଥିଲା; ବରଂ ତାହା ବୃଦ୍ଧି ପାଇଥିଲା । ମହାରାଜ ଅହୋରାତ୍ର ଇନ୍ଦୁମତୀଙ୍କ କଥାହିଁ ଭାବୁଥିଲେ । ଦିନେ ସେ ପ୍ରାଣପ୍ରିୟା ଇନ୍ଦୁମତୀଙ୍କ ସହିତ ଉପବନରେ ବୁଲି ବୁଲି ପ୍ରେମାଳାପରେ ମଗ୍ନ ଥିବା ସମୟରେ ରାମକୃଷ୍ଣଙ୍କ ଗୁଣଗାନ କରି ଦେବର୍ଷି ନାରଦ ଆସି ପହଞ୍ଚିଲେ । ତାଙ୍କ ବୀଣାରେ କଳ୍ପବୃକ୍ଷର ପୁଷ୍ପ ନିର୍ମିତ ମାଳା ଝୁଲୁଥିଲା । ରାଜା ଓ ରାଣୀ ମୁନିଙ୍କର ପାଦ ବନ୍ଦନା କଲେ । ସହସା ବୀଣାର ମାଳା ଇନ୍ଦୁମତୀଙ୍କ ଅଙ୍ଗ ସ୍ପର୍ଶ କଲା । ଇନ୍ଦୁମତୀ ଉପରକୁ ମୁହଁ ଟେକି ମାଳାକୁ ଚାହିଁବା ମାତ୍ରେ ତାଙ୍କର ପ୍ରାଣବାୟୁ ଉଡ଼ିଗଲା । ତାଙ୍କ ପ୍ରାଣହୀନ ଦେହଟା କଟା କଦଳୀଗଛ ପରି ତଳେ ପଡ଼ିଗଲା ।

ମହାରାଜ ଅଜ ପ୍ରାଣପ୍ରିୟା ଇନ୍ଦୁମତୀଙ୍କର ଅବସ୍ଥା ଦେଖି ମୂର୍ଚ୍ଛିତ ହୋଇ ପଡ଼ିଗଲେ । କିଛି ସମୟ ପରେ ମୂର୍ଚ୍ଛାଭଙ୍ଗ ହେବାରୁ ସେ ଉଠିପଡ଼ି ପ୍ରାଣପ୍ରିୟାର ପ୍ରାଣହୀନ ଶରୀର ଦେଖିବାକୁ ପାଇଲେ । ଇନ୍ଦୁମତୀ ମୃତ୍ୟୁବରଣ କରିଛନ୍ତି ଜାଣି ରାଜା ପୁଣି ମୂର୍ଚ୍ଛିତ ହୋଇ ପଡ଼ିଲେ । ସଚେତନ ହେବା ପରେ ଅଜ ବିକଳ ହୋଇ କାନ୍ଦିବାକୁ ଲାଗିଲେ । ଇନ୍ଦୁମତୀଙ୍କ ମୃତ ଦେହକୁ କୋଳରେ ରଖି ରାଜା ପିଲାଙ୍କ ପରି ଧକେଇ ହୋଇ କାନ୍ଦିଲେ । ସେବକ, ସଚିବ, ସମ୍ବନ୍ଧୀୟ ଲୋକେ ଆସି ଜମା ହୋଇଗଲେ । ରାଣୀଙ୍କ ମୃତ୍ୟୁ କଥା ଶୁଣି ସମସ୍ତେ ଦୁଃଖରେ ଅଭିଭୂତ ହୋଇ ପଡ଼ିଲେ । କିନ୍ତୁ କିଏ ବା କଣ କରିପାରିବ ? କାଳ ଉପରେ କାହାର ଜୋର ଅଛି ? ଶେଷରେ ରାଣୀଙ୍କର ଦାହ ସଂସ୍କାର ଅନୁଷ୍ଠିତ ହେଲା । ରାଜା ଇନ୍ଦୁମତୀଙ୍କ ବିୟୋଗରେ ଅତି ଦୁଃଖୀ ହୋଇ ରହିଲେ ।

ଏହା ଶୁଣି ଶୌନକ ପଚାରିଲେ—"ମହାତ୍ମା ! ଫୁଲ ହାରଟି ଛୁଇଁବା ମାତ୍ରେ ରାଣୀଙ୍କ ମୃତ୍ୟୁ କିପରି ହେଲା । ଏହା ବଡ଼ ଆଶ୍ଚର୍ଯ୍ୟ କଥା !"

ମହର୍ଷି ସୂତ ହସି ହସି କହିଲେ—"ମହାଶୟ ! ମୃତ୍ୟୁ ବିଷୟରେ ଆଶ୍ଚର୍ଯ୍ୟ ହେବାର କଣ ଅଛି ? ଯେତେବେଳେ ଯାହାହାର ଯେଉଁଠି ଯେପରି ମୃତ୍ୟୁ ହେବାର ଲେଖା ଅଛି, ସେତେବେଳେ ସେଇଠି ସେପରି ମୃତ୍ୟୁ ହେବ । ମୃତ୍ୟୁର ସମୟ ଓ କାରଣ ଆଗରୁ ନିର୍ଦ୍ଧାରିତ ହୋଇ ରହିଛି । ହଠାତ୍ କିଛି ଘଟେ ନାହିଁ । ବିନା କାରଣରେ ପତ୍ରଟିଏ ମଧ୍ୟ ହଲେ ନାହିଁ । କାର୍ଯ୍ୟର ଗର୍ଭରେ କାଳ ନିହିତ ଅଛି । ପୂର୍ବକାଳରେ ତୃଣବିନ୍ଦୁ ନାମରେ ଜଣେ ରାଜର୍ଷି ଘୋର ତପସ୍ୟା କରୁଥିଲେ । ତାଙ୍କ ତପସ୍ୟାରେ ଭୟଭୀତ ହୋଇ ଇନ୍ଦ୍ର ମୁନିଙ୍କ ତପସ୍ୟାରେ ବିଘ୍ନ ସୃଷ୍ଟି କରିବା ପାଇଁ ହରିଣୀ ନାମ୍ନୀ ଅପ୍ସରାକୁ ପଠାଇଲେ । ସେ ମୁନିଙ୍କ ପାଖକୁ ଆସି ନାନାପ୍ରକାରେ ନିଜର ଅଙ୍ଗଭଙ୍ଗୀ ଓ ହାବଭାବ ପ୍ରକାଶ କଲା । ମୁନି ଅପ୍ସରାର ଦୁଷ୍ଟ ମନୋଭାବ ବୁଝିପାରି କ୍ରୋଧାନ୍ୱିତ ହୋଇ କହିଲେ—ଦୁଷ୍ଟେ ! ତୁ ସ୍ୱର୍ଗର ଅପ୍ସରା ହେବା ପାଇଁ ଯୋଗ୍ୟା ନୁହେଁ । ତୁ ମର୍ତ୍ତ୍ୟ ଲୋକକୁ ଯାଇ ମାନବୀ ହୋଇଯା ।"

ଏହି ଅଭିଶାପ ଶୁଣି ହରିଣୀ ବିବ୍ରତ ହୋଇ ପଡ଼ିଲା । ସେ ଭୟଭୀତା ହୋଇ ଦୁଇହାତ ଯୋଡ଼ି ମୁନିଙ୍କ ପାଦତଳେ ପଡ଼ି କହିଲା—'ପ୍ରଭୋ ! ଇନ୍ଦ୍ରଙ୍କ ଆଦେଶରେ ମୁଁ ଆସିଛି । ଏଥିରେ ମୋର ଅପରାଧ କଣ ? ଆପଣ ମୋ' ପ୍ରତି ସଦୟ ହୁଅନ୍ତୁ । ମୋତେ ସ୍ୱର୍ଗଭ୍ରଷ୍ଟ ନ କରିବା ପାଇଁ ନିବେଦନ କରୁଛି ।"

ମୁନି କହିଲେ—"ମୋ' କଥା ଅନ୍ୟଥା ହେବ ନାହିଁ । ତୁମର ଜନ୍ମ ମାନବ ଯୋନିରେ ନିଶ୍ଚୟ ହେବ । ସୁର ସୁନ୍ଦରୀଙ୍କଠାରୁ ତୁମେ ଅଧିକ ସୁନ୍ଦରୀ ହେବ । ତୁମେ

ଯେବେ ସ୍ୱର୍ଗୀୟ ପୁଷ୍ପେ ଦେଖିବ ସେତେବେଳେ ପୃଥିବୀ ଛାଡ଼ି ତୁମେ ପୁଣି ସ୍ୱର୍ଗକୁ ଫେରିଆସିବ ଓ ଅପ୍‌ସରା ପଦବୀ ଲାଭ କରିବ ।”

ମହର୍ଷି ସୂତ କହିଲେ—“ମୁନିଗଣ ! ସେହି ଅପ୍‌ସରା ହରିଣୀ ଶାପଗ୍ରସ୍ତା ହୋଇ ବିଦର୍ଭ ରାଜବଂଶରେ ଜନ୍ମଗ୍ରହଣ କରିଥିଲା । ସେ ଥିଲା ଅଜଙ୍କ ପତ୍ନୀ ଇନ୍ଦୁମତୀ । ନାରଦଙ୍କ ବୀଣାରେ ଥିବା କଳ୍ପ ବୃକ୍ଷର ପୁଷ୍ପରେ ରଚିତ ମାଳା ଦେଖିବାମାତ୍ରେ ସେ ମାନବ ଦେହ ତ୍ୟାଗ କରି ସ୍ୱର୍ଗଯାତ୍ରା କରିଥିଲା । ରାଣୀଙ୍କ ମୃତ୍ୟୁ ପରେ ମହାରାଜ ଅଜଙ୍କର ବଞ୍ଚିରହିବା ପାଇଁ ଆଦୌ ଅଭିଳାଷ ନ ଥିଲା । କିନ୍ତୁ ଲୋକଲଜ୍ଜାକୁ ଦୃଷ୍ଟି ଦେଇ ବଂଶର କର୍ତ୍ତବ୍ୟ ପାଳନ କରିବାପାଇଁ ଜୀବନ ଧରି ରହିଲେ । ସବୁବେଳେ ଉଦାସୀନ ହୋଇ ଦଶରଥଙ୍କ ମୁଖ ଦେଖି ଇନ୍ଦୁମତୀଙ୍କ ସ୍ମରଣ କରୁଥିଲେ ଓ କାନ୍ଦୁଥିଲେ । ସ୍ୱପ୍ନରେ ଇନ୍ଦୁମତୀଙ୍କ ସାକ୍ଷାତ ଲାଭ କରି ସେ ଖୁସି ହେଉଥିଲେ । ପିତାଙ୍କ ଦେଖାଶୁଣାରେ ରାଜକୁମାର ଦଶରଥ ବଢ଼ିବାକୁ ଲାଗିଲେ ।”

କୁମାର ଦଶରଥ ବାଲ୍ୟାବସ୍ଥା ଅତିକ୍ରମ କରି ଯୌବନରେ ପଦାର୍ପଣ କଲେ । ରାଜ୍ୟଭାରକୁ ଭାରବତ୍ତ ବହନ କରି ଅଜ ବ୍ୟସ୍ତ ହେଉଥିଲେ । ଯୁବକ ଦଶରଥଙ୍କୁ ରାଜ୍ୟଭାର ସମର୍ପଣ କରି ମହାରାଜ ଅଜ ସରଯୂ ନଦୀତୀରକୁ ତପସ୍ୟା କରିବା ପାଇଁ ଚାଲିଗଲେ । ନଦୀ କୂଳେ ଯାଇ ସେ ଗଙ୍ଗାର ମିଳନ ସ୍ଥଳରେ ପହଞ୍ଚି ସେଇଠି ଅନଶନ ବ୍ରତ ପାଳନ ପୂର୍ବକ ମହାରାଜ ଅଜ ଦେହତ୍ୟାଗ କରିଥିଲେ ।”

ପିତା ପରଲୋକ ଗମନ କରିବା ପରେ ମହାରାଜ ଦଶରଥ ପ୍ରଜାମାନଙ୍କୁ ପୁତ୍ରବତ୍ ପାଳନ କରିବାକୁ ଲାଗିଲେ । ତାଙ୍କର କୀର୍ତ୍ତି ଚାରିଆଡ଼େ ପ୍ରସାର ଲାଭକଲା । ସେ ଦିଗ୍‌ବିଜୟରେ ଯାଇ ସମଗ୍ର ପୃଥିବୀକୁ ଜୟ କଲେ । ତାଙ୍କୁ ରାଜା ରୂପେ ପାଇ ପ୍ରଜାବର୍ଗ ମହାରାଜ ଅଜଙ୍କୁ ଭୁଲି ଗଲେ ।”

ମହର୍ଷି ସୂତ କହିଲେ—“ମୁନିଗଣ ! ସେହି ପୁଣ୍ୟଶ୍ଳୋକ ମହାରାଜ ଦଶରଥଙ୍କର ପୁତ୍ର ରୂପେ ଭଗବାନ୍ ଶ୍ରୀରାମଚନ୍ଦ୍ର ଅବତୀର୍ଣ୍ଣ ହୋଇଥିଲେ । ବର୍ତ୍ତମାନ ଆପଣମାନେ ଶ୍ରୀରାମଚରିତ ଶ୍ରଦ୍ଧା ଓ ଭକ୍ତିର ସହିତ ଶ୍ରବଣ କରନ୍ତୁ ।”

## ଛପ୍‌ପୟ

ଅଜ ତେ ଦଶରଥ ପୁତ୍ର ଯଶସ୍ୱୀ ଅତି ହି ପାବନ ।
ଜିନକେ ଯଶତେଁ ବିମଳ ଧବଳ ଅବ ତକ ୟହ ତ୍ରି ଭୁବନ ॥
ଭୂପତି ପରମ ଉଦାର ଦାନ ବହୁ ବିପ୍ରନ ଦୀହ୍ନେଁ ।
ଭୂରି ଦକ୍ଷିଣା ଯୁକ୍ତ ବିଷଦ ମଖ ଜିନ ବହୁ କୀହ୍ନେଁ ॥
ଦେବାସୁର ସଂଗ୍ରାମ ମହଁ, ଅସୁର ପରାଜିତ ଜିନ କରେ ।
ଦିବ୍ୟ ଅସ୍ତ୍ର ଆଘାତ ତେଁ, ଅଗନିତ ସୁର କଣ୍ଟକ ମରେ ॥

# ଶ୍ରୀରାମଚନ୍ଦ୍ରଙ୍କ ଜନ୍ମ

**ତସ୍ୟାପି ଭଗବାନେଷ ସାକ୍ଷାଦ୍ ବ୍ରହ୍ମମୟୋ ହରିଃ ।**
**ଅଂଶାଂଶେନ ଚତୁର୍ଦ୍ଧାଗାତ୍ ପୁତ୍ରତ୍ୱଂ ପ୍ରାର୍ଥିତଃ ସୁରୈଃ ।।**

(ଶ୍ରୀଭାଗ—୯ସ୍କ-୧୦ଅ-୨ଶ୍ଳୋ)

**ଛପ୍‌ପୟ**

**ସବ ସୁଖ ନୃପ କେ ଜନକ ପୁତ୍ର ବିନୁ ପର ଅତି ଚିନ୍ତିତ ।**
**ରାନୀ ସବ ସୁତ ରହିତ ବଂଶଧର ବିନୁ ଅତି ଦୁଃଖିତ ।।**
**ବିନତୀ ଗୁରୁ କୀ କରୀ ରଚ୍ୟୋ ମଖ ସୁତ କେ ହିତ ।**
**ଋଷ୍ୟ ଶୃଙ୍ଗ ପୁତ୍ରେଷ୍ଟି ଯଜ୍ଞ କରବାୟୋ ପ୍ରମୁଦିତ ।।**
**ଅଯୋଧ୍ୟା ଭୂମି କୋ ଭାର ବଢ୍ୟୋ, ସୁର ସବ ମିଲି ହରି ଢିଂ ଗଗୟେ ।**
**ସେତୁ କରନ ଭବ ଉଦଧି ପେ, ଅଜ ଅଚ୍ୟୁତ ପ୍ରକଟିତ ଭୟେ ।।**

ଏ ସଂସାର ହେଉଛି ଏକ ଅଗାଧ ସାଗର । ତାକୁ ପାରି ହେବା ପାଇଁ କୌଣସି ଏକ ନିଶ୍ଚିତ ମାର୍ଗ ନାହିଁ । ଜୀବର ପୌରୁଷ ଶକ୍ତି ସୀମିତ । ଏସବୁ ଜାଣିଥିବା ସର୍ବଜ୍ଞ ପୁରୁଷ ସେପାଖରେ ବସି ହସୁଛନ୍ତି । ଜୀବ ପାରି ହୋଇଯିବା ପାଇଁ ଯତ୍ନ କରୁଛି । କିନ୍ତୁ ଜଗନ୍ନାଥ ସ୍ୱାମୀ ଜୀବ ରୂପରେ ଅବତୀର୍ଣ୍ଣ ହୋଇ ଯଦି ଅହୈତୁକ କୃପା ପ୍ରଦର୍ଶନ ପୂର୍ବକ ଜୀବକୁ ସାହାଯ୍ୟ ନ କରିବେ ତେବେ ପୌରୁଷଦ୍ୱାରା କେହି କେବେ ସଂସାର ସାଗରକୁ ପାର ହୋଇ ପାରିବ ନାହିଁ । ଭଗବାନ ଜୀବ ରୂପରେ ଆବିର୍ଭୂତ ହୋଇ ଜୀବ ସହିତ ମିଳିମିଶି ଗଲେ ପାରି ହେବା ପାଇଁ ସେତୁ ବାନ୍ଧି ଦିଅନ୍ତି । ଆମକୁ ଉତ୍ସାହ ଦେଇ ସାଗର ପାରି ହୋଇଯିବା ପାଇଁ ପ୍ରବର୍ତ୍ତାଇଥାନ୍ତି ।

ଭଗବାନ ପୃଥିବୀରେ ଅବତୀର୍ଣ୍ଣ ହେବାର ମୁଖ୍ୟ କାରଣ ହେଉଛି, ଲୀଳା-ରୂପକ ଉପାଦାନ ଦ୍ୱାରା ସଂସାର ସେତୁ ରଚନା କରିବା । ସେହି ସେତୁଦ୍ୱାରା

ସର୍ବସାଧାରଣ ଅବଲୀଳାକ୍ରମେ ସଂସାର ସାଗର ପାର ହେବାହିଁ ସେଉ ରଚନାର ମୂଳ-ଲକ୍ଷ୍ୟ । ତାଙ୍କର ଜନ୍ମ କର୍ମବନ୍ଧନରେ ବନ୍ଧା ନୁହେଁ । ଲୀଳା ପାଇଁ କୃପା ପ୍ରଦର୍ଶନ ପାଇଁ ମର୍ଯ୍ୟାଦା ସ୍ଥାପନ ପାଇଁ, ଲୋକ ସଂଗ୍ରହ ଓ ସଂସାରର ଉଦ୍ଧାର ପାଇଁ ମୈତ୍ରୀ, କରୁଣା ଆଦି ସଦ୍‌ଗୁଣର ପ୍ରସାର ପାଇଁ ଭଗବାନ ଅବତୀର୍ଣ୍ଣ ହୁଅନ୍ତି । ଭଗବାନଙ୍କ ଚରିତକୁ ମାନବୀକ ଚରିତ ସହିତ ତୁଳନା କରୁଥିବା ବ୍ୟକ୍ତିର ସମସ୍ତ ଚେଷ୍ଟା ବିଫଳ ହୋଇଯାଏ । ତେଣୁ ପ୍ରଭୁଙ୍କ ଚରିତକୁ ପବିତ୍ର, ଅଲୌକିକ, ଦିବ୍ୟ ମନେ କରି ଶ୍ରବଣ, ପଠନ ମନନ କରିବା ବାଞ୍ଛନୀୟ ।

ମହର୍ଷି ସୂତ ଯେତେବେଳେ ଶ୍ରୀରାମଚନ୍ଦ୍ରଙ୍କ ନାମ ସ୍ମରଣ କରୁଥିଲେ ସେତେବେଳେ ଶୌନକାଦି ଅଠାଅଶୀ ହଜାର ଋଷିଙ୍କ ଦେହ ରୋମାଞ୍ଚିତ ହୋଇ ଉଠିଲା । ସମସ୍ତଙ୍କ ଆଖି ଛଳ ଛଳ ହୋଇଗଲା । ସେମାନେ ଗଦ୍‌ଗଦ କଣ୍ଠରେ ଆଖିରୁ ଲୁହ ପୋଛି କହିଲେ—"ମହାଭାଗ ! ଭଗବାବାନ ଲୋମିକଙ୍କ ମୁଖରୁ ଶ୍ରୀରାମଚରିତ ଆମେ ବହୁବାର ଶୁଣିଛୁ । ଶ୍ରୀରାମ ଯେତେବେଳେ ଅଶ୍ୱମେଧ ଯଜ୍ଞ କରୁଥିଲେ ଓ ଲବକୁଶ ତାଙ୍କ ଆଗରେ ରାମାୟଣ ଗାନ କରୁଥିଲେ ତାହା ମଧ୍ୟ ଆମେ ସେଠାରେ ଥିବାବେଳେ ଶୁଣିଛୁ । କିନ୍ତୁ ସତ କଥା ହେଉଛି ରାମାୟଣ ଯେତେଥର ଶୁଣିଲେ ମଧ୍ୟ ଆମର ତୃପ୍ତି ଆସୁ ନାହିଁ । ଶ୍ରୀ ଶୁକଦେବ ମଧ୍ୟ ମହାରାଜ ପରୀକ୍ଷିତଙ୍କୁ ସଂକ୍ଷେପରେ ଶ୍ରୀରାମ ଚରିତ ଶୁଣାଇ ଥିଲେ । ସାତଦିନ ମଧ୍ୟରେ ତାଙ୍କୁ ସବୁକଥା ଶୁଣାଇବାକୁ ପଡ଼ିଥିବାରୁ ସେ ସଂକ୍ଷେପରେ ରାମାୟଣ କରିବା ପାଇଁ ବାଧ୍ୟ ହୋଇଥିଲେ । ସବୁ ଶାସ୍ତ୍ରର ସାର ରାଜାଙ୍କୁ କହି ଶ୍ରୀକୃଷ୍ଣ କଥାରେ ତାଙ୍କର ପ୍ରବଚନ ଶେଷ କରିଥିଲେ । କିନ୍ତୁ ଆମର ତ ସମୟର ଅବଧି ନାହିଁ । ଆମେ ସମସ୍ତେ ଦୀର୍ଘଜୀବୀ । ଅବତାର କଥା ଶୁଣିବା ଆମର ଲକ୍ଷ୍ୟ । ସୂର୍ଯ୍ୟବଂଶର ନୀରସ କଥା ସବୁ ଆମେ ଚୁପ୍‌ଚାପ୍ ବସି ଶୁଣୁଥିଲୁ, କାରଣ ତା'ର ସାର କଥା ଆମେ ଶେଷରେ ଶୁଣିବୁ । ନୋହିଲେ କେଉଁ ରାଜାଙ୍କର କେତେ ରାଣୀ ଥିଲେ, କେଉଁ ରାଜକୁମାରୀ କାହା ପ୍ରତି ଆସକ୍ତ ହେଲା, ସ୍ୱୟମ୍ବରରେ କିଏ କାହା ଗଳାରେ ମାଳ ଦେଲା, ଯୁଦ୍ଧରେ କିଏ କାହାକୁ ହରାଇଲା, କେଉଁ ସୁନ୍ଦରୀ ଅପ୍‌ସରା କେଉଁ ମୁନିଙ୍କୁ ବିଭ୍ରାନ୍ତ କଲା, କାହାର ପୁତ୍ର କି ପୌତ୍ର ହେଲା, ଏସବୁ ବ୍ୟର୍ଥ କଥାରେ ଆମେ ପରିତ୍ୟାଗୀ, ବୈରାଗୀଙ୍କର କି ପ୍ରୟୋଜନ ଅଛି ? ଭଗବାନଙ୍କ ଯଶ ଗାନ କରିବା ଓ ଶ୍ରବଣ କରିବା ଆମର ଲକ୍ଷ୍ୟ । ମନୁଙ୍କଠାରୁ ଦଶରଥଙ୍କ ପର୍ଯ୍ୟନ୍ତ ସୂର୍ଯ୍ୟବଂଶୀୟ ରାଜାମାନଙ୍କ କଥା ଶୁଣିଲୁ ଏଇ ଆଶାରେ ଯେ, ଶେଷରେ ଆମେ ସେହି ବଂଶର ମର୍ଯ୍ୟାଦା ପାଳକ, ଜନ ସୁଖଦାୟକ ଭଗବାନ ଶ୍ରୀରାମଚନ୍ଦ୍ରଙ୍କ କଥା ଶୁଣିବୁ । ତେଣୁ ହେ ମହାଭାଗ ! ଶ୍ରୀରାମ ଚରିତ ଶୁଣାଇବାରେ ଆପଣ ଆଦୌ କୃପଣ ହେବେ ନାହିଁ । ଆମେ ବିସ୍ତାରିତ ଭାବେ ରାମାୟଣ ଶୁଣିବା ପାଇଁ ଇଚ୍ଛା କରୁଛୁ ।"

ଋଷିମାନଙ୍କ ନିବେଦନ ଶୁଣି ମହର୍ଷି ସୂତ ଆନନ୍ଦିତ ହେଲେ । ସେ ବାରମ୍ବାର 'ରାମ' ଶବ୍ଦ ଉଚ୍ଚାରଣ କରିବାକୁ ଯାଇ 'ରା' କହିଲା ମାତ୍ରେ କଣ୍ଠ ତାଙ୍କର ଅବରୁଦ୍ଧ ହୋଇଗଲା ଓ ଦୁଇ ନୟନରୁ ଅଶ୍ରୁଧାରା ପ୍ରବାହିତ ହେବାକୁ ଲାଗିଲା । ନିଜକୁ ବହୁ କଷ୍ଟରେ ସଜ୍ଜିତ କରିନେଇ ମହର୍ଷି ସୂତ ଆଚମନ କରି କହିବାକୁ ଲାଗିଲେ—"ହେ ମୁନିଗଣ ! ଆପଣମାନଙ୍କର ଜୀବନ ଧନ୍ୟ । ଅବତାର ଚରିତ ଶ୍ରବଣ ପାଇଁ ଆପଣମାନଙ୍କ ନିଷ୍ଠା ପ୍ରଶଂସନୀୟ । ମୋର ଗୁରୁଦେବ ଅବଶ୍ୟ ସଂକ୍ଷେପରେ ଶ୍ରୀରାମଚରିତ ବର୍ଣ୍ଣନା କରିଥିଲେ । କିନ୍ତୁ ସେହି ସଂକ୍ଷିପ୍ତ ରାମାୟଣ ମଧ୍ୟରେ ସେ କହିବା ଯୋଗ୍ୟ ସମସ୍ତ କଥା କହିଛନ୍ତି । ରାମଚରିତ କହିବାବେଳେ ମୋର ଗୁରୁଦେବ ଏପରି ତନ୍ମୟ ହୋଇ ପଡ଼ୁଥିଲେ ଯେ ଅଧିକ କିଛି କହିପାରୁ ନଥିଲେ । କିନ୍ତୁ ସବୁ ଅବତାର ଚରିତ ଅପେକ୍ଷା ରାମଚରିତ କହିବାରେ ସେ ଅଧିକ ସରସତା ପ୍ରଦର୍ଶନ କରିଛନ୍ତି ।

ଗୁରୁ ଶ୍ରୀ ଶୁକଦେବ କହିଥିବା କଥାରୁ ଗୋଟିଏ ଗୋଟିଏ ଶବ୍ଦର ବ୍ୟାଖ୍ୟା ଯଦି ମୁଁ କରିବି, ତେବେ କୋଟି କୋଟି କଳ୍ପ ପର୍ଯ୍ୟନ୍ତ ତାହା ସରିବ ନାହିଁ । ଆପଣମାନେ କହୁଛନ୍ତି ରାମଚରିତକୁ ବିସ୍ତାରିତ ଭାବେ କହିବା ପାଇଁ, କିନ୍ତୁ ସଂକ୍ଷେପରେ ମଧ୍ୟ ମୁଁ କହିବା ପାଇଁ ସମର୍ଥ ନୁହେଁ । କେବଳ ବାଲ୍ମୀକି ମୁନି ଶତ କୋଟି ବର୍ଷର ପର୍ଯ୍ୟନ୍ତ ରାମଚରିତ ବର୍ଣ୍ଣନା କରିବାରେ ସମର୍ଥ ହୋଇଥିଲେ । ସେହିପରି ଅସଂଖ୍ୟ ମୁନି ରାମଚରିତ ବର୍ଣ୍ଣନା କରିଛନ୍ତି । ରାମଚରିତ ଅଗାଧ, ଅପରିମେୟ, ଅନନ୍ତ, ଅନାଦି ଓ ଅପାର । ଆପଣଙ୍କୁ ସେହି ଅଗାଧ ଚରିତ ଶୁଣାଇବା ପାଇଁ ମୋର ଶକ୍ତି ନାହିଁ । ଆପଣମାନେ ବହୁଶ୍ରୁତ, ବିଜ୍ଞ ଓ ପଣ୍ଡିତ । ଆପଣଙ୍କ ଆଗରେ ରାମଚରିତ କହିଲେ ମୋର ବାଣୀ ପବିତ୍ର ହେବ । ରାମକଥା ବର୍ଣ୍ଣନା ଦ୍ୱାରା ସାର୍ଥକ ହେବ । ତେଣୁ ଯଥା-ଶକ୍ତି ରାମଚରିତକୁ ଆପଣମାନଙ୍କ ଆଗରେ କହୁଛି । ମୋର ଗୁରୁଦେବ ଯାହା ସବୁ କହିଥିଲେ ମୁଁ ତାକୁହିଁ ବିସ୍ତାରିତଭାବେ କହୁଛି ।

ମୁନିଗଣ ! ମୋ' ଭାଷାରେ ଏତେ ଶକ୍ତି ନାହିଁ ଯାହାଦ୍ୱାରା ଶ୍ରୀରାମଚରିତକୁ ମୁଁ ସରସ ଭାବେ ବର୍ଣ୍ଣନା କରିପାରିବି । ତଥାପି ଘରେ ତିଆରି ମିଠାଇ ଗଠନ ଦୃଷ୍ଟିରୁ ଭଲ ଦେଖା ନ ଗଲେ ମଧ୍ୟ ଯେପରି ମଧୁର ଲାଗେ ସେହିପରି ରାମଚରିତକୁ ଯେପରି ଭାବେ ବର୍ଣ୍ଣନା କଲେ ମଧ୍ୟ ତାହା ପାପନାଶକ ଓ ପୁଣ୍ୟ ବର୍ଦ୍ଧକ ହୋଇଥାଏ । ହଉ, ବର୍ତ୍ତମାନ ଶ୍ରୀରାମଙ୍କ ଜନ୍ମ ସମ୍ବନ୍ଧୀୟ କଥା କହୁଛି, ଆପଣମାନେ ମନ ଦେଇ ଶୁଣନ୍ତୁ ।

ଅଜପୁତ୍ର ମହାରାଜ ଦଶରଥ ଏପରି ପରାକ୍ରମଶାଳୀ ଥିଲେ ଯେ ଦେବାସୁର ସଂଗ୍ରାମରେ ଦେବତାମାନେ ଆସି ତାଙ୍କ ପାଦ ଧରି ଅସୁରମାନଙ୍କ ବିରୁଦ୍ଧରେ ଯୁଦ୍ଧ କରିବା ପାଇଁ ପ୍ରାର୍ଥନା କରିଥିଲେ । ରଘୁବଂଶ ବିଭୂଷଣ ମହାରାଜ ଦଶରଥ ଦେବଗଣଙ୍କ ନିବେଦନ ଅନୁସାରେ ଅସୁରମାନଙ୍କୁ ଯୁଦ୍ଧରେ ପରାସ୍ତ କରିଥିଲେ । ଦୈତ୍ୟାଙ୍ଗନାମାନଙ୍କର କପାଳରୁ ସିନ୍ଦୂରବିନ୍ଦୁ ଲିଭାଇ ଦେଇ ଚିରକାଳ ପାଇଁ ସେମାନଙ୍କ ବେଣୀକୁ ଉନ୍ମୁକ୍ତ କରିଥିଲେ । ଅସୁରମାନଙ୍କ ମୃତ୍ୟୁରେ ସେମାନଙ୍କ ବିଧବା ପତ୍ନୀମାନେ ହତଶ୍ରୀ ହୋଇ ଯାଇଥିଲେ । ଅସୁରମାନଙ୍କ ଐଶ୍ୱର୍ଯ୍ୟ ନଷ୍ଟ ଭ୍ରଷ୍ଟ ହୋଇଯାଇଥିଲା ।

ମହାରାଜ ଦଶରଥ ଦକ୍ଷିଣ କୋଶଳର ରାଜକନ୍ୟା କୌଶଲ୍ୟାଙ୍କୁ ବିବାହ କରିଥିଲେ । ତାଙ୍କର ଦ୍ୱିତୀୟା ରାଣୀ କୈକେୟୀ ଥିଲେ କେକୟ ଦେଶର ରାଜକନ୍ୟା ଏବଂ ତୃତୀୟା ପତ୍ନୀ ଥିଲେ ସୁମିତ୍ରା । ଏହି ତିନି ରାଣୀଙ୍କ ବ୍ୟତୀତ ଦଶରଥଙ୍କର ଆହୁରି ଅନେକ ରାଣୀ ଥିଲେ । କିନ୍ତୁ ରାଣୀମାନଙ୍କ ମଧ୍ୟରେ କୌଶଲ୍ୟା, କୈକେୟୀ ଓ ସୁମିତ୍ରା ଥିଲେ ପ୍ରଧାନ ରାଣୀ । ମହାରାଜ ଦଶରଥ ପୃଥିବୀରେ ଦ୍ୱିତୀୟ ଇନ୍ଦ୍ରରୂପେ ମର୍ଯ୍ୟାଦା ଲାଭ କରିଥିଲେ । ଅଯୋଧ୍ୟାର ବୈଭବ ଦେଖି ଶତକ୍ରତୁ ଇନ୍ଦ୍ର ମଧ୍ୟ ଲଜ୍ଜିତ ହେଉଥିଲେ । ତାଙ୍କ ଅନ୍ତଃପୁରର ଲଳନାମାନଙ୍କୁ ଦେଖି ସୁର ସୁନ୍ଦରୀମାନେ ସଙ୍କୁଚିତ ହୋଇଯାଉଥିଲେ । ଦଶରଥଙ୍କ ସେନାବାହିନୀ ଓ ସେନାପତିମାନଙ୍କ ଆଗରେ କାର୍ତ୍ତିକେୟ ନିଜକୁ ତୁଚ୍ଛ ମନେ କରୁଥିଲେ । କୁବେର ଭଣ୍ଡାରଠାରୁ ତାଙ୍କର ଅଧିକ ସମ୍ପତ୍ତି ଥିଲା । ସେ କଳ୍ପବୃକ୍ଷପରି ସମସ୍ତଙ୍କ ମନୋରଥ ପୂର୍ଣ୍ଣ କରୁଥିଲେ ଏବଂ କାମଧେନୁ ପରି ସମସ୍ତ ଦ୍ରବ୍ୟ ପ୍ରଜାମାନଙ୍କୁ ଯୋଗାଇ ଦେଉଥିଲେ । ଲୋକପାଳ-ମାନଙ୍କ ପରି ସେ ପ୍ରଜାପାଳନ କରୁଥିଲେ ଏବଂ ପ୍ରଜାପତିଙ୍କ ପରି ସେ ସମସ୍ତଙ୍କୁ ସ୍ନେହ କରୁଥିଲେ । ମହାରାଜ ଦଶରଥ ଯେପରି ଐଶ୍ୱର୍ଯ୍ୟଶାଳୀ ଥିଲେ, ସେହିପରି ତେଜସ୍ୱୀ ଓ ପରାକ୍ରମଶାଳୀ ଥିଲେ । ସେ ବହୁ ଅଶ୍ୱମେଧ ଯଜ୍ଞ କରିଥିଲେ । ଏହି ଭାବରେ ମହାରାଜ ଦଶରଥ ହଜାର ହଜାର ବର୍ଷ ପୃଥିବୀ ପାଳନ କରିଥିଲେ ।

ମହାରାଜ ଦଶରଥ କାଳକ୍ରମେ ବାର୍ଦ୍ଧକ୍ୟରେ ଉପନୀତ ହେଲେ । କିନ୍ତୁ ତାଙ୍କର କୌଣସି ସନ୍ତାନ ସନ୍ତତି ନ ହେବାରୁ ଦଶରଥ ଚିନ୍ତିତ ହୋଇ ପଡ଼ିଲେ । ତାଙ୍କ ପରେ କିଏ ଅଯୋଧ୍ୟାରେ ଅଜ ସିଂହାସନ ଅଳଂକୃତ କରିବ ? ଏହି ଚିନ୍ତାରେ ବ୍ୟାକୁଳ ହୋଇ ଦିନେ ସେ ବଶିଷ୍ଠଙ୍କ ପାଖକୁ ଗଲେ । କୁଳଗୁରୁ ବଶିଷ୍ଠ ରାଜାଙ୍କ ବିମର୍ଷ ମୁଖ ଦେଖି କହିଲେ—"ରାଜନ୍ ! ଆପଣଙ୍କ ଦୁଃଖର କାରଣ ମୁଁ ଜାଣିଛି । ଆପଣ ଆଦୌ ଚିନ୍ତିତ ହୁଅନ୍ତୁ ନାହିଁ । ଆପଣଙ୍କର ଗୋଟିଏ ନୁହେଁ ଚାରୋଟି ପୁତ୍ର

ଜନ୍ମହେବେ । ସେମାନେ ସାଧାରଣ ପୁତ୍ର ନୁହନ୍ତି, ପୁରାଣ ପୁରୁଷ ପୁରୁଷୋତ୍ତମ ହିଁ ଚତୁର୍ଦ୍ଧା ରୂପ ଧାରଣ କରି ପୁରୁଷ ଦେହ ନେଇ ଅବତୀର୍ଣ୍ଣ ହେବେ । ଆପଣ ମହାମୁନି ବିଭାଣ୍ଡକଙ୍କ ପୁତ୍ର ଋଷ୍ୟଶୃଙ୍ଗଙ୍କୁ ଡକାଇ ପୁତ୍ରେଷ୍ଟି ଯଜ୍ଞ କଲେ ଆପଣଙ୍କର ମନୋରଥ ସଫଳ ହେବ ।"

ଗୁରୁଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି ମହାରାଜ ଦଶରଥ-ନିଜର ଜାମାତା, ଶାନ୍ତାର ପତି ଭଗବାନ ଋଷ୍ୟଶୃଙ୍ଗଙ୍କୁ ଆଦର ସତ୍କାରରେ ଡକାଇ ପଠାଇଲେ । ପୁତ୍ରେଷ୍ଟି ଯଜ୍ଞ କରିବାରେ ଦକ୍ଷ ମହାମୁନି ଋଷ୍ୟଶୃଙ୍ଗ କୁଳଗୁରୁ ବଶିଷ୍ଠଙ୍କ ପରାମର୍ଶ ଅନୁସାରେ ଯଥାବିଧି ପୁତ୍ରେଷ୍ଟି ଯଜ୍ଞ ଆରମ୍ଭ କଲେ ।

ସେହି ସମୟରେ ରାବଣ ଆଦି ଦସ୍ୟୁମାନଙ୍କଦ୍ୱାରା ଉତ୍ପୀଡ଼ିତ ଦେବଗଣ ଗୋରୂପଧାରିଣୀ ପୃଥିବୀକୁ ସାଙ୍ଗରେ ନେଇ ବ୍ରହ୍ମାଙ୍କ ନେତୃତ୍ୱରେ କ୍ଷୀରସାଗର କୂଳରେ ଭଗବାନଙ୍କୁ ସ୍ତୁତି କରିବାକୁ ଲାଗିଲେ । ଭଗବାନ ଶେଷ ଶଯ୍ୟାରେ ଶୋଇରହି ବ୍ରହ୍ମାଙ୍କୁ କହିଲେ—"ତୁମ୍ଭେମାନେ ଚିନ୍ତା ପରିତ୍ୟାଗ କର । ମୁଁ ପୃଥିବୀରେ ଅବତୀର୍ଣ୍ଣ ହୋଇ ଅସୁରମାନଙ୍କୁ ସଂହାର କରିବି । ଧର୍ମର ମର୍ଯ୍ୟାଦା ସ୍ଥାପନ କରିବି ଏବଂ ନିଜର ମଧୁର କରୁଣା ରସପୂର୍ଣ୍ଣ କଥା ପ୍ରସାରଦ୍ୱାରା ସଂସାର ଦୁଃଖରେ ସନ୍ତପ୍ତ ପ୍ରାଣୀମାନଙ୍କୁ ଉଦ୍ଧାର କରିବି ।"

ଭଗବାନଙ୍କର ଆଦେଶ ଶୁଣି ଦେବଗଣ ନିଜ ନିଜ ସ୍ଥାନକୁ ଫେରିଗଲେ । ପ୍ରଭୁଙ୍କ ଚରଣ ସେବା କରୁଥିବା ଆଦ୍ୟାଶକ୍ତି ମହାମାୟା ଲକ୍ଷ୍ମୀଙ୍କୁ ପୁରାଣ ପୁରୁଷ କହିଲେ—"ପ୍ରିୟେ ! କିଛିକାଳ ପାଇଁ ମାନବଲୀଳା କରିବାକୁ ମୋର ଇଚ୍ଛା ହେଉଛି । ତେଣୁ ମୁଁ ଫେରିବା ପର୍ଯ୍ୟନ୍ତ ତୁମେ ତୁମର ପିତା ସମୁଦ୍ରଙ୍କ ଘରେ ରହିଥାଅ ।"

ଜଗଜ୍ଜନନୀ ମହାଲକ୍ଷ୍ମୀ କହିଲେ—"ପ୍ରଭୋ ! ଆପଣ ନର ହେଲେ ମୁଁ ନାରୀ ହେବି । ମାନବ ଯୋନି ସବୁ ଯୋନି ମଧ୍ୟରେ ଶ୍ରେଷ୍ଠ କି ନୁହେଁ ଆପଣ କହନ୍ତୁ । ଆପଣ ସେଥିରେ ଅବତୀର୍ଣ୍ଣ ହୋଇ ଲୀଳା କରିବେ ଆଉ ମୁଁ ବସି ବସି ସେ ଲୀଳା ଦେଖୁଥିବି ? ଏହା କିପରି ସମ୍ଭବ ? ଛାୟା କେବେ କାୟାଠାରୁ ପୃଥକ ହୋଇ ରହି ପାରେନାହିଁ ।"

ମହାବିଷ୍ଣୁ ସନାତନ ପୁରୁଷ କହିଲେ—"ଠିକ୍ ଅଛି । ତୁମେ ମିଥିଳା ଯାଇ ଅବତୀର୍ଣ୍ଣ ହୁଅ ଆଉ ମୁଁ ପୁଣ୍ୟଶ୍ଳୋକ ମହାରାଜ ଦଶରଥଙ୍କ ପଟ୍ଟମହିଷୀ ଭାଗ୍ୟବତୀ ଦେବୀ କୌଶଲ୍ୟାଙ୍କ ଗର୍ଭରେ ଅବତୀର୍ଣ୍ଣ ହେଉଛି । ସେହି ଧାର୍ମିକ ରାଜା

ଦଶରଥ ଏବେ ପୁତ୍ର କାମନାରେ ପୁତ୍ରେଷ୍ଟି ଯଜ୍ଞ କରୁଛନ୍ତି । ମୁଁ ତାଙ୍କର ମନୋରଥ ପୂର୍ଣ୍ଣ କରିବି । ସ୍ୱୟଂ ଯଜ୍ଞ ପୁରୁଷ ମୁଁ ତାଙ୍କର ପୁତ୍ରରୂପେ ଜନ୍ମଗ୍ରହଣ କରିବି ।"

ଭଗବତୀ ଅମ୍ବିକା କହିଲେ—"ମୁଁ ହେବି ପୃଥିବୀର କନ୍ୟା । ମୁଁ ଅଯୋନିଜା ହୋଇ ପୃଥିବୀରେ ଅବତୀର୍ଣ୍ଣ ହେବି ।"

ଭଗବାନ କହିଲେ—"ହଉ, ମୁଁ ଆଗେ ଯାଉଛି, ତୁମେ ପଛେ ପଛେ ଆସ ।"

ସେହି ସମୟରେ ଚକ୍ରବର୍ତ୍ତୀ ମହାରାଜ ଦଶରଥଙ୍କ ପୁତ୍ରେଷ୍ଟି ଯଜ୍ଞ ସମାପ୍ତ ହେଲା । ପୂର୍ଣ୍ଣାହୁତି ପରେ ସ୍ୱୟଂ ହବ୍ୟବାହନ ଅଗ୍ନି ଏକ ସୁବର୍ଣ୍ଣ ପାତ୍ରରେ ପାୟସ ଧରି ପ୍ରକଟିତ ହେଲେ । ସେହି ପାୟସ ପାତ୍ର ରାଜା ଦଶରଥଙ୍କ ହାତକୁ ଟେକିଦେଇ ଅଗ୍ନିଦେବ କହିଲେ—"ଏହାକୁ ତୁମ ପତ୍ନୀମାନଙ୍କ ମଧ୍ୟରେ ଯଥାଯଥଭାବେ ବାଣ୍ଟିଦିଅ । ତୁମର ଅଭିଳାଷ ପୂର୍ଣ୍ଣହେବ ।"

ମହାରାଜ ଦଶରଥ ଆଦରରେ ସେହି ପାତ୍ର ଗ୍ରହଣ କରି ମସ୍ତକରେ ଧାରଣ କଲେ ଏବଂ ଗୁରୁଙ୍କ ଆଜ୍ଞାରେ ତାକୁ ଆଘ୍ରାଣ କରି ପାୟସକୁ ଦୁଇଭାଗ କରିଦେଲେ । ସେଥିରୁ ଗୋଟିଏ ଭାଗ କୌଶଲ୍ୟାଙ୍କୁ ଓ ଅନ୍ୟ ଭାଗଟି କୈକେୟୀଙ୍କୁ ଦେଇଥିଲେ । ମହାରାଜ ସୁମିତ୍ରାଙ୍କୁ ଦେବାପାଇଁ ଇଚ୍ଛା କରୁଥିଲେ ମଧ୍ୟ ବଡ଼ ରାଣୀ-ମାନଙ୍କ ଗୌରବ ବୃଦ୍ଧିପାଇଁ ସେ ନିଜେ ନ ଦେଇ ତାଙ୍କରଦ୍ୱାରା ଦେବାରେ ଅଭିଳାଷ ରଖିଥିଲେ । କୌଶଲ୍ୟା ଓ କୈକେୟୀ ନିଜ ନିଜ ଭାଗରୁ କିଛି କିଛି ସୁମିତ୍ରାଙ୍କୁ ଦେଲେ । ଏହିପରିଭାବେ ତିନି ରାଣୀ ସେହି ଦିବ୍ୟ ଅମୃତୋପମ ପାୟସ ପତିଙ୍କ ଆଦେଶରେ ଆଦରର ସହିତ ସେବନ କରିଥିଲେ । ପାୟସ ସେବନ ପରେ ତିନି ରାଣୀ ଗର୍ଭବତୀ ହେଲେ । ଶୁକ୍ଳପକ୍ଷର ଚନ୍ଦ୍ରକଳା ପରି ତିନିରାଣୀଙ୍କ ଗର୍ଭ ବଢ଼ିବାକୁ ଲାଗିଲା । ରାଜ୍ୟର ପ୍ରଜାଗଣ ଏହି ସମ୍ବାଦରେ ଆନନ୍ଦିତ ହେଲେ । ପୃଥିବୀ ଶସ୍ୟଶ୍ୟାମଳା ହୋଇଗଲା । ଦେବଗଣ ଖୁସିହେଲେ । ଅସୁରମାନଙ୍କ ତେଜ କ୍ଷୀଣହେବାକୁ ଲାଗିଲା । ରାକ୍ଷସମାନେ ଭୟଭୀତ ହୋଇପଡ଼ିଲେ । ସମସ୍ତଙ୍କ ମନରେ ଏକପ୍ରକାର ଅବ୍ୟକ୍ତ ଆନନ୍ଦ ଜାତହେଲା ।

ଗର୍ଭୋଦୟର ନବମ ମାସ ପୂର୍ଣ୍ଣ ହେବାପରେ ଶୁଭ ପକ୍ଷ, ଶୁଭ ତିଥି, ଶୁଭ ବାର, ଶୁଭ ମୁହୂର୍ତ୍ତ, ଶୁଭ ଗ୍ରହ ନକ୍ଷତ୍ର ଏକତ୍ରିତ ହେବାବେଳେ ଦିବସର ମଧ୍ୟ-ଭାଗରେ କୌଶଲ୍ୟାଙ୍କ ଗର୍ଭରୁ ଦ୍ୱିତୀୟ ସୂର୍ଯ୍ୟ ସ୍ୱରୂପ ଶିଶୁ ଜନ୍ମଗ୍ରହଣ କଲେ ।

ପୁତ୍ର ଜନ୍ମଗ୍ରହଣ କରିବାର ସମ୍ବାଦ ପ୍ରକାଶ ପାଇବାମାତ୍ରେ ଚାରିଆଡ଼େ ଶୁଭବାଦ୍ୟ ବାଜିଉଠିଲା । ସ୍ତ୍ରୀଲୋକମାନେ ମଙ୍ଗଳଗୀତ ଗାନକଲେ । ଦେବତାମାନେ ସ୍ୱର୍ଗରୁ ପୁଷ୍ପବୃଷ୍ଟି କଲେ । ସେଦିନ ଥିଲା ଚୈତ୍ର ଶୁକ୍ଳ ନବମୀ । ଶ୍ରୀରାମଚନ୍ଦ୍ର ସେହିଦିନ ପୃଥିବୀରେ ଅବତୀର୍ଣ୍ଣ ହୋଇଥିଲେ ।

## ଛପ୍‌ପୟ

ଅଗିନ କୁଣ୍ଡ ତେଁ ପ୍ରକଟ ଭୟୋ ପାୟସ ନୃପ ଦୀହ୍ନୋ ।
ତୀନୋ ରାନନ ଦୟୋ ଭାଗ ନ୍ୟାୟୋଚିତ କୀହ୍ନୋ ।।
ଗର୍ଭବତୀ ସବ ଭଈ ସବନ କେ ହୃଦୟ ହୁଲସାୟୋ ।
ଶୁଭ ମୁହୂର୍ତ୍ତ ଶୁଭ ସମୟ ରାମ କୌଶଲ୍ୟା ଜାୟୋ ।।
ଶୁକ୍ଳପକ୍ଷ ମାଧୁମାସ କୀ, ନବମୀ ଅତି ପାବନ ପରମ ।।
ପ୍ରକଟେ ରଘୁକୁଳ ଚନ୍ଦ୍ର ଶୁଭ, ଭୟୋ ଅଜନ୍ମା କୋ ଜନମ ।।



# ଶ୍ରୀରାମଙ୍କ ନାମକରଣ

ରାମ ଲକ୍ଷ୍ମଣ ଭରତ ଶତ୍ରୁଘ୍ନ ଇତି ସଂଜ୍ଞୟା ॥

( ଶ୍ରୀଭାଗ— ୯ସ୍କ-୧୦ଅ-୨ଶ୍ଳୋ )

## ଛପ୍‌ପୟ

କୈକେୟୀ ନେ କୁମର ଭରତ କୁଳଦୀପକ ଜାୟେ ।
ଜନମ ସୁତନ କୋ ସୁନତ ଅବନ ପେ ବଜତ ବଧାୟେ ॥
ସତୀ ସୁମିତ୍ରା ଜନେ ସଙ୍ଗ ଲକ୍ଷ୍ମଣ ରିପୁସୂଦନ ।
ଚାର ପୁତ୍ର ମୁଖ ନିରଖି ଭୂପ କୋ ଅତି ପ୍ରମୁଦିତ ମନ ॥
ନାମକରଣ ସଂସ୍କାର ଗୁରୁ, ସବକେ କୀନ୍ହେ ନେମ ତେଁ ।
ହେ୍ୱ ହର୍ଷିତ ମହିଷୀ ସବହିଁ, ପୁତ୍ରନ ପାଲେଁ ପ୍ରେମ ତେଁ ॥

ଏକ କାହାଣୀ ଅଛି । ଥରେ କେତେକ ଋଷି ଅଞ୍ଜନା ଦେବୀଙ୍କ ପାଖକୁ ଯାଇ କହିଲେ—"ଦେବୀ ! ତୁମେ ସଂସାରରେ ସମସ୍ତଙ୍କଠାରୁ ବଡ଼ । କାରଣ ତୁମର ପୁଅ କେବଳ ଏତେବଡ଼ ସମୁଦ୍ରକୁ ଲଙ୍ଘନ କରି ଯାଇପାରିଲା ।"

ଅଞ୍ଜନା କହିଲେ—"ଏହା ଆଉ ବଡ଼କଥା କଣ ? ଶ୍ରୀରାମଙ୍କ କୃପାଦ୍ୱାରା ହିଁ ପୁଅ ଏପରି କାର୍ଯ୍ୟ କରିପାରିଲା । ପୁଅ ମୋର ଥରେ ସମୁଦ୍ର ପାରି ହୋଇଥିଲା । କିନ୍ତୁ ଶ୍ରୀରାମଚନ୍ଦ୍ର ତ ସମୁଦ୍ରରେ ସେତୁ ବାନ୍ଧିଦେଲେ । ତେଣୁ ତାଙ୍କ ମା' ସମସ୍ତଙ୍କଠାରୁ ବଡ଼ ।"

ସମସ୍ତେ ମିଶି କୌଶଲ୍ୟାଙ୍କ ପାଖକୁ ଯାଇ କହିଲେ—"ମା' ଆପଣ ସମସ୍ତଙ୍କଠାରୁ ବଡ଼, କାରଣ ଆପଣଙ୍କ ପୁଅ ସମୁଦ୍ରରେ ସେତୁ ବାନ୍ଧିଦେଲେ ।"

ମା' କୌଶଲ୍ୟା ଶ୍ରୀରାମଙ୍କୁ ଡାକି କହିଲେ—"ରାମ ! ଏହି ମୁନିମାନେ କହୁଛନ୍ତି, ମୁଁ ସମସ୍ତଙ୍କଠାରୁ ବଡ଼ । କାରଣ, ତୁ ସମୁଦ୍ର ଉପରେ ସେତୁ ବାନ୍ଧିଛୁ, ଆଉ ମୁଁ ତୋର ମା ।"

ଶ୍ରୀରାମ କହିଲେ—"ମା, ବନ୍ଧଟିଏ ବାନ୍ଧିବା ବଡ଼କଥା ନୁହେଁ । କିନ୍ତୁ ଜନନୀ ହେଉଛନ୍ତି ସବୁଠାରୁ ବଡ଼ । ମହର୍ଷି ଅଗସ୍ତ୍ୟ ଏତେବଡ଼ ସାଗରକୁ ଥରକରେ ଚଳୁ କରିଦେଇଥିଲେ । ସେ ଦୃଷ୍ଟିରୁ ତାଙ୍କ ମା' ତୁମଠାରୁ ବଡ଼ ହୋଇଯିବେ ।" ମୁନିମାନେ ମିଶି ଅଗସ୍ତ୍ୟଙ୍କ ପାଖକୁ ଯାଇ କହିଲେ—"ଆପଣ ସମସ୍ତଙ୍କଠାରୁ ବଡ଼ । ଅଗସ୍ତ୍ୟ ମୁନି ହସି ହସି ଉତ୍ତର ଦେଲେ—"ଅଞ୍ଜନା ବଡ଼ ନୁହେଁ କି ହନୁମାନ ବଡ଼ ନୁହେଁ । କୌଶଲ୍ୟା କି ରାମ କେହି କାହାଠାରୁ ବଡ଼ ନୁହନ୍ତି । ତେଣୁ ମୁଁ ବଡ଼ ନୁହେଁ କି ମୋର ମା' ମଧ୍ୟ ବଡ଼ ନୁହେଁ । ସବୁଠୁ ବଡ଼ ହେଉଛି ରାମଙ୍କ ନାମ । ସେହି ନାମ ପ୍ରଭାବରେ ସେତୁବନ୍ଧ ବନ୍ଧାହେଲା, ମହାଦେବ ବିଷକୁ ହଜମ କରିଦେଲେ ଓ ମୁଁ ସମଗ୍ର ସାଗରକୁ ଚଳୁ କରିଦେଲି । ରାମଙ୍କଠାରୁ ବଳି ରାମ ନାମ ପବିତ୍ର ଓ ମଧୁମୟ ।"

ମହର୍ଷି ସୂତ କହିଲେ—"ମୁନିଗଣ ! ଚୈତ୍ର ଶୁକ୍ଳ ନବମୀ ଦିନ ଶ୍ରୀରାମଚନ୍ଦ୍ର ଜନ୍ମହେଲେ । ପରଦିନ କୈକେୟୀଙ୍କ ଗର୍ଭରୁ ରାମପ୍ରେମର ସାକାର ସ୍ୱରୂପ ଶ୍ରୀଭରତ ଆବିର୍ଭୂତ ହେଲେ । ଚୈତ୍ର ଶୁକ୍ଳ ଏକାଦଶୀ ଦିନ ସୁମିତ୍ରାଙ୍କ ଗର୍ଭରୁ ଅଶ୍ୱିନୀକୁମାର ତୁଲ୍ୟ ଲକ୍ଷ୍ମଣ ଓ ଶତ୍ରୁଘ୍ନ ଜନ୍ମଗ୍ରହଣ କଲେ । ଧର୍ମ, ଅର୍ଥ, କାମ ଓ ମୋକ୍ଷ, ଚତୁର୍ବର୍ଗ ପରି ଚାରିପୁଅ ଅନ୍ତଃପୁରକୁ ସୁଶୋଭିତ କରିବାକୁ ଲାଗିଲେ । ଚନ୍ଦ୍ରକୁ କୁମୁଦ ଚାହିଁଲା ପରି ଅନ୍ତଃପୁରବାସିନୀ ରମଣୀଗଣ ଶ୍ରୀରାମାଦି ଚାରିପୁଅଙ୍କୁ ବାତ୍ସଲ୍ୟସିକ୍ତ ନୟନରେ ଚାହିଁ ରହୁଥିଲେ । ଚାରିଜଣଯାକ ସମସ୍ତଙ୍କୁ ଅଖଣ୍ଡ ସୁଖ ଓ ସନ୍ତୋଷ ଦେଉଥିଲେ ।

ଦଶଦିନ ଅତିକ୍ରମ କଲାପରେ କୁଳଗୁରୁ ବଶିଷ୍ଠ ବାଳକମାନଙ୍କର ନାମକରଣ ସଂସ୍କାର କଲେ । କୌଶଲ୍ୟା ଯେତେବେଳେ ରାମଙ୍କୁ କୋଳରେ ଧରି ଆସିଲେ ସେତେବେଳେ ବଶିଷ୍ଠ ଖୁବ୍ ଖୁସି ହୋଇଗଲେ । ନିକଟରେ ମହାରାଜ ଦଶରଥ ବସିଥିଲେ । ଗୁରୁ ବଶିଷ୍ଠ କୌଶଲ୍ୟା ଶୁଣିପାରିବା ଭଳି ସ୍ୱରରେ କହିଲେ—କୌଶଲ୍ୟା ଆନନ୍ଦବର୍ଦ୍ଧନ ଏହି ଶିଶୁ, ସମସ୍ତଙ୍କୁ ଆହ୍ଲାଦିତ କରିବ । ସମସ୍ତେ ଏହି ଶିଶୁର ନାମ, ଗୁଣ, ରୂପ ସର୍ବଦା ଚର୍ଚ୍ଚା କରିବେ । ଯୋଗୀମାନେ ଯେଉଁ ନାମରେ ସର୍ବଦା ରମଣ କରିବେ ଶିଶୁର ସେହି ନାମ ରହିବ । ଏହି ଶିଶୁ ସଂସାରରେ 'ରାମ' ନାମରେ ପ୍ରସିଦ୍ଧ ହେବ । ଆହୁରି ବହୁତ ନାମ ଏହାର ହେବ କିନ୍ତୁ ପବିତ୍ର ମଧୁର ରାମ ନାମରେ

ସମସ୍ତ ପାପ ତାପ ଦୂର ହେବ । ରାମନାମ କହୁଥିବା ଲୋକ ପାଖରେ ପାପ ରହି- ପାରିବ ନାହିଁ । ରାମନାମର ମହିମା ମୁଁ ବା କ ଛାର, ସ୍ୱୟଂ ବ୍ରହ୍ମା ମଧ୍ୟ ତାଙ୍କ ଚାରି ମୁଖରେ ବର୍ଣ୍ଣନା କରିବାପାଇଁ ସମର୍ଥ ହେବେନାହିଁ ।

ମହାରାଣୀ କୈକେୟୀଙ୍କ ପୁତ୍ର ସମସ୍ତ ପ୍ରଜାଙ୍କର ଭରଣପୋଷଣ କରିବେ ଏବଂ ସବୁରି ହୃଦୟରେ ପ୍ରେମ ଓ ଆନନ୍ଦ ଭରିଦେବେ । ତେଣୁ ଏହି ଶିଶୁ ଭରତ ନାମରେ ବିଖ୍ୟାତ ହେବ । ସୁମିତ୍ରାଙ୍କ ସୌଭାଗ୍ୟ ବର୍ଦ୍ଧନକାରୀ, ଶୌର୍ଯ୍ୟବୀର୍ଯ୍ୟଶାଳୀ ଓ ଲକ୍ଷ୍ମୀସମ୍ପନ୍ନ ହୋଇଥିବାରୁ ଏହି ଶିଶୁ ଲକ୍ଷ୍ମଣ ନାମରେ ପରିଚିତ ହେବ । ଏ ହେବ ରାମଙ୍କ ପ୍ରାଣପ୍ରିୟ, ଯଶସ୍ୱୀ ଓ ସତ୍ୟମାର୍ଗର ଆଶ୍ରୟୀ । ତାଙ୍କ ସାନଭାଇ ବଳ, ପରାକ୍ରମ ଓ ତେଜରେ ଶତ୍ରୁ ଦହନ ଯୋଗ୍ୟ ହେବେ । ତେଣୁ ତାଙ୍କର ନାମ ରହିବ ଶତ୍ରୁଘ୍ନ । ଏହିପରି ଚାରିଭାଇ ଦୁଇ ଦୁଇ ଏକକ ରୂପେ ଅର୍ଥାତ୍ ରାମଲକ୍ଷ୍ମଣ ଓ ଭରତ ଶତ୍ରୁଘ୍ନ ଭାବରେ ମିଶି ରହିବେ ଏବଂ ଶ୍ରୀରାମଙ୍କଠାରେ ସମସ୍ତଙ୍କର ଅନ୍ତର୍ଭାବ ଏକାକାର ହେବ ।

ନିଜ ପୁତ୍ରମାନଙ୍କର ପ୍ରଶଂସା ଶୁଣି ମହାରାଜ ଦଶରଥ ପରମ ସନ୍ତୋଷ ଲାଭ କଲେ । କୁଳ ପୁରୋହିତ ବଶିଷ୍ଠଙ୍କ ସହିତ ବ୍ରାହ୍ମଣମାନଙ୍କୁ ପୂଜା ଓ ସତ୍କାର କଲେ ଏବଂ ଯାଚକମାନଙ୍କୁ ବହୁ ଧନରତ୍ନ ଦାନକଲେ । ସମସ୍ତେ ଆନ୍ତରିକତାର ସହିତ ବାଳକମାନଙ୍କୁ ଆଶୀର୍ବାଦ ଦେଇ ନିଜ ନିଜ ସ୍ଥାନକୁ ଫେରିଗଲେ । ପିଲାମାନେ ସମସ୍ତଙ୍କର ଆଦର ଓ ସ୍ନେହ ମଧ୍ୟରେ ବଢ଼ିବାକୁ ଲାଗିଲେ ।

ବାଲ୍ୟକାଳରୁ ଲକ୍ଷ୍ମଣ ଶ୍ରୀରାମଙ୍କର ଓ ଶତ୍ରୁଘ୍ନ ଭରତଙ୍କର ଅନୁଗତ ଥିଲେ । ପ୍ରଥମେ ପ୍ରଥମେ ଲକ୍ଷ୍ମଣ ବହୁତ କାନ୍ଦୁଥିଲେ । ଦେବୀ ସୁମିତ୍ରା ଦିନେ ଗୁରୁ ବଶିଷ୍ଠଙ୍କୁ ଡକାଇ ପଚାରିଲେ—"ପ୍ରଭୋ ! ଏ ପିଲାଟି ବହୁତ କାନ୍ଦୁଛି । କାହାରି ଖରାପ ଦୃଷ୍ଟି ତା ଉପରେ ପଡ଼ିନାହିଁ ତ ? କେହି କଣ ଗୁଣି କରିଛି କି ? ପିଲାଟାକୁ ଝଡ଼ା ଫୁଙ୍କା କରିବା ନା ଆଉ କିଛି ଉପାୟ ଅଛି କୁହନ୍ତୁ ।"

ବଶିଷ୍ଠ କିଛିସମୟ ଚିନ୍ତିବାପରେ କହିଲେ—"ରାଣୀମା, ଏହାର କାନ୍ଦ ବନ୍ଦ କରିବା ପାଇଁ ଗୋଟିଏ ଉପାୟ ଅଛି । ତୁମେ ଏହାକୁ ନେଇ ରାମର ଝୁଲାରେ ଶୁଆଇଦିଅ ।" ସୁମିତ୍ରା ତାହାହିଁ କଲେ । ରାମଙ୍କ ଝୁଲାରେ ଶୋଇବାମାତ୍ରେ ଲକ୍ଷ୍ମଣ କାନ୍ଦ ବନ୍ଦକରି ହସିବାକୁ ଲାଗିଲେ । ସୁମିତ୍ରା ଏକ ସହଜ ଉପାୟ ପାଇଗଲେ । ଲକ୍ଷ୍ମଣଙ୍କୁ ରାମଙ୍କ ଝୁଲାରେ ଓ ଶତ୍ରୁଘ୍ନଙ୍କୁ ଭରତଙ୍କ ଝୁଲାରେ ଶୁଆଇ ସୁମିତ୍ରା

ନିଶ୍ଚିନ୍ତହେଲେ । ଦୁଇ ପୁଅଙ୍କୁ କୌଶଲ୍ୟା ଓ କୈକେୟୀଙ୍କୁ ଦେଇ ସୁମିତ୍ରା ସେହି ଦୁଇ ଭଉଣୀଙ୍କ ସେବା କରିବାକୁ ଲାଗିଲେ ।"

ରାଜା ଦଶରଥଙ୍କର ଅନ୍ୟ ରାଣୀମାନେ ରାଜପୁଅଙ୍କୁ ନିଜ ନିଜର ପୁଅପରି ସ୍ନେହ କରୁଥିଲେ । ସେମାନଙ୍କ ମହଲରେ ପ୍ରତ୍ୟେକ ରାଣୀଙ୍କର ଗୋଟିଏ ଗୋଟିଏ ଝୁଲ ଥିଲା । ସମସ୍ତେ ନାନାପ୍ରକାର ଖେଳନା ସଜାଇ ରଖିଥିଲେ । ମା' ଝୁଲରେ ଶୁଆଇ ଦେବାମାତ୍ରେ ଆଉ ଜଣେ ରାଣୀ ଆସି ଛୁଆକୁ ଉଠାଇ ନେଇଯାଉଥିଲେ । ଦ୍ୱିତୀୟା ରାଣୀଙ୍କଠାରୁ ତୃତୀୟା ଓ ତାଙ୍କଠାରୁ ଚତୁର୍ଥୀ ରାଣୀ ପିଲାକୁ ନେଇ ଏଣେ ତେଣେ ବୁଲୁଥିଲେ । ଦୁଧ ପିଆଇବା ପାଇଁ ମା'କୁ ଛୁଆକୁ ଖୋଜି ପାଇବା ପାଇଁ ବହୁତ ସମୟ ଲାଗୁଥିଲା । ସମସ୍ତେ ପିଲାମାନଙ୍କୁ ପ୍ରାଣଠାରୁ ବଳି ଭଲ ପାଉଥିଲେ । ରାମ ସର୍ବଦା ଅନୁରାଗରେ ବୁଡ଼ି ରହୁଥିଲେ । ତାଙ୍କର ଆଖି ଦୁଇଟି ସୁନ୍ଦର ଓ ବଡ଼ ଦେଖାଯାଉଥିଲା । ନୟନ ତାଙ୍କର କମଳ ତୁଲ୍ୟ ଦେଖାଯାଉଥିବାରୁ ତାଙ୍କୁ କମଳ ନୟନ କୁହାଯାଉଥିଲା । ତାଙ୍କର ସର୍ବଜନପ୍ରିୟ ନାମଥିଲା ରାଜୀବଲୋଚନ । ପାଦ ତାଙ୍କର ପଦ୍ମ ପାଖୁଡ଼ା ପରି କୋମଳ ଓ ଆରକ୍ତ ଥିଲା । ସେ ଦୁଇଆଖି ବନ୍ଦକରି ହସୁଥିବା ସମୟରେ ଶରତ୍କାଳୀନ ଚନ୍ଦ୍ରକାନ୍ତ ମଣିରେ ଦୁଇଟି କମଳ ରଖିଲା ପରି ସୁନ୍ଦର ଦେଖାଯାଉଥିଲା । ରାମ ହସି ହସି ମା'ଙ୍କୁ ଜାବୁଡ଼ି ଧରିବାମାତ୍ରେ ମାତୃସ୍ତନରୁ ସ୍ୱତଃ କ୍ଷୀର ନିଃସରିତ ହେଉଥିଲା । ଘନକୃଷ୍ଣ କେଶରାଶିରେ ଆବୃତ ଶ୍ରୀରାମଙ୍କ ମୁଖମଣ୍ଡଳ ଚନ୍ଦ୍ରଜ୍ୟୋତ୍ସ୍ନା ରୂପକ ଅମୃତପାନ ପାଇଁ ଆସିଥିବା କ୍ଷୁଦ୍ର କ୍ଷୁଦ୍ର ନାଗ ପଦ୍ମପୁଷ୍ପ ସମ୍ମୁଖରେ କ୍ରୀଡ଼ା କଲାପରି ମନେ ହେଉଥିଲା, ଶୁକ୍ଳପକ୍ଷକାଳୀନ ଚନ୍ଦ୍ରପରି ପିଲାମାନେ ଧୀରେ ଧୀରେ ବଢ଼ିବାକୁ ଲାଗିଲେ । ଧୀରେ ଧୀରେ ସେମାନେ ଆଣ୍ଠେଇଲେ ଓ ଖେଳରେ ମାତି ଧୂଳିରେ ଧୂସରିତ ହେଲେ ।

ଜନନୀମାନେ ପୁତ୍ରଙ୍କର ମନୋହର ମୁଖ ଦେଖି ଆନନ୍ଦରେ ଅଧୀର ହୋଇ ପଡ଼ୁଥିଲେ । ବାରମ୍ବାର ସେମାନଙ୍କୁ ଛାତିରେ ଚାପି ଧରୁଥିଲେ । କ୍ଷୀର ଖୁଆଇ ଝୁଲରେ ଶୁଆଇ, ହାତଧରି ଚଲାଇ, ଗୀତଗାଇ ଖେଳାଇ ମା'ମାନେ ପିଲାମାନଙ୍କୁ ଲାଳନ ପାଳନ କରୁଥିଲେ । ନାନାପ୍ରକାର ବସ୍ତ୍ର, ଭୂଷଣରେ ପିଲାମାନଙ୍କୁ ସଜାଇ, ଆଖିରେ ମୋଟାଧାରରେ କଳାଦେଇ ମା'ମାନେ ଆନନ୍ଦିତ ହେଉଥିଲେ । ଏହିପରି-ଭାବେ ରାମ, ଲକ୍ଷ୍ମଣ, ଭରତ ଓ ଶତ୍ରୁଘ୍ନ, ସ୍ୱରଭାଇ ମା ଓ ମାତୃସ୍ଥାନୀୟା ଅନ୍ତଃପୁର-ବାସିନୀମାନଙ୍କ ସେବାଶୁଶ୍ରୂଷା, ସ୍ନେହ ଶ୍ରଦ୍ଧା, ଯତ୍ନ ଓ ସୁରକ୍ଷା ମଧ୍ୟରେ ବଡ଼ହେଲେ ।

ମହର୍ଷି ସୂତ କହିଲେ—ମୁନିଗଣ ! ଯାହା ଘରେ ଆନନ୍ଦମୟ ସାକ୍ଷାତ ପରଂବ୍ରହ୍ମ ବିରାଜିତ ତା'ର ସୌଭାଗ୍ୟ ଓ ସୁଖ ବିଷୟରେ କିଛି କହିବା ସମ୍ଭବ

ନୁହେଁ । ପରଂବ୍ରହ୍ମ ସେବାହିଁ ଜୀବର ପରମ ଲକ୍ଷ୍ୟ ଓ ତାହାହିଁ ମାନବ ଶରୀରର ସାର୍ଥକତା । ପିଲମାନେ ବଡ଼ହୋଇ ନାନାବିଧ ଖେଳ ଖେଳିବାକୁ ଲାଗିଲେ । ସାନ ଭାଇମାନଙ୍କ ସହିତ ଶ୍ରୀରାମଙ୍କର ଶିଶୁସୁଲଭ ଖେଳଦେଖି ସମସ୍ତେ ଅପାର ଆନନ୍ଦ ଲାଭକଲେ ।

## ଛପ୍ପୟ

ଅବ କୁଛ ଘୁଟୁଁଅନ ଚଲତ ଫିରତ ଇତ ଉତ ମହଲନ ମହଁ ।
ବଲ ବଲ ଜାଓଁୟ ମାତୁ କୁଲବତ ହଁସି ସୌନନ ମହଁ ॥
ଛୋଟୀ ଛୋଟୀ ଲଟୌଁ ଲଟକ ଆନନ ପେ ବଥରେ ॥
ଚମକଲୀ ଲଖି ବସ୍ତୁ ଦୌର ତାହିକୁଁ ପକରେଁ ॥
ପାନୀ କୁଁ ପପ୍ପା କହେଁ, ହପ୍ପା ମାଁଗେ ମାତୁତେଁ ।
ବପ୍ପା ଭୂପତି କୁଁ କହତ, ଧୂଳି ମଲତ ନିଜ ଗାତ ତେଁ ॥

# କାରୁଣିକ ରାମ

ତସ୍ୟାନୁଚରିତଂ ରାଜନ୍ନୃଷିଭିସ୍ତତ୍ତ୍ୱଦର୍ଶିଭିଃ ।
ଶ୍ରୁତଂ ହିବର୍ଣ୍ଣିତଂ ଭୂରି ତ୍ୱୟା ସୀତାପତେର୍ମୁହୁଃ ॥
(ଶ୍ରୀଭାଗ—୯ସ୍କ-୧୦ଅ-୩ଶ୍ଳୋ)

## ଛପ୍ପୟ

ଚଲତେ ସିଖବନ ହେତୁ ମାତୁ ପଗ ଘୁଂଘୁର ବାଁଧେ ।
ପାଁ ପାଁ ପୈୟାଁ ଚଲେ ମାତୁକୀ ଅଁଗଲୀ ସାଧେଂ ॥
କୁଆ ବଲ୍ଲୀ କାକ ପକରତେୱ୍ ହାତ ବଢ଼ାତେୱ୍ଁ ।
ଜବ ନହିଁ ଆତେୱ୍ଁ ହାଁଥ ରୋଇ ଜନନୀ ଢଁଗ ଜାତେୱ୍ଁ ॥
ସମ୍ମୁଖ ନିରଖତ ବସ୍ତୁ ଜୋ, କର ଉଠାୟ ମୁଖ ମହଁ ଧରତ ।
ତୋରତ ଫୋରତ ହଁସତ ସବ, ମନହର ଶିଶୁକ୍ରୀଡ଼ା କରତ ॥

କୃଷ୍ଣଚରିତ ସରସ ଶୃଙ୍ଗାରମୟ ଚରିତ । ରାମଚରିତ ଅତ୍ୟନ୍ତ କରୁଣାମୟ । ଲୋକେ ନବରସ କଥା କହନ୍ତି, କେହି କେହି କହନ୍ତି ରସସଂଖ୍ୟା ଦଶ । କିନ୍ତୁ ରସ ଯଥାର୍ଥରେ ଦୁଇଟି । ତାହା ହେଉଛି କରୁଣ ଓ ଶୃଙ୍ଗାର । ଏହି ଦୁଇଟି ରସ ବିବିଧ ରୂପରେ ଅଭିବ୍ୟକ୍ତ ହୁଅନ୍ତି । କରୁଣ ରସ ବିନା ସାହିତ୍ୟ ନିରର୍ଥକ । କାରଣ ମିଠେଇରୁ ମଧୁର ରସକୁ ପୃଥକ୍ କଲେ ତାହା ଯେପରି ଅନାବଶ୍ୟକ ମନେ ହୁଏ ସେହିପରି କରୁଣ ବିନା କୌଣସି ରସ ପରିପୁଷ୍ଟି ଲାଭ କରିପାରେ ନାହିଁ । ସବୁ ରସରେ କରୁଣ ରସର ଅନୁଭୂତି ଅନ୍ତର୍ନିହିତ ହୋଇ ରହିଥାଏ । କରୁଣ ରସ ବିନା କାବ୍ୟ ନୀରସ ହୋଇଯାଏ । ଶ୍ରୀରାମଚନ୍ଦ୍ର ପୃଥିବୀ ପୃଷ୍ଠରେ ଅବତୀର୍ଣ୍ଣ ହୋଇ କରୁଣ ରସର ଯେଉଁ ନିରବଚ୍ଛିନ୍ନ ଧାରା ସୃଷ୍ଟି

କରିଥିଲେ ତାହା ଆଜି ପର୍ଯ୍ୟନ୍ତ ଭକ୍ତମାନଙ୍କ ହୃଦୟକୁ ଶୀତଳତା ପ୍ରଦାନ କରୁଛି ଏବଂ ଅନନ୍ତକାଳ ପର୍ଯ୍ୟନ୍ତ ଅବିରଳ ଭାବେ ପ୍ରବାହିତ ହୋଇ ଜୀବଜଗତକୁ କୃତାର୍ଥ କରୁଥିବ ଏଥିରେ ସନ୍ଦେହ ନାହିଁ ।

ବିରହ, ଉତ୍କଣ୍ଠା ଓ ବିୟୋଗ ଅବସ୍ଥାରେ କରୁଣରସର ଉଦୟ ହୁଏ । କୃଷ୍ଣଚରିତ ଯୋଗର ଚରିତ, ସେଥିରେ ଥିବା ବିୟୋଗ କ୍ଷଣସ୍ଥାୟୀ । ସେହି ବିୟୋଗ ଇଚ୍ଛାକୃତ । ଶ୍ରୀକୃଷ୍ଣ ନିଜର ହୃଦୟେଶ୍ୱରୀଙ୍କଠାରୁ ପୃଥକ୍ ହୁଅନ୍ତି, କିନ୍ତୁ ଏହି ପୃଥକ୍ତ୍ୱ ପୂର୍ବ କଳ୍ପିତ । କଳ୍ପିତ ବିୟୋଗରେ ଦୁଃଖର ମାତ୍ରା ଅଳ୍ପ, ତାହା ପୁଣି ମିଳନ ପାଇଁ ଅଭିପ୍ରେତ । କିନ୍ତୁ ବିୟୋଗ ଅବସ୍ଥା ତାକୁ କୁହାଯାଏ, ଯେଉଁ ଅବସ୍ଥାରେ ଉଭୟ କାନ୍ଦନ୍ତି, ଛଟପଟ ହୁଅନ୍ତି ବା ପ୍ରଳାପ କରନ୍ତି । ଉଭୟଙ୍କ ବିୟୋଗର ଧାରା ସମାନ ରୂପେ ପ୍ରବାହିତ ହୁଏ । ଶ୍ରୀରାମଚନ୍ଦ୍ରଙ୍କ ଚରିତରେ କରୁଣାର ଯେଉଁ ସାକାର ରୂପ ପ୍ରତିଫଳିତ ହୁଏ, ତାହା ଅନ୍ୟତ୍ର ବିରଳ । ଶ୍ରୀରାମଙ୍କର ସାରା ଜୀବନ କେବଳ କାନ୍ଦିବାରେହିଁ ଅତିବାହିତ ହୋଇଛି । ଯୌବନରେ ତାଙ୍କୁ ଜଟାଧାରୀ ସନ୍ନ୍ୟାସୀ ହେବାକୁ ପଡ଼ିଛି । ଅରଣ୍ୟରେ ମାତା ପିତାଙ୍କୁ ସ୍ମରଣ କରି ସେ କାନ୍ଦିଛନ୍ତି, ବିପଦ ଉପରେ ବିପଦର ସମ୍ମୁଖୀନ ହୋଇଛନ୍ତି । ନିଜର ପ୍ରାଣ ପ୍ରିୟାଙ୍କ ବିରହରେ ସନ୍ତୁଳିତ ହୋଇଛନ୍ତି । କେତେ ଦୁଃଖ ସହିବା ପରେ ଅଳ୍ପକାଳ ପାଇଁ ଘଟିଥିବା ମିଳନ ପୁଣି ଚିର ବିୟୋଗରେ ପରିଣତ ହୋଇଛି । ସାରା ଜୀବନ କାନ୍ଦି କାନ୍ଦି ସେ କାରୁଣ୍ୟର ନଦୀକୁ ଅଧିକରୁ ଅଧିକ ବିସ୍ତାରିତ କରିଛନ୍ତି ।

✓ହୃଦୟରେ ଯାହାର କରୁଣା ନାହିଁ, ସ୍ନିଗ୍ଧତା ନାହିଁ କି ବିୟୋଗ ଦୁଃଖ ଅନୁଭବ କରିବାର ଶକ୍ତି ନାହିଁ ସେ ଶ୍ରୀରାମ ଚରିତକୁ ଯେତେଥର ପଢ଼ିଲେ ମଧ୍ୟ କିଛି ବୁଝି ପାରିବ ନାହିଁ କି ଅନୁଭବ କରିପାରିବ ନାହିଁ । ରାମଚରିତର ସୃଷ୍ଟି କରୁଣ ରସରୁ, ବିୟୋଗ ହେବାରେ ତାର ପରିପୁଷ୍ଟି ଘଟିଛି । ଭଗବାନ୍ ବାଲ୍ମୀକି ତମସା ନଦୀକୁ ସ୍ନାନ କରିବା ପାଇଁ ଯାଇଥିଲେ । ସେଠାରେ ଜଣେ ବ୍ୟାଧ କ୍ରୌଞ୍ଚମିଥୁନ ମଧ୍ୟରୁ ଗୋଟିଏ ପକ୍ଷୀକୁ ମାରିଦେଲା । ନିଜ ପତିର ବିୟୋଗରେ କ୍ରୌଞ୍ଚୀ ଅତି କରୁଣ ସ୍ୱରରେ ବିଳାପ କଲା । ପତି ବିୟୋଗରେ ବ୍ୟଥିତା କ୍ରୌଞ୍ଚୀର ହୃଦୟ ଦ୍ରବୀଭୂତ ହୋଇଗଲା । ନିଜ ଆଖି ଆଗରେ ଏହି ଅଭାବନୀୟ ଦୃଶ୍ୟ ଦେଖି ମୁନିଙ୍କ ହୃଦୟରେ କରୁଣାର ସ୍ରୋତ ଉଚ୍ଛୁଳି ଉଠିଲା । ସେ ଅତୀବ ମର୍ମାହତ ହୋଇ ପଡ଼ିଲେ ଏବଂ ନିଜକୁ ଭୁଲିଗଲେ । ସହସା ତାଙ୍କ ମୁଖରୁ ବିନା ସଂକଳ୍ପରେ ଏକ ଶ୍ଳୋକ ସ୍ୱତଃ ନିର୍ଗତ ହେଲା । ସେହି ଶ୍ଳୋକଟି ହେଲା ରାମଚରିତ ରଚନାର ମୂଳ ଉତ୍ସ । ଏହାହିଁ ରାମଚରିତ ସୃଷ୍ଟିର ପୃଷ୍ଠଭୂମି । ଆରମ୍ଭରୁ ଶେଷ ପର୍ଯ୍ୟନ୍ତ କେବଳ କରୁଣାହିଁ

ରାମଚରିତରେ ମୁଖ୍ୟରସ, ମୁଖ୍ୟ ଜୀବନ ରୂପେ ପ୍ରବାହିତ ହେଉଛି । ତେଣୁ ରାମାୟଣକୁ ଯେତେଥର ଶୁଣିଲେ ଶ୍ରୋତାର ମଧ୍ୟ ଉତ୍କଣ୍ଠା କେବେହେଲେ ହ୍ରାସପାଏ ନାହିଁ । ରାମ ଚରିତ ଶୁଣିବାରେ ଯାହା ହୃଦୟରେ ନୂତନତ୍ୱର ପ୍ରତୀତ ଆସେ ନାହିଁ ସେ ରାମାୟଣରେ ରସ ଆସ୍ୱାଦନ କରିପାରେ ନାହିଁ ।

ରାମାୟଣ ଶ୍ରବଣ କାଳରେ ଯାହାର ନୟନ ଯୁଗଳ ଲୋତକାପ୍ଳୁତ ହୁଏ ନାହିଁ, ତାକୁ କଠୋର ହୃଦୟ ବ୍ୟତୀତ ଆଉ କିଛି କୁହାଯାଇ ପାରିବ ନାହିଁ । ରାମ-ଚରିତ କାରୁଣିକ ଚରିତ ପାଠକ ଧୈର୍ଯ୍ୟ ସହକାରେ ନେତ୍ର ପଖାଳି ଓ ଏକାଗ୍ରଚିତ୍ତ ହୋଇ ରାମଚରିତ ଶୁଣିବା ଉଚିତ । ଶ୍ରୀରାମଙ୍କ ବାଲଚରିତ ଅତୀବ ସୁଖଦାୟକ । ହଜାର ହଜାର ବର୍ଷ ଧରି ଯେଉଁ ଜନନୀମାନେ ବାଳକ ମୁଖଦର୍ଶନ ପାଇଁ ଲାଳାୟିତ ହୋଇ ଆସୁଛନ୍ତି ସେମାନେ ଶ୍ରୀରାମଙ୍କ ବାଲକଚରିତ ଶ୍ରବଣରେ ନିଜର ମନୋବ୍ୟଥାକୁ ସମ୍ପୂର୍ଣ୍ଣରୂପେ ଭୁଲି ଯାଇଛନ୍ତି ।

ମହର୍ଷି ସୂତ କହିଲେ—"ହେ ମୁନିଗଣ ! ଶ୍ରୀରାମ, ଲକ୍ଷ୍ମଣ, ଭରତ ଓ ଶତ୍ରୁଘ୍ନ ମା'ମାନଙ୍କ ଆଙ୍ଗୁଳି ଧରି ଚାଲିବାକୁ ଆରମ୍ଭ କଲେ । ଖଣ୍ଡି ଖଣ୍ଡି କଥା କହିବାକୁ ଲାଗିଲେ । ବାଳ ସୁଲଭ ଲୀଳା ଖେଳାରେ ସେମାନେ ମାତା ପିତାଙ୍କର ଆନନ୍ଦ ବର୍ଦ୍ଧନ କଲେ । ମା'ମାନଙ୍କର ସମୟ ପିଲାମାନଙ୍କୁ ଖୁଆଇ ପିଆଇ, ଖେଳାଇ ବୁଲାଇ, ଦେଖାଶୁଣା କରିବାରେ କେତେବେଳେ କଟିଯାଉଥିଲା ତାହା ଜାଣି ହେଉ ନ ଥିଲା । ସକାଳେ ଉଠିବାମାତ୍ରେ ମା'ମାନେ ଅବକାଶ ଗୀତଗାଇ ପିଲାମାନଙ୍କୁ ନିଦରୁ ଉଠାଉଥିଲେ । ସେମାନଙ୍କ ମୁହଁ ଧୋଇ ଦେଇ କିଛି ବାଲଭୋଗ ଖୁଆଉ ଥିଲେ । ନିଜ ନିଜର ନିତ୍ୟକର୍ମ ସାରି ସୁଗନ୍ଧ ତେଲ ଲଗାଇଦେଇ ପିଲାମାନଙ୍କୁ ନେଇ ସରଯୂରେ ଗାଧୋଇ ଦେଉଥିଲେ । ମୁଣ୍ଡ କୁଣ୍ଡାଇ ବସ୍ତ୍ର ଓ ଅଳଙ୍କାର ପିନ୍ଧାଉଥିଲେ ଏବଂ ରାଜାଙ୍କ ପାଖରେ ନେଇ ଛାଡ଼ିଦେଉଥିଲେ । ମହାରାଜ ସେମାନଙ୍କୁ କୋଳକୁ ନେଇ ଆଦର କରୁଥିଲେ । ପିଲାମାନେ ଦଶରଥଙ୍କ ଦାଢ଼ୀ, ମୁକୁଟ ଟଣା ଓଟରା କରୁଥିଲେ । ମହାରାଜ ମୁକୁଟ ଓହ୍ଲାଇ ରାମଙ୍କ ମୁଣ୍ଡରେ ପିନ୍ଧାଇ ଦେଉଥିଲେ ।

ମହାରାଜ ଦଶରଥ ଭୋଜନ ସମୟରେ ପିଲାମାନଙ୍କୁ ନିଜ ଥାଳି ପାଖରେ ବସାଇ ଖୁଆଉ ଥିଲେ । ମହାରାଜ ନିଜ ପାଟିରେ କିଛି ଖାଦ୍ୟ ରଖିବାର ଦେଖି ରାମ ଥାଳିରୁ କିଛି ଖାଦ୍ୟ ଉଠାଇ ମହାରାଜଙ୍କ ପାଟିରେ ଦେବାକୁ ଇଚ୍ଛା କଲେ ମଧ୍ୟ ହାତ ନ ପାଇବାରୁ ବିବଶ ହୋଇ ପଡ଼ୁଥିଲେ । ଏହା ଦେଖି ଦଶରଥ ରାମଙ୍କୁ କୋଳକୁ

ନେଇଯାଇ ତାଙ୍କ ହାତର ଖାଦ୍ୟ ଖାଉଥିଲେ ଓ ତାଙ୍କ ମୁଖରେ ଚୁମ୍ବନର ରେଖା ଆଙ୍କି ଦେଉଥିଲେ । ଚୁମ୍ବନ ଦେବାବେଳେ ମହାରାଜଙ୍କ ମୁହଁରେ ଘିଅ, ଡାଲି, ଦହି ଆଦି ଲେଗିହୋଇ ଯାଉଥିଲା । ଏହା ଦେଖି ରାଣୀମାନେ ହସି ଉଠୁଥିଲେ । ପିଲାମାନେ ରାଜାଙ୍କ ମୁହଁରେ ଦହି, କ୍ଷୀର ଆଦି ତରଳ ଖାଦ୍ୟଦ୍ରବ୍ୟ ବୋଳି ଦେଉଥିଲେ । ପିଲାମାନେ ଖାଇବାବେଳେ କେତେବେଳେ ବାହାରକୁ ଦୌଡ଼ି ପଳାଇ ଯାଉଥିଲେ ତ, ଆଉ କେତେବେଳେ ମହାରାଜ ଦଶରଥଙ୍କ କୋଳରେ ଶୋଇ ପଡ଼ୁଥିଲେ । କେବେ କେବେ ବାପା ଡାକିଲେ ମଧ୍ୟ ପିଲାମାନେ ଖେଳରେ ମାତି ଖାଇବାକୁ ଆସୁ ନ ଥିଲେ । ସଚିବ, ସାମନ୍ତ ପ୍ରଭୃତିଙ୍କର ସମବୟସ୍କ ପିଲାମାନଙ୍କ ସହିତ ଚାରିଭାଇ ନାନାପ୍ରକାର ଖେଳ ଖେଳୁଥିଲେ ।

ପିଲାମାନେ ଛୋଟ ଛୋଟ ଧନୁ ତିଆରି କରି ଏକ କଳ୍ପିତ ଦୁର୍ଗକୁ ସମବେତ ହୋଇ ଆକ୍ରମଣ କରୁଥିଲେ । ସେମାନେ ବେଳେ ବେଳେ ଶ୍ରୀରାମଙ୍କୁ ରାଜା ରୂପେ ଅଭିଷେକ କରୁଥିଲେ । କେବେ କେବେ ଭରତ ଅଯୋଧ୍ୟାର ଆଦ୍ୟାଶକ୍ତି ଦେବୀଙ୍କ ସୁବର୍ଣ୍ଣ ପ୍ରତିମା ନେଇ ଆସି ଲୁଗାପଟା ପିନ୍ଧାଇ, ଓଢ଼ଣା ଦେଇ କନ୍ୟା ରୂପେ ସଜାଉଥିଲେ । ଶ୍ରୀରାମଙ୍କ ସହିତ ସେହି କନ୍ୟାର ବିବାହ ହେଉଥିଲା । ସମସ୍ତେ ବରଯାତ୍ରୀ ହୋଇ ଯାଉଥିଲେ । ମା'ଙ୍କ ପାଖରୁ କିଛି ଖାଦ୍ୟ ଆଣି ବରଯାତ୍ରୀମାନଙ୍କୁ ଖାଇବାକୁ ଦେଉଥିଲେ । ମା' ଆସି ହସି ହସି ପଚାରନ୍ତି—"ଭରତ ! ପୂଜାଘରୁ ଭଗବତୀ ପ୍ରତିମାଙ୍କୁ ଆଣି କୁଆଡ଼େ ନେଲୁ ? ସେ ହେଉଛନ୍ତି ଜଗତର ମାତା ।"

ଭରତ ଆନନ୍ଦିତ ହୋଇ କହନ୍ତି—"ମା, ସେ ଜଗତର ମାତା ହେଲେ ଶ୍ରୀରାମଚନ୍ଦ୍ର ହେଉଛନ୍ତି ଜଗତର ପିତା ।"

ଏହା ଶୁଣି ରାଣୀମାନେ ହସି ହସି କହୁଥିଲେ—"ଏବେ ଏମାନେ ପିଲା । କଣ ବୁଝୁଛନ୍ତି ? ଏହିପରି ସବୁବେ ଖେଳ ଚାଲି ପିଲାମାନେ ବଡ଼ ହେବା ପରେ ମହାରାଜା ଦଶରଥ କୁଳଗୁରୁ ବଶିଷ୍ଠଙ୍କୁ ଡକାଇ ଶ୍ରୀରାମ ସହିତ ଚାରିଭାଇଙ୍କର ଉପନୟନ ସଂସ୍କାର କଲେ ଓ ସେମାନଙ୍କୁ ମନ୍ତ୍ରଦୀକ୍ଷା ଦେଲେ । ଉପନୟନ ପରେ ପିଲାମାନେ ଅନ୍ତଃପୁର ଛାଡ଼ି ଗୁରୁ ଗୃହରେ ଯାଇ ରହିଲେ ଓ ସମସ୍ତ ଶାସ୍ତ୍ର ଅଧ୍ୟୟନ କରିବାକୁ ଲାଗିଲେ ।"

**ଛପ୍ପୟ**

ସଖନ ସଙ୍ଗ ମିଲି କରେଁ ଖେଲ ଅବ ଚାରେଁ ଭୈୟା ।
ଚରିତ ନିରଖି ନୃପ ସହିତ ମୁଦିତ ହୋଁ ତୀନୋଁ ମୈୟା ॥
ବଡ଼େ ଭୟେ ଉପନୟନ କର୍‌ୟୋ ଗୁରୁ ଗୃହ ଭିଜୱାୟେ ।
ମୁନି ବଶିଷ୍ଠ ପ୍ରଭୁ-ଶିଷ୍ୟ ପାଇ ଅତି ହିୟ ହରଷାୟେ ॥
ଗୁରୁ ଶୁଶ୍ରୂଷା କରହିଁ ସବ, ପଢ଼ହିଁ ପାଠ ଏକାଗ୍ର ଚିତ ।
ସମୟ ଶୀଲ ସଂକୋଚ ଯୁତ, ସୁନହିଁ ଶାସ୍ତ୍ର ଶ୍ରୁତି ତନ୍ତ୍ର ନିତ ॥

# ବିଶ୍ୱାମିତ୍ରଙ୍କ ଯଜ୍ଞରକ୍ଷା

ବିଶ୍ୱାମିତ୍ରାଧ୍ୱରେ ଯେନ ମାରୀଚାଦ୍ୟା ନିଶାଚରାଃ ।
ପଶ୍ୟତୋ ଲକ୍ଷ୍ମଣ ସ୍ୟୈବ ହତା ନୈରୃତ ପୁଙ୍ଗବାଃ ॥
(ଶ୍ରୀଭାଗ—୯ସ୍କ ୧୦ଅ ୫ ଶ୍ଲୋକ)

## ଛପ୍ପୟ

ସୀଖେ ସାଖେ ରାମ ଲୋକ ବ୍ୟୋହାର ଦିଖାୱେଁ ।
ଗୁରୁ ମହିମା କୋ ମର୍ମ ଶିଷ୍ୟ ବନ ସବହିଁ ସୁନାୱେଁ ॥
ସ୍ୱଳ୍ପ ସମୟ ମହଁ ଶାସ୍ତ୍ର ପଢ଼େ ଗୁରୁ ଚକିତ ଭୟେ ଅତି ।
ସ୍ୱୟଂ ସଚ୍ଚିଦାନନ୍ଦ ସମୁଝି ଅତି ବିମଳ ଭଇ ମତି ॥
ବୟ କିଶୋର ନେ ବରେ ଜନୁ, ଓଠନ ଛାଈ କାଲିମା ।
ପଦତଳ ଅଧର କପୋଲ ନ ହିଁ, ବଢ଼ୀ ସବନ କୀ ଲାଲିମା ॥

ପ୍ରଭୁ ଯେତେବେଳେ ମର୍ଯ୍ୟାଦା ସ୍ଥାପନ ପାଇଁ ଅବତୀର୍ଣ୍ଣ ହୁଅନ୍ତି ସେତେବେଳେ ସମସ୍ତ ପ୍ରକାର ପ୍ରାକୃତ ଲୀଳା ସାଧାରଣ ଲୋକଙ୍କ ପରି ପ୍ରଦର୍ଶନ କରିଥାନ୍ତି । ସେ ଲୀଳା ସର୍ବସାଧାରଣ ହେଲେମଧ୍ୟ ସେଥିରେ ଅତ୍ୟଧିକ ଆକର୍ଷଣ ଥାଏ । ସେଥିରେ ସରସତା ଓ ସୌନ୍ଦର୍ଯ୍ୟର ପୁଟ ଏପରିଭାବରେ ଲାଗିଥାଏ ଯେ, ଚିତ୍ତ ସେଇ ଆଡ଼କୁ ଆକର୍ଷିତ ହୋଇଯାଏ । ଲୋକ ବିମୋହିତ ହୋଇ ସେହି ଲୀଳା ଅବଲୋକନ କରେ । ପ୍ରଭୁଙ୍କର ଲୀଳା ପ୍ରାକୃତ ହେଲେବି ଅପ୍ରାକୃତ, ମାନବୀୟ ମନେ ହେଲେ ମଧ୍ୟ ଦିବ୍ୟ । ସେଥିରେ ବିଶ୍ୱକୁ ବିମୋହିତ କରିବାର ଶକ୍ତି ନିହିତ ଥାଏ । ଶ୍ରଦ୍ଧାର ସହିତ ଯେଉଁମାନେ ସେହି ଲୀଳା ଶ୍ରବଣ କରିବେ, ସେମାନେ ଲାଭବାନ୍ ହେବେ, ମାତ୍ର ଯେଉଁମାନେ ମାନବୀୟ ଭାବନାରେ ତାହାର ତର୍ଜମା କରିବସିବେ ସେମାନେ ମଣିଷ ହୋଇ ରହିଯିବେ ।

ଶ୍ରୀ ସୂତ ମହର୍ଷି କହିଲେ—"ମୁନିଗଣ ! ଶ୍ରୀରାମ ନିଜର ତିନି ଭାଇଙ୍କ ସହିତ ପଢ଼ିବା ପାଇଁ ଗୁରୁ ଗୃହକୁ ଗଲେ । ମା'ମାନଙ୍କଠାରୁ ଅଲଗା ହୋଇ ସେମାନେ ଗୁରୁ ଗୃହରେ ରହିଲେ । ଏବେ ତାଙ୍କ ପାଖରେ ରାଜକୀୟ ବସ୍ତ୍ରଭୂଷଣ ପରିବର୍ତ୍ତେ ମୁଞ୍ଜମେଖଳା, ଗୁରୁ ନାମକ ମୃଗର ଚର୍ମ ପରିଧାନ କଲେ । ଖଦିର ଦଣ୍ଡ ଧାରଣ କରି କୌପୀନ ପିନ୍ଧି ଗୁରୁଙ୍କଠାରୁ ଦୀକ୍ଷା ନେଇ ବିଦ୍ୟା ଅଧ୍ୟୟନ କରିବାରେ ଲାଗିଲେ । ବ୍ରହ୍ମଚାରୀ ବେଶରେ ଶ୍ରୀରାମ ବ୍ରହ୍ମଚର୍ଯ୍ୟର ସାକାର ମୂର୍ତ୍ତି ପରି ଦେଖା ଯାଉଥିଲେ । ଗୁରୁ ଥରେ ଯାହା ପଢ଼ାଇ ଦେଉଥିଲେ, ସେ ସାଙ୍ଗେ ସାଙ୍ଗେ ସବୁକଥା ମନେରଖି ନେଉଥିଲେ । ବେଦାଦି ଶାସ୍ତ୍ର ତ ତାଙ୍କର ସୃଷ୍ଟି । ତାଙ୍କର ନିଃଶ୍ୱାସରୁ ବେଦ, ଶାସନ ବ୍ୟବସ୍ଥାରୁ ଶାସ୍ତ୍ର, ସୃଷ୍ଟିର ସ୍ମରଣରୁ ସ୍ମୃତି ଆଦିର ଅଭ୍ୟୁଦୟ ଘଟିଛି । ତେଣୁ ତାଙ୍କ ସ୍ମୃତିଶକ୍ତି ବିଷୟରେ ଆଶ୍ଚର୍ଯ୍ୟ ହେବାର କଣ ଅଛି ? ପ୍ରଥମେ ବଶିଷ୍ଠ ଶ୍ରୀରାମଙ୍କ କୁଶାଗ୍ର ବୁଦ୍ଧି ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । କିନ୍ତୁ ଶ୍ରୀରାମ ଯେ ଜଣେ ପୁରାଣପୁରୁଷ ଏହା ମନେ ପଡ଼ିବାମାତ୍ରେ ସେ ଖୁସି ହୋଇଗଲେ । ଗୁରୁ ବଶିଷ୍ଠଙ୍କ ଶରୀର ରୋମାଞ୍ଚିତ ହୋଇ ଉଠିଲା । ସେ ମନେ ମନେ ନିଜ ଜୀବନକୁ ସାର୍ଥକ ହେଲା ବୋଲି ମନେ କଲେ ।

ଅଳ୍ପକାଳ ମଧ୍ୟରେ ଶ୍ରୀରାମ ବେଦାଦି ସମସ୍ତ ଶାସ୍ତ୍ର ଅଧ୍ୟୟନ ଶେଷ କଲେ । ଗୁରୁ ବଶିଷ୍ଠ ଯାଇ ମହାରାଜ ଦଶରଥଙ୍କୁ କହିଲେ—ରାଜନ୍ ! ଆପଣଙ୍କ ପୁଅମାନେ ସମସ୍ତ ବିଦ୍ୟାରେ ପାରଦର୍ଶୀ ହୋଇଗଲେଣି । ସେମାନଙ୍କୁ ଆଉ କୌଣସି ଶାସ୍ତ୍ର ପଢ଼ାଇବା ପାଇଁ ନାହିଁ । ବଶିଷ୍ଠଙ୍କ ମୁଖରୁ ଏଇକଥା ଶୁଣି ମହାରାଜ ଦଶରଥ ଆନନ୍ଦିତ ହେଲେ । ସେ ବୈଦିକ ବିଧି ଅନୁସାରେ ଖୁବ୍ ଆଡ଼ମ୍ବରପୂର୍ଣ୍ଣ ଉତ୍ସବର ଆୟୋଜନ କରି ପୁଅମାନଙ୍କୁ ଗୁରୁଗୃହରୁ ଫେରାଇ ଆଣିଲେ ।

ସେହି ସମୟରେ ମହର୍ଷି ବିଶ୍ୱାମିତ୍ର ପୂର୍ବଭାଗର ଏକ ଅରଣ୍ୟରେ ରହି ଘୋର ତପସ୍ୟା କରୁଥିଲେ । ଅସୁର, ରାକ୍ଷସମାନେ ଆସି ତାଙ୍କ ଯଜ୍ଞରେ ନାନା-ପ୍ରକାର ବିଘ୍ନ ସୃଷ୍ଟି କରୁଥିଲେ । ସେ ଇଚ୍ଛା କରିଥିଲେ ନିଜର ତପୋବଳଦ୍ୱାରା ରାକ୍ଷସମାନଙ୍କୁ ଧ୍ୱଂସ କରିପାରିଥାନ୍ତେ । କିନ୍ତୁ ସେ ଭାବିଲେ—ମୁଁ ଯେତେଥର କ୍ରୋଧ ପ୍ରକାଶ କରିଛି, ସେତେଥର ମୋର ହଜାର ହଜାର ବର୍ଷର ତପସ୍ୟାଫଳ ନଷ୍ଟହୋଇ ଯାଇଛି । ଥରେ ବଶିଷ୍ଠଙ୍କ ଉପରେ କ୍ରୋଧ କଲି, ସେଥିରେ ମୋର ପୂର୍ବ ତପସ୍ୟାଫଳ ନଷ୍ଟ ହୋଇଥିଲା । ତପସ୍ୟାରେ କ୍ରୋଧପ୍ରକାଶ କରିବା ଅଧଃପତନର ମୂଳକାରଣ । ଯେଉଁ ତପସ୍ୱୀ କ୍ରୋଧକରନ୍ତି, ତାଙ୍କର ତପସ୍ୟା ସଫଳ ହୁଏନାହିଁ । ତେଣୁ ଅସୁରହୁଅନ୍ତୁ ବା ରାକ୍ଷସ ହୁଅନ୍ତୁ ସେମାନଙ୍କ ପ୍ରତି ମୋର କ୍ରୋଧ କରିବା ଉଚିତ ହେବନାହିଁ । କିନ୍ତୁ କ୍ରୋଧ ନକଲେ ଯଜ୍ଞକାର୍ଯ୍ୟ ସମ୍ଭବ କିପରି ? ଅସୁରଗୁଡ଼ାକ ବଡ଼ ଉତ୍ପାତ

କରୁଛନ୍ତି । କଣ କରାଯିବ ? ଏହା ଭାବି ବିଶ୍ୱାମିତ୍ର ଧ୍ୟାନରେ ବସି ଜାଣିପାରିଲେ ଯେ ଦେବତାମାନଙ୍କ ଅନୁରୋଧରେ ଭୂମିଭାର ଦୂରକରିବା ପାଇଁ ଓ ଅସୁରମାନଙ୍କୁ ସଂହାର କରିବା ପାଇଁ ଜଗନ୍ନାଥ ଅଯୋଧ୍ୟାର ରାଜା ଦଶରଥଙ୍କ ପୁତ୍ରରୂପେ ଅବତୀର୍ଣ୍ଣ ହୋଇଛନ୍ତି । ବିଶ୍ୱାମିତ୍ର ଭାବିଲେ, ଯଦି ମହାରାଜ ଦଶରଥଙ୍କୁ ବୁଝାଇ ଶ୍ରୀରାମଙ୍କୁ ଏଠାକୁ ନେଇଆସିବି ତେବେ ମୋର ଯଜ୍ଞକାର୍ଯ୍ୟ ପୂର୍ଣ୍ଣ ହୋଇପାରିବ ଏବଂ ଅସୁରମାନେ ମଧ୍ୟ ନିପାତହେବେ । ଏକାଥରକେ ଦୁଇଟି କାର୍ଯ୍ୟ ସାଧିତହେବ । ମୋତେ ଆଉ ଅଯଥା କ୍ରୋଧକରି ତପୋବଳ ନଷ୍ଟ କରିବାକୁ ପଡ଼ିବ ନାହିଁ ।

ମହର୍ଷି ବିଶ୍ୱାମିତ୍ର ଏହିପରି ଭାବି ଶ୍ରୀରାମଙ୍କୁ ଆଣିବା ପାଇଁ ଅଯୋଧ୍ୟା ଅଭିମୁଖେ ଯାତ୍ରାକଲେ । ରାମଙ୍କୁ ଆଣିବା ବଡ଼ କଷ୍ଟକର ବ୍ୟାପାର ଥିଲା । କାରଣ, ମହାରାଜ ଦଶରଥ ଶ୍ରୀରାମଙ୍କୁ ପ୍ରାଣଠାରୁ ବଳି ଅଧିକ ଭଲ ପାଉଥିଲେ । କିନ୍ତୁ ରାମଙ୍କୁ ନ ଆଣିଲେ କାମ ଚଳିବ ନାହିଁ, ଏହା ଭାବୁ ଭାବୁ ମହର୍ଷି ଯାଇ ଅଯୋଧ୍ୟା ପୁରୀରେ ପହଞ୍ଚିଗଲେ । ରାଜପ୍ରାସାଦର ଦ୍ୱାରଦେଶରେ ଥିବା ଦ୍ୱାରୀ ମାଧ୍ୟମରେ ନିଜେ ଆସିଥିବାର ସମ୍ବାଦ ରାଜାଙ୍କ ପାଖକୁ ପଠାଇଦେଲେ ।

ମହାମୁନି ବିଶ୍ୱାମିତ୍ରଙ୍କ ଆଗମନ ସମ୍ବାଦ ପାଇ ମହାରାଜ ଦଶରଥ ବ୍ୟସ୍ତ-ହୋଇ ପଡ଼ିଲେ । ସେ ସିଂହାସନରୁ ଉଠିଆସି ଖାଲିପାଦରେ ବଶିଷ୍ଠଙ୍କୁ ଆଗରେ ରଖି ବିଶ୍ୱାମିତ୍ରଙ୍କୁ ସ୍ୱାଗତ କରିବା ପାଇଁ ଚାଲିଲେ । ଦ୍ୱାରଦେଶରେ ପହଞ୍ଚି ରାଜା ମୁନିଙ୍କ ପାଦପଦ୍ମରେ ପ୍ରଣାମ କଲେ ଓ ଶାସ୍ତ୍ରୀୟ ବିଧିରେ ସ୍ୱାଗତ ଜଣାଇଲେ । କପିଳା ଗାଈଟିଏ ଉପହାର ସ୍ୱରୂପ ଦେଇ ମହର୍ଷି ବିଶ୍ୱାମିତ୍ରଙ୍କୁ ପାଛୋଟି ନେଲେ ।

ପୂଜା ଓ ଅଭ୍ୟର୍ଥନା ପରେ ଉଭୟ ପରସ୍ପରକୁ କୁଶଳ ପ୍ରଶ୍ନ ପଚାରିଲେ । ଏହା ପରେ ମହାରାଜ ଦଶରଥ କହିଲେ—"ବ୍ରହ୍ମନ୍ ! ଆଜି ମୋର ଯଜ୍ଞାଦି ଶୁଭକର୍ମ ସଫଳ ହେଲା, ଗୃହ ମୋର ପବିତ୍ର ହେଲା ଓ ପିତୃଗଣ ମୁକ୍ତିଲାଭ କଲେ । ଆପଣଙ୍କ ପବିତ୍ର ପାଦଧୂଳି ପାଇଥିବାରୁ ମୁଁ ନିଜକୁ ଭାଗ୍ୟବାନ୍ ମନେ କରୁଛି । ଆପଣ ଦର୍ଶନଦେଇ ମୋତେ ଅତୀବ ଅନୁଗୃହୀତ କରିଛନ୍ତି । ବର୍ତ୍ତମାନ ମନରେ ମୋର ଇଚ୍ଛା ଜାତ ହେଉଛି, ଆପଣ କେବଳ ଦର୍ଶନ ଦେବାପାଇଁ ବିଜେ କରିଛନ୍ତି ନା ମୋ ପାଇଁ କୌଣସି ବିଶେଷ ଆଦେଶ ଦେବାପାଇଁ ଅଛି ?"

ଗମ୍ଭୀର ହୋଇ ବିଶ୍ୱାମିତ୍ର କହିଲେ—"ରାଜନ୍ ! ଗୋଟିଏ ଗୁରୁତର କାର୍ଯ୍ୟ ପାଇଁ ମୁଁ ଆପଣଙ୍କ ପାଖକୁ ଆସିଛି । ଆପଣ ମୋର ପ୍ରାର୍ଥନା ରକ୍ଷାକରିବା ପାଇଁ ପ୍ରତିଶ୍ରୁତି ଦେଲେ ମୁଁ କହିବି ।"

ଏହାଶୁଣି ଅଧୀର ହୋଇ ମହାରାଜ ଦଶରଥ ବିନୀତଭାବେ କହିଲେ—ପ୍ରଭୋ ! ଆପଣ ଏପରି କାହିଁକି କହୁଛନ୍ତି । ଏ ପ୍ରକାର ପ୍ରଶ୍ନ ଅନ୍ୟତ୍ର କରାଯାଇପାରେ । ମୁଁ ଆପଣଙ୍କର ଶିଷ୍ୟ, ସେବକ, ଅନୁଚର, ଭୃତ୍ୟ ତଥା ଆଦେଶ ପାଳକ । ଆପଣ ଆଦେଶ ଦେଲେ ଜୀବନ ବିନିମୟରେ ମୁଁ ଆପଣଙ୍କ କାର୍ଯ୍ୟ କରିବି । ଆପଣ ଯଦି ଇନ୍ଦ୍ରଙ୍କ ଆସନ ପାଇଁ କହିବେ, ତେବେ ଇନ୍ଦ୍ରଙ୍କୁ ଯୁଦ୍ଧରେ ପରାସ୍ତ କରି ମୁଁ ଆପଣଙ୍କୁ ଇନ୍ଦ୍ରାସନ ଦେଇପାରିବି । ଆପଣ ମୋର ସର୍ବସ୍ୱ । ଆପଣ କେଉଁ କାର୍ଯ୍ୟ ପାଇଁ ଆସିଛନ୍ତି ତାହା ଆଦେଶ ଦିଅନ୍ତୁ, ମୁଁ ନିଶ୍ଚୟ ପାଳନ କରିବି ।"

ମହାରାଜ ଦଶରଥଙ୍କ ଦୃଢ଼ତା ଦେଖି ବିଶ୍ୱାମିତ୍ର କହିଲେ—"ରାଜନ୍ ! ମୋର ଆଉ କିଛି ଦରକାର ନାହିଁ । ଆପଣଙ୍କର ଦୁଇ ପୁଅ ରାମ ଓ ଲକ୍ଷ୍ମଣଙ୍କୁ ମାଗି ନେବା ପାଇଁ ମୁଁ ଆପଣଙ୍କ ପାଖକୁ ଆସିଛି ।"

ଏହା ଶୁଣିବାମାତ୍ରେ ମହାରାଜ ଦଶରଥ ମୂର୍ଚ୍ଛିତ ହୋଇପଡ଼ିଲେ । ରାଜସଭାରେ ହାହାକାର ପଡ଼ିଗଲା । ସେବକ ସେବିକାମାନେ ପଙ୍ଖା ନେଇ ବିଞ୍ଚିଲେ । ସୁବାସିତ ଜଳ ମୁହଁରେ ଛିଞ୍ଚିଲେ ଏବଂ ରାଜାଙ୍କ ଆଡ଼କୁ ଚାହିଁ ରହିଲେ । ସମସ୍ତଙ୍କ ମୁଖରେ ବ୍ୟଗ୍ରତାର ରେଖା ଖେଳି ଯାଉଥିଲେ ମଧ୍ୟ ବିଶ୍ୱାମିତ୍ର ଗମ୍ଭୀର ହୋଇ ବସିଥିଲେ । କିଛି ସମୟପରେ ମହାରାଜ ସଚେତ ହୋଇ ଉଠିବାର ଦେଖି ମୁନି ଅଧିକାର ଜାହିର କରିବା ସ୍ୱରରେ ପୁଣି କହିଲେ—"ରାଜନ୍ ! କୁହ, କଣ କହୁଛ ? ପୁଅଙ୍କୁ ମୋ' ସହିତ ପଠାଇବ ନା ମିଥ୍ୟାବାଦୀ ରୂପେ ପରିଗଣିତ ହେବ ?"

ରାଜା ଅତୀବ ବିନୀତ ହୋଇ କହିଲେ—"ପ୍ରଭୋ ! ଆପଣ ମୋର ଏଇ ସୁକୁମାର କୁମାରଙ୍କୁ ନେଇ କଣ କରିବେ ? ସାଧୁ ମାନଙ୍କର ନୀରସ ଜୀବନ ସହି ରାଜକୁମାରମାନେ କିପରି ଅତିବାହିତ କରିବେ ?"

ମୁନି ବିଶ୍ୱାମିତ୍ର କହିଲେ—"ମୁଁ ଯେତେବେଳେ ଯଜ୍ଞ ଆରମ୍ଭ କରୁଛି ଠିକ୍ ସେତେବେଳେ ଅସୁର ଗୁଡ଼ାକ ଆସି ବଡ଼ ଗୋଳମାଳ କରୁଛନ୍ତି, ଯଜ୍ଞ କାର୍ଯ୍ୟରେ ବାଧା ଦେଉଛନ୍ତି । ସେହି ଅସୁରମାନଙ୍କ କବଳରୁ ରାମ ଓ ଲକ୍ଷ୍ମଣ ମୋର ଯଜ୍ଞରକ୍ଷା କରିବେ । ଏଇ ଦୁଇ ଭାଇଙ୍କ ଦ୍ୱାରା ସେମାନେ ନିହତ ହେବେ । ରାମ ଲକ୍ଷ୍ମଣଙ୍କ ଦ୍ୱାରା ଦୁଷ୍ଟମାନଙ୍କୁ ନିପାତ କରାଇ ପୃଥିବୀରେ ସାଧୁମାନଙ୍କୁ ଶାନ୍ତିରେ ରଖାଇବି ।"

ମହାରାଜ ଦଶରଥ କହିଲେ—"ବ୍ରହ୍ମନ୍ ! ଏହି କାର୍ଯ୍ୟ ମୁଁ ନିଜେ କରି ପାରିବି । ମୋର ଚତୁରଙ୍ଗ ବାହିନୀ ନେଇ ମୁଁ ଆପଣଙ୍କ ସହିତ ଯିବି । ଆପଣଙ୍କ

ଯଜ୍ଞଭୂମିକୁ ଘୃରଆଡ଼ୁ ଜଗି ରହିବ । ରାକ୍ଷସମାନେ ସେଠାକୁ ଆସିବାର ସୁଯୋଗ ପାଇବେ ନାହିଁ । ଏ ପିଲାଗୁଡ଼ାକ ଏପର୍ଯ୍ୟନ୍ତ ଯୁଦ୍ଧକଳା ବିଷୟରେ ବିଶେଷ କିଛି ଜାଣନ୍ତି ନି । ସେମାନେ ରାକ୍ଷସମାନଙ୍କୁ କିପରି ସଂହାର କରି ପାରିବେ ?"

ମୁନି ବିଶ୍ୱାମିତ୍ର କହିଲେ—"ରାଜନ୍ ! ଏହା ଆପଣଙ୍କ ମର୍ଯ୍ୟାଦା ଅନୁରୂପ କାର୍ଯ୍ୟ ନୁହେଁ । ଆପଣ ସେହି ରାକ୍ଷସମାନଙ୍କୁ ମାରିପାରିବେ ନି ଆପଣଙ୍କ ସେନାବାହିନୀ ମଧ୍ୟ ସେମାନଙ୍କର କିଛି କରିପାରିବ ନାହିଁ । କାରଣ, ରାକ୍ଷସମାନଙ୍କର ରାଜା ରାବଣର ପ୍ରେରଣାରେ ସୁନ୍ଦ, ଉପସୁନ୍ଦ, ମାରୀଚ, ସୁବାହୁ ଆଦି ବହୁ ରାକ୍ଷସ ଆସି ମୋ' ଯଜ୍ଞରେ ବିଘ୍ନ ସୃଷ୍ଟି କରୁଛନ୍ତି । ସେମାନଙ୍କୁ ମୁଁ ଭୟ କରେ । ରାମଙ୍କ ଦ୍ୱାରାହିଁ ସେମାନେ ନିହତ ହେବେ ।"

ଅସୁରାଧିପତି ରାବଣର ନାମ ଶୁଣିବା ମାତ୍ରେ ରାଜା ଭୟଭୀତ ହୋଇ ପୁଣି କହିଲେ—"ପ୍ରଭୋ ! ସେହି ଦୁଷ୍ଟ ରାବଣ ତିନି ଲୋକକୁ ଜୟ କରି ସାରିଛି । ଆମର ପୂର୍ବଜ ମହାରାଜ ଅରଣ୍ୟ ତାଙ୍କର ଦ୍ୱାରା ନିହତ ହୋଇଥିଲେ । ମୁଁ ସେହି ରାବଣ ସହିତ ଯୁଦ୍ଧ କରି ପାରିବି ନାହିଁ । ସୁନ୍ଦ ଓ ଉପସୁନ୍ଦଙ୍କ ପରାକ୍ରମ କଥା ମୁଁ ପୂର୍ବରୁ ଶୁଣିଛି । ମୋ' ସହିତ ମୋର ଚତୁରଙ୍ଗ ବାହିନୀ ଓ ସାମନ୍ତ ରାଜନ୍ୟବର୍ଗ ମିଳିମିଶି ଯୁଦ୍ଧ କଲେ ମଧ୍ୟ ଆମେ ମହାବଳୀ ରାବଣକୁ ଯୁଦ୍ଧରେ ଜୟ କରିପାରିବା ନାହିଁ । ସେହିପରି ବୀରମାନଙ୍କ ସହିତ ଯୁଦ୍ଧ କରିବା ପାଇଁ ମୋ' ପୁଅଙ୍କୁ ମୁଁ କେବେହେଲେ ଛାଡ଼ିବି ନାହିଁ । ଆପଣ ଇଚ୍ଛା କଲେ ମୋତେ ଅଭିଶାପ ଦେଇ ଭସ୍ମ କରି ଦିଅନ୍ତୁ ।"

ମହାରାଜ ଦଶରଥଙ୍କ କଥା ଶୁଣି ମୁନି ବିଶ୍ୱାମିତ୍ର ରାଗିଗଲେ । ସେ ରାଜାଙ୍କୁ ନାନା ଉପାୟରେ ଧମକ ଦେଲେ, ଭୟଭୀତ କରାଇଲେ । ସାମ, ଦାନ, ଭେଦ, ଦଣ୍ଡ ସମସ୍ତ ଉପାୟ ପ୍ରୟୋଗ କରି ରାଜାଙ୍କୁ ବିବଶ କରାଇଲେ । ରାଜା ଭୟରେ ଥରୁଥିଲେ ମଧ୍ୟ ରାମ ଲକ୍ଷ୍ମଣଙ୍କୁ ଦେବା ପାଇଁ ଆଦୌ ରାଜି ହୋଇ ପାରିଲେ ନାହିଁ । ବିଶ୍ୱାମିତ୍ର ରାମଙ୍କ ପ୍ରଭାବ ବିଷୟରେ ବହୁତ ବୁଝାଇଲେ । ରାମ ସ୍ୱୟଂ ବିଷ୍ଣୁ ବୋଲି ପ୍ରମାଣିତ କଲେ । ନିଜର ତପୋବଳ ଦେଖାଇ ରାମ ଲକ୍ଷ୍ମଣଙ୍କୁ ସେ ରକ୍ଷା କରିବେ ବୋଲି ଆଶ୍ୱାସନା ଦେଲେ । ତଥାପି ରାଜା ଦଶରଥ ରାଜି ହେଲେ ନାହିଁ । ରାମ ଲକ୍ଷ୍ମଣଙ୍କୁ ନେବା ପାଇଁ ବିଶ୍ୱାମିତ୍ର ଆଗ୍ରହୀ ଥିଲେ । ମହାରାଜ ଦଶରଥ ମଧ୍ୟ ପୃଥିବୀ ଓଲଟି ପଡ଼ିଲେ, ଚନ୍ଦ୍ର ସୂର୍ଯ୍ୟ ଏପାଖ ସେପାଖ ହୋଇଗଲେ, ଅଗ୍ନି ଶୀତଳ ହୋଇ ଗଲେ କି ଚନ୍ଦ୍ର ପୃଥିବୀ ଉପରେ ଖସି ପଡ଼ିଲେ ସୁଦ୍ଧା ରାମ ଲକ୍ଷ୍ମଣଙ୍କୁ ମୁନିଙ୍କ ସହିତ ବନକୁ ନ ପଠାଇବା ପାଇଁ ମନେ ମନେ ସ୍ଥିର କରିଥିଲେ ।

ମୁନି ଓ ରାଜାଙ୍କ ମନୋଭାବକୁ ଲକ୍ଷ୍ୟ କରି କୁଳଗୁରୁ ବଶିଷ୍ଠ ଦଶରଥଙ୍କୁ ନାନା ଭାବରେ ବୁଝାଇଲେ । ମୁନି ଋଷିମାନଙ୍କ ତେଜର ମହତ୍ତ୍ୱ କଥା କହିଲେ । ରାମଚନ୍ଦ୍ରଙ୍କ ପ୍ରଭାବ ବିଷୟ ବୁଝାଇଲେ । ଶେଷରେ ରାଜା ନିରୁପାୟ ହୋଇ ରାମ ଲକ୍ଷ୍ମଣଙ୍କୁ ବିଶ୍ୱାମିତ୍ରଙ୍କ ସହିତ ପଠାଇବା ପାଇଁ ରାଜି ହେଲେ । ସେ ଦୁଇ ପୁଅଙ୍କୁ ଡକାଇଲେ ଏବଂ କାନ୍ଦି କାନ୍ଦି ବିଶ୍ୱାମିତ୍ର ଓ ବଶିଷ୍ଠଙ୍କ ଆଦେଶ ଶୁଣାଇଦେଲେ । ରାମ ଲକ୍ଷ୍ମଣ ଯଜ୍ଞରକ୍ଷା ପାଇଁ ଯିବାକଥା ଶୁଣି ଖୁସି ହୋଇଗଲେ । ମାତା, ପିତା ଓ ଗୁରୁଜନଙ୍କୁ ପ୍ରଣାମ ଜଣାଇ ଦୁଇ ଭାଇ ମୁନିଙ୍କ ପଛେ ପଛେ ବାହାରିଲେ । ସେତେବେଳେ ମହାରାଜ ଦଶରଥ ବ୍ୟାକୁଳ ହୋଇ କାନ୍ଦୁଥିଲେ । ତାଙ୍କର କେଶରାଶି ବିକ୍ଷିପ୍ତ ହୋଇ ପଡ଼ିଥିଲା । ସେ ଅଧୀର ହୋଇ ଦୀର୍ଘନିଶ୍ୱାସ ଛାଡ଼ୁଥିଲେ । ରାମ ଓ ଲକ୍ଷ୍ମଣ ଆଖି ଆଗରୁ ଅଦୃଶ୍ୟ ହେବା ପର୍ଯ୍ୟନ୍ତ ସେ ଚାହିଁ ରହିଥିଲେ । ଏହାପରେ ମହାରାଜ ଦଶରଥ ମୂର୍ଚ୍ଛିତ ହୋଇ ପଡ଼ିଗଲେ । ମହର୍ଷି ବଶିଷ୍ଠ ନାନା ଉଦାହରଣ ଦେଇ ଓ ପୁରାଣ କାହାଣୀ କହି ରାଜାଙ୍କୁ ବୁଝାଇଲେ । ମୁନିଙ୍କ ସହିତ ଯିବାଦ୍ୱାରା ରାମ ଲକ୍ଷ୍ମଣଙ୍କର କଲ୍ୟାଣ ହେବ ବୋଲି କହିଲେ । ରାମ ଲକ୍ଷ୍ମଣଙ୍କ ବନଗମନ ଦ୍ୱାରା ସଂସାରର ମଙ୍ଗଳ ସାଧିତ ହେବ ବୋଲି ବୁଝି ମହାରାଜ ଦଶରଥ ଆଶ୍ୱସ୍ତ ହେଲେ ଓ ଧୈର୍ଯ୍ୟ ଧାରଣ କଲେ ।

ସରଯୂ ନଦୀ କୂଳରେ ଯାଉଁ ଯାଉଁ ସୂର୍ଯ୍ୟ ଅସ୍ତ ହୋଇ ଗଲେ । ମହର୍ଷି ବିଶ୍ୱାମିତ୍ର କହିଲେ—"ରାମଭଦ୍ର ! ତୁମର କଲ୍ୟାଣ ହେଉ । ତୁମେ ଦୁହେଁ ଭୟକରୁ ନାହଁ ତ ? କିଛି ଭୟ କରିବାର ନାହିଁ । ଦେଖ, ଭଗବାନ୍ ଭୁବନ ଭାସ୍କର ଅସ୍ତାଚଳ ପଛରେ ଲୁଚି ଗଲେଣି । ପକ୍ଷୀମାନେ ନିଜ ନିଜ ବସାକୁ ଫେରିଗଲେଣି । ସନ୍ଧ୍ୟା ସମୟ ଅତୀତ ହେବାକୁ ଯାଉଛି । ଆଜି ରାତିରେ ଆମେ ଏଇ ଗଛ ମୂଳରେ ରହିବା ।"

ରାମଚନ୍ଦ୍ର କହିଲେ—"ଭଗବନ୍ ! ସବୁଭୟ ନିବାରକ ହେଉଛନ୍ତି ଆପଣ । ଆପଣଙ୍କ ବରଦ ହସ୍ତ ଆମ ଉପରେ ଥିବା ପର୍ଯ୍ୟନ୍ତ ଆମେ କାହାରିକୁ ଭୟ କରିବୁ ନାହିଁ । ଆପଣ ଯାହା ଆଦେଶ ଦେବେ ତାହା ଅକ୍ଷରେ ଅକ୍ଷରେ ଆମେ ପାଳନ କରିବୁ ।"

ଶ୍ରୀରାମଙ୍କର ମିତ ଓ ସାରଗର୍ଭିତ କଥା ଶୁଣି ମୁନି ବିଶ୍ୱାମିତ୍ର ସେହି ଗଛ ମୂଳରେ ରହିଲେ ଓ ନିତ୍ୟକୃତ୍ୟ ସାରି ରାତିଟି କଟାଇଲେ । ସକାଳେ ମୁନି ଦୁଇ ଭାଇଙ୍କୁ ସ୍ନେହରେ ଡାକି ଉଠାଇଲେ । ନିତ୍ୟକର୍ମ ସାରି ସମସ୍ତେ ପୁଣି ଚାଲିବାକୁ ଲାଗିଲେ । ବାଟରେ ବଡ଼ ମୁହଁ, ଲମ୍ବା ଲମ୍ବା ଦାନ୍ତ ଥିବା ତାଡ଼କା ରାକ୍ଷସୀ ସହିତ

ଭେଟ ହେଲା । ପାଟି ତା'ର ପାହାଡ଼ ଗୁମ୍ଫା ପରି ଦେଖାଯାଉଥିଲା । ତାର ଦାନ୍ତ-ଗୁଡ଼ିକ ଲଙ୍ଗଳର ଲୁହାଫଳ ପରି ଦେଖାଯାଉଥିଲା । କୁଲା ପରି କାନ, ପର୍ବତ ପରି ସ୍ତନ, ଝାଡ଼ପରି ଲମ୍ବା ବାଳ, ବଡ଼ ବଡ଼ ହାତ ଆଉ ତାଡ଼କାର ବିକଟାଳ ରୂପ ଦେଖି ମଧ୍ୟ ରାମଚନ୍ଦ୍ର ଟିକିଏ ହେଲେ ବିଚଳିତ ନ ହୋଇ ପଚାରିଲେ—"ପ୍ରଭୋ ! ଏଇ ବିକଟ ଆକାରର ରାକ୍ଷସୀଟି କିଏ ?"

ମୁନି ବିଶ୍ୱାମିତ୍ର କହିଲେ—"ଏ ସୁକେତୁ ନାମକ ଯକ୍ଷର ଝିଅ ଓ ସୁନ୍ଦ ରାକ୍ଷସର ପତ୍ନୀ । ଏ ରାକ୍ଷସୀର ନାମ ତାଡ଼କା । ବଡ଼ ଦୁଷ୍ଟା ଏ ରାକ୍ଷସୀ । ରାମଚନ୍ଦ୍ର ! ତୁମେ ଏହାକୁ ତୁରନ୍ତ ହତ୍ୟା କର ।"

ଶ୍ରୀରାମଚନ୍ଦ୍ର ପଚାରିଲେ—"ପ୍ରଭୋ ! ମୋ'ତେ ତ ଏପରି ଦୁଷ୍ଟଙ୍କୁ ମାରିବାକୁ ପଡ଼ିବ । ଏହି ତାଡ଼କାଠାରୁ କଣ ଆରମ୍ଭ କରିବି ? ସ୍ତ୍ରୀମାନେ ଅବଧ୍ୟା ବୋଲି କୁହାଯାଏ ।"

ବିଶ୍ୱାମିତ୍ର କହିଲେ—"ବାବୁ ! ବେଦାଦି ଶାସ୍ତ୍ରକୁ ମୋ' ପରି ମୁନି ଋଷିମାନେ ପ୍ରକାଶ କରିଛନ୍ତି । ସ୍ତ୍ରୀ ଅବଧ୍ୟା, ଏହା ଶାସ୍ତ୍ରରେ ଅଛି । କିନ୍ତୁ ଯେ ସମସ୍ତଙ୍କୁ ସବୁବେଳେ କଷ୍ଟ ଦିଏ, ଯାହା ପାଇଁ ସାଧାରଣ ଜୀବ ଦୁଃଖରେ ରହନ୍ତି, ଯେ ହିଂସୁକ, କ୍ରୂର, ସର୍ବଦ୍ୱେଷୀ, ସେ ସ୍ତ୍ରୀ ହେଉ ବା ପୁରୁଷ ହେଉ ଅଥବା ନପୁଂସକ ହେଉ, ଜନସାଧାରଣଙ୍କ ମଙ୍ଗଳାଭିଳାଷୀ ରାଜା ତାକୁ ଅବିଳମ୍ବେ ବିନାଶ କରନ୍ତି । ତେଣୁ ତୁମେ କାରଣ ନ ପଚାରି ବର୍ତ୍ତମାନ ତାଡ଼କାକୁ ମାରିଦିଅ ।"

ଗୁରୁଙ୍କ ଆଦେଶ ଅନୁସାରେ ଶ୍ରୀରାମଚନ୍ଦ୍ର ଧନୁ ଉଠାଇ ରାକ୍ଷସୀ ଆଡ଼କୁ ଦୌଡ଼ିଗଲେ । ଶ୍ରୀରାମଙ୍କୁ ଆସୁଥିବାର ଦେଖି ତାଡ଼କା ପାଟି ମେଲି କରି ତାଙ୍କୁ ଖାଇବା ପାଇଁ ଦୌଡ଼ିଲା । ରାକ୍ଷସୀର ଏପରି ଭୟଙ୍କର ରୂପ ଦେଖି ଲକ୍ଷ୍ମଣ ଟିକିଏ ଭୟ କଲେ । କିନ୍ତୁ ରାମଙ୍କର ଟିକିଏ ହେଲେ ଭୟ ନଥିଲା । ରାମଚନ୍ଦ୍ର ଧନୁର ଜ୍ୟାକୁ କାନ ପର୍ଯ୍ୟନ୍ତ ଆମଞ୍ଚନ କରି ରାକ୍ଷସୀର ଛାତିକୁ ଲକ୍ଷ୍ୟ କରି ଏକ ତୀକ୍ଷ୍ଣ ବାଣ ନିକ୍ଷେପ କଲେ । ଛାତିରେ ବାଣଟି ଫୁଟିଯିବା ମାତ୍ରେ ରାକ୍ଷସୀ ଏକ ବଡ଼ ପାହାଡ଼ ଧସିଗଲା ପରି ମାଟିଉପରେ କଚାଡ଼ି ପଡ଼ିଲା । ତା'ର ଆଖିଦିଟା ବାହାରକୁ ବାହାରି ଆସିଲା । ମୁହଁବାଟେ ରକ୍ତ ବାହାରି ଆସିଲା ଓ ତା'ର ପ୍ରାଣହୀନ ଦେହ ମାଟି ଉପରେ ସ୍ଥିରହୋଇ ରହିଗଲା ।

ତାଡ଼କାର ମୃତ୍ୟୁ ପରେ ଦେବଗଣ ଶ୍ରୀରାମଙ୍କ ଉପରେ ପୁଷ୍ପବୃଷ୍ଟି କଲେ । ମୁନିମାନେ ଜୟଧ୍ୱନି କଲେ । ବିଶ୍ୱାମିତ୍ର ଆନନ୍ଦରେ ରାମଙ୍କ ମସ୍ତକ ଆଘ୍ରାଣ କଲେ

ଏବଂ ବଳା ଓ ଅତିବଳା ନାମକ ବିଦ୍ୟା ତାଙ୍କୁ ପ୍ରଦାନ କଲେ । ଏହାପରେ ସମସ୍ତେ ପୁଣି ଗନ୍ତବ୍ୟ ପଥରେ ଚାଲିବାକୁ ଲାଗିଲେ । ସେତେବେଳକୁ ସୂର୍ଯ୍ୟ ଅସ୍ତାଚଳ ଆଡ଼କୁ ଦ୍ରୁତ ବେଗରେ ଯାଉଥିଲେ । ମୁନି ବିଶ୍ୱାମିତ୍ର କହିଲେ—"ରାମଭଦ୍ର ! ଦେବତା, ଯକ୍ଷ, ରାକ୍ଷସ ଯେଉଁ କାର୍ଯ୍ୟ କରିପାରି ନଥିଲେ ତାହା ଆଜି ତୁମଦ୍ୱାରା ସାଧିତ ହୋଇଛି । ଯକ୍ଷପୁତ୍ରୀ ଓ ରାକ୍ଷସପତ୍ନୀ ତାଡ଼କା ବ୍ରହ୍ମାଙ୍କ ବରରେ ସହସ୍ର ହସ୍ତିମାର ବଳ ଲାଭ କରିଥିଲା । ତାକୁ ମାରିବା ପାଇଁ କେହି ସମର୍ଥ ନଥିଲେ । ତାଡ଼କା ନିର୍ଦ୍ଦୟରେ ସମସ୍ତ କଷ୍ଟ ହେଉଥିଲା । ଆଜି ତାଙ୍କୁ ସଂହାର କରି ତୁମେ ଜଗତର ମହତ୍ କଲ୍ୟାଣ ସାଧନ କରିଛ । ଆଜିଠାରୁ ଏହି ଅରଣ୍ୟ ନିଷ୍କଣ୍ଟକ ହୋଇଗଲା । ଆଜି ରାତିରେ ଆମେ ଏଇଠି ରହିବା । ତୁମେ ଅବସ୍ଥାନ କଲେ ଏହି ବନ ତୀର୍ଥରେ ପରିଣତ ହେବ ।"

ମୁନିଙ୍କ ପ୍ରଶଂସା ବଚନ ଶୁଣି ରାମ କିଞ୍ଚିତ୍ ଲଜ୍ଜିତ ହୋଇ ଗୁରୁଙ୍କ ଆଦେଶ ପାଳନ କଲେ ଏବଂ ଏକ ଗହଳିଆ ଗଛ ମୂଳରେ ରହିବାର ବ୍ୟବସ୍ଥା କଲେ । ସନ୍ଧ୍ୟା-କାଳୀନ କୃତ୍ୟ ପରେ ମୁନି ଶୋଇପଡ଼ିଲେ । ରାମ ଓ ଲକ୍ଷ୍ମଣ ବିଶ୍ୱାମିତ୍ରଙ୍କ ପାଦସେବା କରିବା ବେଳେ ଅନେକ କଥା ପଚାରିଲେ । ବିଶ୍ୱାମିତ୍ର ସେମାନଙ୍କୁ ପ୍ରାଚୀନ କାଳର କଥାମାନ ଶୁଣାଇବାକୁ ଲାଗିଲେ । ଏହିପରି କଥାବାର୍ତ୍ତା କରୁ କରୁ ରାତି ପାହିଗଲା ।

ତାଡ଼କା ବଧ କଥା ଶୁଣି ଶୌନକ ମହର୍ଷି ସୂତଙ୍କୁ ପଚାରିଲେ—"ଭଗବନ୍ ! ଶ୍ରୀରାମଚନ୍ଦ୍ର ନାରୀହତ୍ୟା କାହିଁକି କଲେ ? ନାରୀ ଅବଧ୍ୟା । କିନ୍ତୁ ଆମେ ଦେଖୁଛୁ, ଶ୍ରୀରାମ ଓ ଶ୍ରୀକୃଷ୍ଣ ଉଭୟ ଅବତାରରେ ସଂହାର କାର୍ଯ୍ୟ ସ୍ତ୍ରୀ ହତ୍ୟାଠାରୁ ହିଁ ଆରମ୍ଭ କରିଛନ୍ତି । ଶ୍ରୀରାମ ପ୍ରଥମେ ତାଡ଼କାକୁ ବଧ କଲେ ଓ ଶ୍ରୀକୃଷ୍ଣ କ୍ଷୀର ଶୋଷିବା ଛଳରେ ପୂତନାକୁ ବିନାଶ କରିଥିଲେ । ଏହାର ପ୍ରକୃତ ରହସ୍ୟ କଣ ?"

ମହର୍ଷି ଶୌନକଙ୍କ ପ୍ରଶ୍ନ ଶୁଣି ସୂତ ମୁନି କହିଲେ—"ମହାଶୟ ! ଆପଣତ ଏବେ ଶ୍ରୀକୃଷ୍ଣଙ୍କ କଥା ପଚାରୁ ନାହାନ୍ତି । ତ୍ରିଭଙ୍ଗ ଠାଣୀରେ ଠିଆ ହେଇଥିବା ସେ କଳା କୃଷ୍ଣ ମଥୁରାର ଜନ ଲୋକରେ ବାନ୍ଧି ହୋଇଯାଏ । ସେ କଥା ଛାଡ଼ । ହଁ ମର୍ଯ୍ୟାଦା ପୁରୁଷୋତ୍ତମ ଶ୍ରୀରାମଙ୍କ କଥା ଏବେ କହୁଛି । ସେ ହେଉଛନ୍ତି ମର୍ଯ୍ୟାଦାର ମୂର୍ତ୍ତିମନ୍ତ ସ୍ୱରୂପ, ତେଣୁ ମର୍ଯ୍ୟାଦା ବିରୁଦ୍ଧ କୌଣସି କାର୍ଯ୍ୟ ସେ କରି ପାରିବେ ନାହିଁ ।

ଅଯୋଧ୍ୟାରୁ ଆସିବାବେଳେ ବିଶ୍ୱାମିତ୍ର ରାମ ଲକ୍ଷ୍ମଣଙ୍କୁ ଦିବ୍ୟ ବିଦ୍ୟା ଶିକ୍ଷା ଦେଇଥିଲେ । ବିଦ୍ୟାଶିକ୍ଷା ପରେ ଗୁରୁ ଯେଉଁ ଦକ୍ଷିଣା ମାଗିବେ ତାହା ତାଙ୍କୁ

ଦେବାର ବାଧ୍ୟଅଛି । ତାଡ଼କା ବଧ ହେଉଛି ସେହି ଗୁରୁଦକ୍ଷିଣାର ଏକ ନିଦର୍ଶନ । ସମ୍ଭବ ହେଉ ବା ଅସମ୍ଭବହେଉ ସାନ୍ଦୀପନି ମୁନି ବାରବର୍ଷ ପୂର୍ବରୁ ମୃତ୍ୟୁବରଣ କରିଥିବା ନିଜର ପୁଅମାନଙ୍କୁ ଜୀବନ ଦାନ ରୂପକ ଗୁରୁଦକ୍ଷିଣା ଦେବାକୁ ରାମକୃଷ୍ଣଙ୍କୁ ନିବେଦନ କରି-ଥିଲେ । ଏହା ଏକ ଅସମ୍ଭବ କଥା । ଯମରାଜଙ୍କ ଶକ୍ତି ଭିତରେ ଏହା ସମ୍ଭବ ନ ଥିଲା । କିନ୍ତୁ ଶ୍ରୀକୃଷ୍ଣ ଥିଲେ ଯମରାଜର ସ୍ରଷ୍ଟା । ଯମ ଏହି କାର୍ଯ୍ୟ କରିବା ପାଇଁ ଅସମ୍ମତ ହେବାରୁ ଶ୍ରୀକୃଷ୍ଣ ଧମକ ଦେଇ କହିଲେ—ମୋର ଶାସନକୁ ସମ୍ମାନ ଜଣାଇ ତୁମେ ସେ ପିଲାମାନଙ୍କୁ ଦେଇଦିଅ । ନିୟମ ବିରୁଦ୍ଧ ହେଲେ ମଧ୍ୟ ଏହା ଶ୍ରୀକୃଷ୍ଣଙ୍କର ଏକ ବିଶେଷ ଆଦେଶ ଥିବାରୁ ଯମ ଗୁରୁପୁତ୍ରଙ୍କୁ ଫେରାଇ ଦେଇଥିଲେ । ସେହିପରି ତାଡ଼କାବଧ ପାଇଁ ଶ୍ରୀରାମ ପ୍ରଥମେ ଅସମ୍ମତ ହୋଇଥିଲେ ମଧ୍ୟ ଗୁରୁ ଯେତେବେଳେ ଜୋର ଦେଇ କହିଲେ—"ମୋର ଆଦେଶ, ତୁମେ ସଙ୍ଗେ ସଙ୍ଗେ ତାଡ଼କାକୁ ବଧ କର ।" ସେତେବେଳେ 'ଗୁରୋ ଆଜ୍ଞା ଗରୀୟସୀ' ବୋଲି ବିଚାରି ଶ୍ରୀରାମ ତାଡ଼କାକୁ ହତ୍ୟାକଲେ । ପୁନଶ୍ଚ ମଣିଷର ସ୍ୱାଭାବିକ ପ୍ରବୃତ୍ତି ବିଷୟ ପ୍ରତି ଆକୃଷ୍ଟ ହୁଏ । ଯେ ପ୍ରଥମେ ନିଜର ବୈଷୟିକ ପ୍ରବୃତ୍ତିକୁ ଦମନ କରିପାରେ ନାହିଁ ସେ କୌଣସି ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ କରିବାକୁ ସମର୍ଥ ହୋଇପାରେ ନାହିଁ । ତେଣୁ ପ୍ରବୃତ୍ତିକୁ ଜୟ କରିବା ମଣିଷର ପ୍ରଥମ ଓ ପ୍ରଧାନ କର୍ତ୍ତବ୍ୟ ।

ପୂର୍ବୋକ୍ତ ଦୁଇଟି କାରଣ ବ୍ୟତୀତ ତୃତୀୟ କାରଣ ହେଲା, ବୈରୀକୁ ନିପାତ ପ୍ରଥମେ ବୈରୀର ମା'କୁ ମାର, ଯେଉଁ ମା'ଠାରୁ ବୈରୀ ଜନ୍ମଗ୍ରହଣ କରିଛି । ବିଶ୍ୱାମିତ୍ର ଯଜ୍ଞରେ ମାରୀଚ ଓ ସୁବାହୁ ବହୁତ ଅସୁବିଧା ସୃଷ୍ଟି କରୁଥିଲେ । ରାମଚନ୍ଦ୍ର ଭାବିଲେ ବୈରୀକୁ ମାରିବା ପୂର୍ବରୁ ପ୍ରଥମେ ତାଙ୍କ ମା'କୁ ମାରିଦେବା ଉଚିତ । ନଦୀର ମୂଳ ଉତ୍ସ ବନ୍ଦ କରିଦେଲେ ବନ୍ଧ ବାନ୍ଧିବା ସହଜ ହୁଏ । ମାରୀଚ ଓ ସୁବାହୁଙ୍କୁ ମାରିଦେବା ପରେ ଯଦି ତାଡ଼କା ସେହିପରି ଦୁଷ୍ଟଙ୍କୁ ଜନ୍ମଦେବ ତେବେ ମୁନିମାନଙ୍କ କାର୍ଯ୍ୟ ସମ୍ପାଦିତ ହୋଇପାରିବ ନାହିଁ । ତେଣୁ ମୂଳକୁ ନିର୍ମୂଳ କରାଯିବା ଆବଶ୍ୟକ । ସେହି ବିଚାରରେ ଶ୍ରୀରାମ ପ୍ରଥମେ ତାଡ଼କା ଓ ପରେ ମାରୀଚ, ସୁବାହୁଙ୍କୁ ସଂହାର କରିଥିଲେ ।

ଚତୁର୍ଥରେ ଧନସମ୍ପଦ ବୈରୀ ହୋଇଗଲେ କି ନିଜେ ଅପମାନିତ ହେଲେ ମଣିଷ ଯେତେ କ୍ରୋଧପ୍ରକାଶ କରେନାହିଁ ତା'ଠାରୁ ଅଧିକ କ୍ରୋଧପ୍ରକାଶ କରେ ଯେତେବେଳେ ସ୍ତ୍ରୀହତ୍ୟା ବା ସ୍ତ୍ରୀଲୋକଙ୍କୁ ଅପମାନିତ ହେବାର ଦେଖେ । ତେଣୁ ଶ୍ରୀରାମ ତାଡ଼କାକୁ ମାରି ଅସୁର କୁଳକୁ ଯୁଦ୍ଧପାଇଁ ଏକ ଆହ୍ୱାନ ଦେଇଥିବାର

ମନେହୁଏ । ପଞ୍ଚମ କାରଣ ହେଉଛି ସ୍ତ୍ରୀମାନେ ସାଧାରଣତଃ ସୁକୁମାରୀ ଓ ଦୟାବତୀ ହୋଇଥାନ୍ତି । କିନ୍ତୁ ସ୍ତ୍ରୀତ୍ୱ ପରିତ୍ୟାଗ କରି ଯେତେବେଳେ ସେ ରାକ୍ଷସୀ ପାଲଟିଯାଏ, ନିଜ ପିଲାମାନଙ୍କୁ ଖାଇଯାଏ, ସେତେବେଳେ ସେ ଅବଧ୍ୟା ନୁହେଁ ବଧଯୋଗ୍ୟା ହୁଏ । ସର୍ପିଣୀ ନିଜ ଛୁଆକୁ ଖାଇଯାଏ, ତେଣୁ କେହି ତାକୁ ମାରିଦିଏ ତେବେ ସାଧୁଲୋକେ ଖୁସି ହୁଅନ୍ତି । ତାଡ଼କା ସର୍ବଦା ନରଭକ୍ଷଣ କରୁଥିଲା । ତେଣୁ ତାକୁ ବଧ କରିବା ଆଦୌ ଦୋଷାବହ ନୁହେଁ । ଷଷ୍ଠରେ ବଡ଼ କାରଣ ହେଉଛି ସାଧୁ-ମାନଙ୍କୁ ରକ୍ଷାକରିବା ନିମିତ୍ତ । ଯେଉଁ କାର୍ଯ୍ୟଦ୍ୱାରା ସାଧୁ ଓ ସଜ୍ଜନଙ୍କ କଲ୍ୟାଣ ସାଧିତ ହେବ ଭଗବାନ ସେହି କାର୍ଯ୍ୟ କରନ୍ତି । ଉଚିତ ଓ ଅନୁଚିତର ସ୍ରଷ୍ଟା ସେ । ତେଣୁ ଭଗବାନ ଯାହା କରନ୍ତି ତାହା ସମସ୍ତଙ୍କ ମଙ୍ଗଳ ପାଇଁ କରନ୍ତି । ଭଗବାନ ରାମଙ୍କ ବିଷୟରେ କେହି କିଛି କହିବା ସମ୍ଭବ ନୁହେଁ କି ଉଚିତ ନୁହେଁ ।”

ଏହାଶୁଣି ଶୌନକ ପଚାରିଲେ—“ସୂତ ମହାଶୟ ! ଆପଣ ଯାହା କହିଲେ ସବୁ ସତ । ଭକ୍ତମାନଙ୍କୁ ଆନନ୍ଦ ଦେବାପାଇଁ ଭଗବାନ୍ ଲୀଳା କରନ୍ତି । ରୁଧିର ପାନ କରୁଥିବା ରାକ୍ଷସୀକୁ ହତ୍ୟାକରିବା ରାମଙ୍କର ଏକ ଖେଳ ବୋଲି କୁହାଯାଏ । ହଁ ଏହାପରେ କଣ ହେଲା ସେଇକଥା କହନ୍ତୁ ।”

ମହର୍ଷି ସୂତ କହିଲେ—“ମୁନିଗଣ ! ସେ ରାତିଟି ରାମ, ଲକ୍ଷ୍ମଣ ଓ ମୁନି ବିଶ୍ୱାମିତ୍ର ତାଡ଼କା ଥିବା ବନରେ କଟାଇଲେ । ସକାଳେ ନିତ୍ୟକର୍ମ ସାରି ପୁଣି ତିନିଜଣ ଚାଲିବାକୁ ଲାଗିଲେ । ବିଶ୍ୱାମିତ୍ରଙ୍କ ସହିତ କଥାବାର୍ତ୍ତା କରିବାକୁ ରାମଚନ୍ଦ୍ର ପ୍ରଥମେ ପ୍ରଥମେ ଲଜ୍ଜା ଅନୁଭବ କରୁଥିଲେ । କିନ୍ତୁ ମୁନି ତାଙ୍କୁ ପୁତ୍ରପରି ବ୍ୟବହାର କରିବାର ଦେଖି ରାମ ଓ ଲକ୍ଷ୍ମଣଙ୍କର ଭୟ ଦୂରହେଲା । ଶ୍ରୀରାମ ନିର୍ଭୟରେ ନାନାପ୍ରକାର ପ୍ରଶ୍ନ ପଚାରିବାକୁ ଲାଗିଲେ । ମୁନି ବିଶ୍ୱାମିତ୍ର ସସ୍ନେହରେ ସବୁ ପ୍ରଶ୍ନର ଉତ୍ତର ଗୋଟି ଗୋଟି କରି ବୁଝାଇଦେବାକୁ ଲାଗିଲେ । ନିର୍ଜନ ଅରଣ୍ୟକୁ ଦୁଇ-ଭାଇ ପ୍ରଥମ ଥରପାଇଁ ଆସିଥିଲେ । ତେଣୁ ସେ ଯାହା ଦେଖୁଥିଲେ ସେ ବିଷୟ ଜାଣିବା ପାଇଁ ପଚାରୁଥିଲେ । ବିଶ୍ୱାମିତ୍ରଙ୍କ ଆଶ୍ରମ ଦେଖିବା ପାଇଁ ତାଙ୍କ ମନ ବ୍ୟସ୍ତ ହେଉଥିଲା । ରାକ୍ଷସମାନଙ୍କୁ ସଂହାର କରିବା ପାଇଁ ସେ ଆଗ୍ରହୀ ଥିଲେ । ସେଦିନ ବିଶ୍ୱାମିତ୍ର ତାଙ୍କୁ ବିଭିନ୍ନ ପ୍ରକାର ଦିବ୍ୟ ଅସ୍ତ୍ରର ସନ୍ଧାନ ଓ ଉପସଂହାର ବିଧି ବିଷୟରେ ଉପଦେଶ ଦେଇଥିଲେ । ସେହି ବିଦ୍ୟାକୁ ପରୀକ୍ଷା କରିବା ପାଇଁ ରାମଚନ୍ଦ୍ର ଉତ୍ସୁକ ହେଉଥିଲେ । ତେଣୁ ସେ ମୁନିଙ୍କୁ ପଚାରିଲେ—“ପ୍ରଭୋ ! ଆପଣଙ୍କ ଆଶ୍ରମ ଆଉ କେତେ ଦୂର ? ଆମେ କେତେ ଦିନରେ ସେଠି ପହଞ୍ଚିବା ?”

ମୁନି ବିଶ୍ୱାମିତ୍ର ଶ୍ରୀରାମଙ୍କ ଚିବୁକରେ ହାତ ଦେଇ କପୋଳ ଆଘ୍ରାଣ କରି କହିଲେ—"ବାବୁ ! ଆଉ ବେଶୀ ଦୂରନୁହେଁ । ଆମେ ପ୍ରାୟ ଆଶ୍ରମ ପାଖରେ ପହଞ୍ଚି ଗଲେଣି । ଦେଖ, ଏଇଟା ହେଲା ତାଡ଼କାବନ । ଏହାପରେ ମୁନିମାନଙ୍କ ଆଶ୍ରମ ଥିବା ଏକ ଅରଣ୍ୟ ଅଛି । ତା' ପରେ ମୋର ସିଦ୍ଧାଶ୍ରମ ।"

ଶ୍ରୀରାମ ପଚାରିଲେ—"ଭଗବନ୍ ! ଆପଣଙ୍କ ଆଶ୍ରମ ନାମ ସିଦ୍ଧାଶ୍ରମ କାହିଁକି ହେଲା ?"

ବିଶ୍ୱାମିତ୍ର କହିଲେ—"ରାମଭଦ୍ର ! ତୁମେ ଶୁଣିଥିବ ପୁରାଣ ପୁରୁଷ ବିଷ୍ଣୁ ଇନ୍ଦ୍ରଙ୍କୁ ତ୍ରିଭୁବନର ରାଜା କରିବା ନିମିତ୍ତ ବାମନାବତାର ରୂପ ଧାରଣ କରିଥିଲେ । ସେହି ବନରେ କଶ୍ୟପ ଓ ଅଦିତିଙ୍କ ପୁତ୍ରରୂପେ ସେ ଜନ୍ମ ହୋଇଥିଲେ । ତେଣୁ ସେ ଆଶ୍ରମର ନାମ ହେଲା ସିଦ୍ଧାଶ୍ରମ । ମୁଁ ବିଷ୍ଣୁଭକ୍ତ । ବିଷ୍ଣୁଙ୍କୁ ସେହି ଆଶ୍ରମକୁ ଆଣିବା ଆଶାରେ ମୁଁ ତପସ୍ୟା କରୁଥିଲି । ଆଜି ସେହି ଆଶା ମୋର ପୂର୍ଣ୍ଣ ହେବ । ଆପଣଙ୍କ ପାଦ ପଡ଼ିବାମାତ୍ରେ ମୁଁ କୃତାର୍ଥ ହେବି ଓ ସିଦ୍ଧିଲାଭ କରିବି ।"

ଶ୍ରୀରାମ ମନେ ମନେ ଲଜ୍ଜିତ ହୋଇ ପ୍ରସଙ୍ଗ ବଦଳେଇ ପଚାରିଲେ —"ଭଗବନ୍ ! ଆପଣଙ୍କ ଯଜ୍ଞରେ କିଏ ବିଘ୍ନ ସୃଷ୍ଟି କରୁଛି ?"

ବିଶ୍ୱାମିତ୍ର କହିଲେ—"ବାବୁ ! ଆକାଶଗାମୀ ରୁଧିର ପାୟୀ ବଡ଼ ବଡ଼ ରାକ୍ଷସମାନେ ଆସି ବ୍ୟାଘାତ ସୃଷ୍ଟି କରୁଛନ୍ତି ।"

ଶ୍ରୀରାମ କହିଲେ—"ଭଗବନ୍ ! ଆପଣଙ୍କ କୃପା ଓ ଆଶୀର୍ବାଦ ବଳରେ ମୁଁ ବାଣ ମାରି ସେମାନଙ୍କୁ ଖୁବ୍ ଶୀଘ୍ର ନିପାତ କରିଦେବି । ସେମାନେ ମରିଯିବେ ନାହିଁକି ?"

ବିଶ୍ୱାମିତ୍ର କହିଲେ - "ସେମାନେ କେବଳ ମରିବେ ନାହିଁ ତୁମର ବାଣ ସ୍ପର୍ଶରେ ସଂସାର ସାଗରରୁ ମୁକ୍ତ ହୋଇଯିବେ ।"

ଶ୍ରୀରାମ ପୁଣି କଥା ବଦଳେଇ ପଚାରିଲେ—"ପ୍ରଭୋ ! ସେ ରାକ୍ଷସମାନଙ୍କର ନାମ କଣ ? ସେମାନେ ଏତେ ବଳବାନ୍ ହେଲେ କିପରି ?"

ବିଶ୍ୱାମିତ୍ର କହିଲେ—"ବାବୁ ! ଏବେ ଯେଉଁ ତାଡ଼କାକୁ ମାରିଲ ତା'ର ଦୁଇ ପୁଅ ହେଲେ ସୁବାହୁ ଓ ମାରୀଚ । ସେ ଦୁହେଁ ଅନ୍ୟ ରାକ୍ଷସମାନଙ୍କ ସହିତ ଆସି

ମୋର ଯଜ୍ଞରେ ଗୋଳମାଳ କରୁଛନ୍ତି । ଯଜ୍ଞ ଆରମ୍ଭ କରିବା ପାଇଁ ମୁଁ ଦୀକ୍ଷା ସେମାନେ ଆସି ରକ୍ତ ଓ ମାଂସ ବୃଷ୍ଟି କରନ୍ତି ଏବଂ ନାନା ପ୍ରକାର ଉପଦ୍ରବ କରନ୍ତି ।"

ଶ୍ରୀରାମ କହିଲେ- "ବ୍ରହ୍ମନ୍ ! ଆଉ ସେପରି ହେବ ନାହିଁ । ସେମାନଙ୍କୁ ଦଣ୍ଡ ଦେବି ଏବଂ ସେମାନଙ୍କର ଅଭିଷ୍ଟତା ଦୂର କରିବା ପାଇଁ ସମସ୍ତ ବ୍ୟବସ୍ଥା ଗ୍ରହଣ କରିବି ।"

ମହର୍ଷି ସୂତ କହିଲେ—"ମୁନିଗଣ ! ଏହିପରି ନାନାପ୍ରକାର କଥାବାର୍ତ୍ତା ହୋଇ ଯାଉଁ ଯାଉଁ ବହୁ ଦୂରରୁ ରାମ ଲକ୍ଷ୍ମଣଙ୍କୁ ନିଜର ଆଶ୍ରମ ଦେଖାଇ ଦେଇ କହିଲେ—ରାଘବ ! ଆଗରେ ଯେଉଁ ସବୁଜ ବୃକ୍ଷରାଜି ଦେଖାଯାଉଛି ତାହାହିଁ ସିଦ୍ଧାଶ୍ରମ । ମୁଁ ସେଇଠି ରହେଁ । ସେ ଆଶ୍ରମକୁ ତୁମେ ଦୁହେଁ ନିଜର ବୋଲି ଭାବିବ । ବହୁ ଦୂରରୁ ଆଶ୍ରମର ଶୋଭା ଲକ୍ଷ୍ୟ କରି ଶ୍ରୀରାମ ପ୍ରସନ୍ନ ହେଲେ ।"

ସିଦ୍ଧାଶ୍ରମର ପରିବେଶ ବ୍ରାହ୍ମୀ ଶ୍ରୀ ସମ୍ପଦରେ ମଣ୍ଡିତ ଥିଲା । ଚାରିଆଡ଼େ ବିଭିନ୍ନ ପ୍ରକାର ବୃକ୍ଷ ଲମ୍ବି ଲମ୍ବି ଲଗା ହୋଇଥିଲା । ସେହି ବୃକ୍ଷ ଶାଖା ଗୁଡ଼ିକରେ ବସିଥିବା ବିଭିନ୍ନ ପ୍ରକାର ପକ୍ଷୀ କଳରବ କରୁଥିଲେ । ମୟୂର, ହଂସ, ସାରସ, କାରଣ୍ଡବ, ଚକୋର, ପଲ୍ଲିତ ନିକଟବର୍ତ୍ତୀ ସରୋବର ପାଖରେ କ୍ରୀଡ଼ା କରୁଥିଲେ । ବୃକ୍ଷ ଗୁଡ଼ିକ ଫଳ ଭରରେ ଆନମିତ ହୋଇ ପଡ଼ିଥିଲେ । ଅନେକ ବୃକ୍ଷରେ ଫୁଲ ଫୁଟିଥିଲା । ବୃକ୍ଷଲତା ଗୁଡ଼ିକର ସ୍ୱତନ୍ତ୍ର ଆଳବାଳମାନ (ମନ୍ଦା) ତିଆରି ହୋଇଥିଲା । କଲ୍‌କଳ ପରିହିତ ମୁନିମାନେ ସେଥିରେ ଜଳ ଢାଳୁଥିଲେ । ସ୍ଥାନେ ସ୍ଥାନେ ବଡ଼ ବଡ଼ ଲତାକୁଞ୍ଜ ଥିଲା । ବିଭିନ୍ନ ପ୍ରକାର ସୁବାସିତ ଫୁଲର ମହକରେ ସମଗ୍ର ଆଶ୍ରମ ଭୂମି ସୁରଭିତ ହେଉଥିଲା । ଯଜ୍ଞ ଧୂମର ସୁଗନ୍ଧ ଆକାଶ ମଣ୍ଡଳକୁ ବ୍ୟାପି ଯାଇ ପ୍ରବାହିତ ବାୟୁକୁ ସୁବାସିତ କରୁଥିଲା ।

ଆଶ୍ରମର ବିଭିନ୍ନ ସ୍ଥାନରେ ଶ୍ରେଷ୍ଠ ଶ୍ରେଷ୍ଠ ତୁଳସୀ ବନ ଥିଲା । କଦଳୀ ଯୁକ୍ତ ଚମ୍ପା ବୃକ୍ଷର ମନ୍ଦ ପବନରେ ଆନ୍ଦୋଳିତ ହେଉଥିଲା ଏବଂ ତାହା ଅତିଥିମାନଙ୍କୁ ସ୍ୱାଗତ କଲାପରି ମନେ ହେଉଥିଲା । ମୃଗମାନେ ସ୍ୱଚ୍ଛନ୍ଦରେ ଚାରିଆଡ଼େ ବୁଲୁଥିଲେ । ସ୍ଥାନେ ସ୍ଥାନେ ନୀବାର ତଣ୍ଡୁଳ ଶୁଖୁଥିଲା । କେଉଁଠି ବଲ୍‌କଳ ବସ୍ତ୍ର ଶୁଖୁଥିଲା ତ କେଉଁଠି କୁଶ, ସମିଧ ବିଡ଼ା ବିଡ଼ା ହୋଇ ପଡ଼ିଥିଲା । ଆଶ୍ରମର ପ୍ରାକୃତିକ ସୌନ୍ଦର୍ଯ୍ୟ ଦେଖି ଶ୍ରୀରାମ ଓ ଲକ୍ଷ୍ମଣଙ୍କ ମନ ଆନନ୍ଦରେ ପୂରି ଉଠିଲା । ଆଶ୍ରମବାସୀ ରାମ ଲକ୍ଷ୍ମଣଙ୍କ

ସହିତ ମୁନି ବିଶ୍ୱାମିତ୍ରଙ୍କୁ ଫେରି ଆସିଥିବାର ଦେଖି ନିଜ ନିଜ କାମ ଛାଡ଼ି ତାଙ୍କୁ ସ୍ୱାଗତ କରିବା ପାଇଁ ଦୌଡ଼ି ଆସିଲେ । ସମସ୍ତେ ମୁନିଙ୍କ ପାଦତଳେ ସାଷ୍ଟାଙ୍ଗ ପ୍ରଣାମ କଲେ । ମୁନି ଆଶ୍ରମର ଭଲମନ୍ଦ ପଚାରି ବୁଝିଲେ । ମୁନିମାନେ ଶ୍ରୀରାମ ଲକ୍ଷ୍ମଣଙ୍କୁ ଆନ୍ତରିକ ସ୍ୱାଗତ ଜଣାଇ ଯଥାବିଧି ଆତିଥ୍ୟ ପ୍ରଦାନ କଲେ ।

ଶ୍ରୀରାମ ଓ ଲକ୍ଷ୍ମଣ ହାତ, ପାଦ ଧୋଇ ଆଚମନ କଲେ । ସୁସ୍ଥ ହୋଇ ମୁନିମାନଙ୍କୁ ପ୍ରଣାମ କଲେ । ଏହାପରେ ଶ୍ରୀରାମ ବିଶ୍ୱାମିତ୍ରଙ୍କୁ ପଚାରିଲେ —"ଭଗବନ୍ ! ଆପଣ ଆଜି ହିଁ ଯଜ୍ଞଦୀକ୍ଷା ନିଅନ୍ତୁ । ଆମେ କେଉଁ ରାକ୍ଷସ ଆସୁଛି ତାକୁ ଦେଖିବା ।"

ବିଶ୍ୱାମିତ୍ର କୋଳ କରି ଶ୍ରୀରାମଙ୍କୁ ନିଜ କୋଳରେ ବସାଇ କହିଲେ—"ରେ ରାଘବ ! ଏତେବଡ଼ ହୋଇ ମଧ୍ୟ ଛୋଟ ପିଲାଳିଆ ଭାବ ଯାଇ ନାହିଁ । ଯଜ୍ଞର ଦୀକ୍ଷା ସକାଳେ ନିଆଯାଏ । ଆଜି ଆମେ ଏତେ ବାଟ ଚାଲି ଚାଲି ଆସିଛୁ । ଆଜି ବିଶ୍ରାମ କରିବା । କାଲି ମୁଁ ଯଜ୍ଞ ପାଇଁ ଦୀକ୍ଷା ନେବି । ଦୁଇଦିନ ପର୍ଯ୍ୟନ୍ତ ମୌନବ୍ରତ ଅବଲମ୍ବନ କରିବି । କୌଣସି ବିପଦ୍‌ରେ ପଡ଼େ ହେଲେ ବି କଥା କହିବି ନାହିଁ । ଛ'ଦିନ ପର୍ଯ୍ୟନ୍ତ ନ ଶୋଇ ଯଜ୍ଞ ରକ୍ଷାକାର୍ଯ୍ୟ କରିବୁ । ଟିକିଏ ହେଲେ ଅସାବଧାନ ହେବୁ ନାହିଁ ।"

ଶ୍ରୀରାମ କହିଲେ—"ନାଁ ଭଗବନ୍ ! ଆପଣ ନିଶ୍ଚିନ୍ତ ରହନ୍ତୁ । ଆମେ ଆପଣଙ୍କ ଯଜ୍ଞରେ ବିଘ୍ନ ସୃଷ୍ଟି କରିବାକୁ ଆସୁଥିବା ଦୁଷ୍ଟମାନଙ୍କୁ ମାରି ଗୋଡ଼ାଇବୁ । ସେମାନଙ୍କୁ ଯଜ୍ଞମଣ୍ଡଳ ପାଖକୁ ଆସିବାର ସୁଯୋଗ ଦେବୁ ନାହିଁ ।"

ଏହିପରି କଥାବାର୍ତ୍ତା କରୁ କରୁ ସନ୍ଧ୍ୟା ହୋଇଗଲା । ଦ୍ୱିତୀୟ ଦିନ ସକାଳେ ମହାମୁନି ବିଶ୍ୱାମିତ୍ର ଯଜ୍ଞଦୀକ୍ଷା ନେଲେ । ବହୁ ଦୂର ଦୂରାନ୍ତର ମୁନିମାନେ ଆସି ପହଞ୍ଚିଲେ । ନାନାପ୍ରକାର ବେଦୀ ସଜା ହେଲା । ସ୍ଥାନେ ସ୍ଥାନେ ଜଳପୂର୍ଣ୍ଣ କଳସୀମାନ ରହିଲା । କୁଶ, ସମିଧ, ଯଜ୍ଞପାତ୍ର, ହୋମ ସାମଗ୍ରୀ, ପତ୍ର, ପୁଷ୍ପ, ଫଳ ତଥା ଅନ୍ୟାନ୍ୟ ଯଜ୍ଞୀୟ ଦ୍ରବ୍ୟ ଯଜ୍ଞ ମଣ୍ଡପରେ ରଖାଗଲା । ଯଜ୍ଞ ବେଦୀଟି ଏକ ସୁସଜ୍ଜିତ ଉପବନ ପରି ଦେଖାଗଲା । ପର୍ଯ୍ୟାପ୍ତ ପରିମାଣରେ କୁଶ ଓ ସମିଧ ସଂଗୃହୀତ ହୋଇଥିଲା ।

ଯଜ୍ଞ ଆରମ୍ଭ ହେଲା । ପ୍ରଜ୍ୱଳିତ ଅଗ୍ନିରେ ଯେତେବେଳେ ଘୃତ ଆହୁତି ଦିଆଗଲା । ସେତେବେଳେ ଯଜ୍ଞକୁଣ୍ଡରୁ ବାହାରୁଥିବା ବହଳ ଧୂମରେଖା ଦ୍ୱାରା ଅଗ୍ନିଦେବତା ଦେବତାମାନଙ୍କୁ ହବିର୍ଭାଗ ଦେବା ପାଇଁ ଆକାଶମାର୍ଗକୁ ଗଲାପରି

ମନେ ହେଉଥିଲା । ଶ୍ରୀରାମ ଓ ଲକ୍ଷ୍ମଣ ଧନୁରେ ବାଣ ସଂଯୋଗ କରି ସାବଧାନତାର ସହିତ ଯଜ୍ଞରକ୍ଷାରେ ନିଯୁକ୍ତ ଥିଲେ । ପ୍ରଥମ ଦିନର ଯଜ୍ଞ ନିର୍ବିଘ୍ନରେ ଶେଷ ହେଲା । ଦ୍ୱିତୀୟ ଦିନ ରାମ ଓ ଲକ୍ଷ୍ମଣ ଉତ୍ସୁକତାର ସହିତ ରାକ୍ଷସମାନଙ୍କୁ ଅପେକ୍ଷା କଲେ ମଧ୍ୟ କେହି ଆସିଲେ ନାହିଁ । ତୃତୀୟ ଓ ଚତୁର୍ଥଦିନ ମଧ୍ୟ ନିର୍ବାଧରେ କଟିଗଲା । ପଞ୍ଚମ ଦିନ ସେମାନେ ଭାବିଲେ ବୋଧହୁଏ ଆଉ କେହି ରାକ୍ଷସ ଆସିବେ ନାହିଁ । ଷଷ୍ଠଦିନ ପୂର୍ଣ୍ଣାହୁତି ଦେବା ସମୟରେ ଆକାଶରେ ବର୍ଷୁକ କଳାମେଘ ପରି ଆସୁଥିବା ରାକ୍ଷସ-ମାନେ ଦୃଷ୍ଟି ଗୋଚର ହେଲେ । ଖୁବ ଶୀଘ୍ର ସାବଧାନ ହୋଇ ଶ୍ରୀରାମ ଲକ୍ଷ୍ମଣଙ୍କୁ କହିଲେ—"ଲକ୍ଷ୍ମଣ ! ଦେଖ, ଦେଖ, ଦୁଷ୍ଟ ରାକ୍ଷସ ଗୁଡ଼ାଏ ଆକାଶରେ ବୁଲୁଛନ୍ତି । ଏମାନେ ମୁନିଙ୍କ ଯଜ୍ଞରେ ବାଧା ସୃଷ୍ଟି କରିବା ପାଇଁ ନିଶ୍ଚୟ ଆସିଛନ୍ତି । ଏମାନଙ୍କୁ ମାରିବା ଆମର ଧର୍ମ । ତୁ ସତର୍କ ହୋଇ ରହ ।"

ଏହାଶୁଣି ଲକ୍ଷ୍ମଣ ବାଣ ସନ୍ଧାନ କରି ଠିଆହୋଇ ରହିଲେ । ଏହି ସମ-ୟରେ ରାକ୍ଷସମାନେ ଯଜ୍ଞକୁଣ୍ଡ ପାଖରେ ରକ୍ତ ବୃଷ୍ଟି ଆରମ୍ଭ କରିଦେଲେ । ଏହା ଦେଖି ରାମ ମାରୀଚକୁ ଲକ୍ଷ୍ୟକରି ଏକ ଶର ନିକ୍ଷେପ କଲେ । ସେଇ ଶର ଆଘାତରେ ମାରୀଚ ଶହ ଶହ ଯୋଜନ ପାରହୋଇ ସମୁଦ୍ର ଆରପାଖରେ ଥିବା ଲଙ୍କାରେ ଯାଇ ପଡ଼ିଲା । ମାରୀଚଦ୍ୱାରା ଅସୁର ସଂହାର କାର୍ଯ୍ୟ ସହଜ ହେବ ବୋଲି ଭାବି ରାମ ତାର ଜୀବନ ନ ନେଇ ଛାଡ଼ିଦେଲେ । ଶ୍ରୀରାମଙ୍କ ଦ୍ୱିତୀୟ ବାଣର ଆଘାତରେ ସୁବାହୁ ମୃତ୍ୟୁବରଣ କଲା । ଆଉ ଏକ ବାଣରେ ଅନେକ ରାକ୍ଷସ ମଲେ ଓ ଅନ୍ୟମାନେ ପଳାଇଗଲେ ।

ରାକ୍ଷସମାନେ ନିବାରିତ ହେବାପରେ ବିଧି ଅନୁଯାୟୀ ଯଜ୍ଞରେ ପୂର୍ଣ୍ଣାହୁତି ଦିଆଗଲା । ମୁନିମାନେ ବିଶ୍ୱାମିତ୍ରଙ୍କୁ ଅଭିନନ୍ଦିତ କଲେ । ସମସ୍ତେ ମିଶି ଦୁଇ ଭାଇଙ୍କର ବଳ, ବୀର୍ଯ୍ୟ, ପରାକ୍ରମ, ଓଜ, ତେଜ ଓ ବୀରତ୍ୱର ଭୂରି ଭୂରି ପ୍ରଶଂସା କଲେ । ଦୁଇଭାଇ ମୁନିମାନଙ୍କ ପାଦତଳେ ପ୍ରଣାମ କଲେ । ମହାମୁନି ବିଶ୍ୱାମିତ୍ର ଆଶୀର୍ବାଦ ଦେବାକୁ ଯାଇ କହିଲେ—"ଦୁଇ ଭାଇଙ୍କର ମଙ୍ଗଳ ହେଉ । ସଂସାରରେ ତୁମର ଯଶଗାନ କରାଯାଉ । ମୁଁ ତୁମର ତେଜରେ ଯଜ୍ଞ ପୂର୍ଣ୍ଣ କଲି ।"

ଶ୍ରୀରାମ ମୁନିଙ୍କ ପାଦଧରି କହିଲେ—"ପ୍ରଭୋ ! ଆମେ ଆପଣଙ୍କ ଶିଷ୍ୟ ଓ ଅନୁଚର । ଆପଣ ନିଜ ତେଜରେ ହିଁ ସବୁ କରିଥିଲେ ମଧ୍ୟ ଅନ୍ୟର ସମ୍ମାନ ବଢ଼ାଇଛନ୍ତି ।"

ମହର୍ଷି ସୂତ କହିଲେ—"ମୁନିଗଣ ! ସୁବାହୁ ଆଦି ରାକ୍ଷସଗଣ ମୃତ୍ୟୁବରଣ କରିବାରୁ ଦେବତାମାନେ ଆନନ୍ଦିତ ହୋଇ ଶ୍ରୀରାମଙ୍କ ଉପରେ ପୁଷ୍ପବୃଷ୍ଟି କଲେ । ବିଶ୍ୱାମିତ୍ରଙ୍କ ଯଜ୍ଞକାର୍ଯ୍ୟ ଆଡ଼ମ୍ବର ସହକାରେ ସମ୍ପନ୍ନ ହେଲା । ସମସ୍ତେ ଏକସ୍ୱରରେ କୁହ, ବିଶ୍ୱାମିତ୍ରଙ୍କ ଯଜ୍ଞରକ୍ଷକ ଶ୍ରୀରାମଚନ୍ଦ୍ରଙ୍କର ଜୟ ହେଉ ।"

## ଛପ୍ପୟ

ଆୟେ ବିଶ୍ୱାମିତ୍ର ରାମ ଲଛିମନ ତନ ମାଁଗେ ।
ବଚନ ଶୂଳ ସମ ନୃପତି ହୃୟେ ମହଁ ମୁନିକେ ଲଗେ ।
ଗୁରୁ ବଶିଷ୍ଠ ସମୁଝାଇ ଦୟେ ମୁନି କୋ ଦୋଉ ସୁତ ॥
ମୁନି କେ ପୀଛେ ଚଲେ ରାମ ଲଛିମନ ଅତି ପ୍ରମୁଦିତ ॥
ମିଲୀ ତାଡ଼କା ପନ୍ଥ ମହଁ "ମାରୋ" ଗୁରୁ ଆଜ୍ଞା ଦଈ ।
ପ୍ରଭୁ ଛୋଡ଼ୟୋ ଶର ସର୍ପ ତେଁ, ଲଗ୍ୟୋ ହୃୟେ ମହଁ ମରିଗଈ ॥



---

ମୁଦ୍ରଣ : କଲ୍ୟାଣୀ ପ୍ରିଣ୍ଟର୍ସ, ପିଠାପୁର, କଟକ-୭୫୩୦୦୧

